# ଅନ୍ଧ ଶହର

ରବି ପଟ୍ଟନାୟକ

# ଅବିନଶ୍ୱର



ରବି ପଟ୍ଟନାୟକ

ଆର୍ଯ୍ୟ ପ୍ରକାଶନ

ଲିଙ୍କ୍‌ରୋଡ୍, କଟକ - ୭୫୩୦୧୨

ଅବିନଶ୍ୱର
ଗାଳ୍ପିକ :
ରବି ପଟ୍ଟନାୟକ

ସର୍ବାଧିକାରିଣୀ :
ଶ୍ରୀମତୀ ବିଜୟଲକ୍ଷ୍ମୀ ପଟ୍ଟନାୟକ
୧୦୬, କେଦାରଗୌରୀ କମ୍ପ୍ଲେକ୍ସ
ଭୁବନେଶ୍ୱର

**ISBN - 81-7412-025-4**

ପ୍ରକାଶକ :
ଆର୍ଯ୍ୟ ପ୍ରକାଶନ
ଲିଙ୍କ୍‌ରୋଡ୍, କଟକ - ୭୫୩୦୧୨

ପ୍ରକାଶ କାଳ : ୧୯୯୫

ମୁଦ୍ରକ :
ଶ୍ରୀଜଗନ୍ନାଥ ଲାମିନେଟର ଆଣ୍ଡ ଅଫସେଟ୍ ପ୍ରିଣ୍ଟର୍
ବାଦାମବାଡ଼ି, କଟକ - ୭୫୩୦୧୨

ପ୍ରଚ୍ଛଦ :
ସ୍ୱାହା ମିଶ୍ର

ମୂଲ୍ୟ : ଷାଠିଏ ଟଙ୍କା ମାତ୍ର

## କୃତଜ୍ଞତା........

କଥାକାର ରବିପଟ୍ଟନାୟକଙ୍କ ଶେଷ କୃତି
"ଅବିନଶ୍ୱର"କୁ
ଆର୍ଯ୍ୟ ପ୍ରକାଶନୀ ପ୍ରକାଶ କରିଥିବାରୁ
ମୁଁ ଡକ୍ଟର ଗିରୀଶ ମିଶ୍ରଙ୍କ ନିକଟରେ
କୃତଜ୍ଞ ରହିଲି....

ବିଜୟଲକ୍ଷ୍ମୀ

# ସୂଚୀପତ୍ର


| କ୍ର.ନ. | ବିଷୟ | ପୃଷ୍ଠା |
|---|---|---|
| ୧. | ଅବିନଶ୍ୱର | ୧ |
| ୨. | ସାପ | ୭ |
| ୩. | କର୍ମରେ ଅଧିକାର | ୧୬ |
| ୪. | ଅଠର ବର୍ଷର ଭୋଟ | ୨୩ |
| ୫. | ପୁଅ କଣ କରୁଛି | ୨୭ |
| ୬. | ଶଳା କଟକୀ | ୩୦ |
| ୭. | ଗଣ୍ଠି | ୩୮ |
| ୮. | ପର୍ବତ ଉପର କଇଁ | ୪୪ |
| ୯. | ଆତ୍ମହତ୍ୟା | ୫୧ |
| ୧୦. | ଭୂତୁଣୀ ଉପାଖ୍ୟାନ | ୫୬ |
| ୧୧. | ବାମନାବତାର | ୬୨ |
| ୧୨. | ଆଧୁନିକ ବିକ୍ରମାଦିତ୍ୟ ଓ ଅଭ୍ୟାସଗତ ଲାଞ୍ଚଦାତା | ୬୯ |
| ୧୩. | ଦୁର୍ଗନ୍ଧ | ୭୬ |
| ୧୪. | ଜାନୁଆର | ୮୩ |
| ୧୫. | ଆଧୁନିକ ଭୂତ କାହାଣୀ | ୯୦ |
| ୧୬. | ବର୍ଣ୍ଣାନ୍ତର | ୯୮ |
| ୧୭. | ଭସାବାଦଲର ଛାଇ | ୧୦୪ |
| ୧୮. | ମଲା ମଣିଷର ଦାମ | ୧୧୩ |
| ୧୯. | ସ୍ୱର୍ଗରାଇଜର ଝର୍କା | ୧୧୯ |
| ୨୦. | ଅଶିରୀରୀ ତନ୍ତ୍ରୀ | ୧୨୪ |

# ଅବିନଶ୍ୱର

ଏବେ ବି ସ୍ପଷ୍ଟ ମନେ ପଡୁଛି ସେଇ ଦୃଶ୍ୟ।

ଏ ଭିତରେ ପ୍ରାୟ ପଚାଶ ବର୍ଷ ଅତୀତ ହୋଇ ଗଲାଣି।

ବିରାଟ ପଡ଼ିଆ ଭିତରେ ଗୋଟାଏ ବଡ଼ ଚାଳଘର ଓ ଗୋଟିଏ ଛୋଟ ଚାଳଘର। ମାଟିକାନ୍ଥ। ଉଚ୍ଚ ବାରଣ୍ଡା। ଅଚଞ୍ଚା ଶାଳ କାଠର ଖୁଣ୍ଟ। ଉତ୍ତର-ଦକ୍ଷିଣକୁ ଲମ୍ବିଛି। ବଡ଼ ଚାଳଘରର ସାମ୍ନାରେ ଗୋଟାଏ ଦ୍ୱାର। ଦ୍ୱାରର ଦୁଇ ପାଖରେ କାନ୍ଥ ମଝିରେ ଦୁଇଟି ବଡ଼ ବଡ଼ ଝରକା। ଉତ୍ତର ପାଖ କାନ୍ଥରେ ଆଉ ଗୋଟାଏ ଝରକା। ଚୂନ ଧଉଳା କାନ୍ଥ। ଝରକା ଉପରକୁ ଦେଢ଼ଫୁଟ ଛାଡ଼ି ସାରା ଘରର ଚାରିକାନ୍ଥରେ ପ୍ରାୟ ଫୁଟେ ଓସାରର ରିବନ ପରି କଳା ରଙ୍ଗର ଗୋଟାଏ ପ୍ରଲେପ। ପୋଡ଼ାକୁଟା ଓ ମାଟିମିଶା ଗୋଟାଏ ପେଣ୍ଟ। ସେଇ କଳାରଙ୍ଗ ଉପରେ ଧଳା ଚକ୍‌ଖଡ଼ିରେ ଗୋଲ ଗୋଲ ଅକ୍ଷରରେ ଲେଖା କେତୋଟି କବିତାର ପଂକ୍ତି।

ଆମ ସମୟର ଗାଁ ଚାହାଳୀର ରୂପ। ସବୁ ତୃତୀୟ ଶ୍ରେଣୀ ଛାତ୍ରମାନଙ୍କୁ ସେଇ କବିତାର ପଂକ୍ତିଗୁଡ଼ିକ ମୁଖସ୍ଥ କରିବାକୁ ପଡୁଥିଲା ନିମ୍ନ ପ୍ରାଇମେରୀ ପରୀକ୍ଷା ଦେଇ ସ୍କୁଲ ଛାଡ଼ିବା ଆଗରୁ।

ଅନେକ କବିତା ଭିତରୁ ଦୁଇଟି କବିତାର ପଂକ୍ତି ଏ ଯାଏଁ ମନେ ଅଛି। ପ୍ରଥମଟି ହେଲା—

"କେହି ରହିନାହିଁ      ରହିବେ ନାହିଁଟି
ଭବରଙ୍ଗ ଭୂମିତଳେ
ସର୍ବେ ନିଜ ନିଜ      ଅଭିନୟ ସାରି
ବାହୁଡ଼ିବେ କାଳ ବଳେ।"

ପ୍ରଥମଟି ଲେଖାଥିଲା ଉତ୍ତରକୁ ଥିବା କାନ୍ଥରେ ଓ ଦ୍ୱିତୀୟଟି ଥିଲା ପଶ୍ଚିମର କାନ୍ଥରେ ଠିକ୍ ମୋର ବସିବା ଜାଗାର ସାମ୍ନାକୁ।

ଆଜି ଏଇ ମୁହୂର୍ତ୍ତରେ ସେଇ କବିତା ଯୋଡ଼ିରେ ସତ୍ୟତା ଯେପରି ହଠାତ୍ ଆଲୋକିତ କରି ଦେଇଗଲା ମୋର ଚେତନାକୁ ଆକସ୍ମିକ ଭାବରେ।

ଏମିତି ହୁଏ। ଅନେକ କଥା ଯାନ୍ତ୍ରିକ ଭାବରେ ମଣିଷ ପୁନରାବୃତ୍ତି କରେ। ଘୋଷେ। ଦେଖେ। ଶୁଣେ। କିନ୍ତୁ ଠିକ୍ ହୃଦୟଙ୍ଗମ କରି ପାରେନାହିଁ। ଅନୁଭବ କରି ପାରେନାହିଁ।

କିନ୍ତୁ ସେଇ ଘୋଷା କବିତାର ପ୍ରତ୍ୟେକଟି ଶବ୍ଦ ମନ ଭିତରେ ଖୋଦିତ ହୋଇ ରହିଥାଏ ଏଇ ମୁହୂର୍ତ୍ତ ଟିକକର ଅପେକ୍ଷାରେ ଯେତେବେଳେ ତାହା ବିସ୍ଫୋରିତ ହୋଇ ଉଠେ ପ୍ରବଳ ଏକ ପ୍ରକାଣ୍ଡ ବିସ୍ଫୋରଣରେ।

ଯିଏ ଏଇ କବିତାକୁ ଲେଖିଥିଲା ସେ କବି ଆଉ ନାହାନ୍ତି। ଆଉ ସେଇ କବିତାକୁ ଗୋଲ ଗୋଲ ଅକ୍ଷରରେ ଅତି ଯତ୍ନରେ ଲେଖିଥିବା ଦୀନବନ୍ଧୁ ମାଷ୍ଟ୍ରଙ୍କ ମର ଶରୀର ମଧ କେଉଁଦିନୁ ପୋଡ଼ି ପାଉଁଶ ହୋଇ ମାଟିରେ ମିଶି ଗଲାଣି !

ମାଟିରେ ବି ମିଶି ଗଲାଣି ସେଇ କବିତାକୁ ନିଜ ଛାତିରେ ଧରି ରଖିଥିବା ମାଟିକାନ୍ଥ। ଚାଳ ଛପର ଘର।

ଆଜି ତାରି ଜାଗାରେ ଛିଡ଼ା ହୋଇଛି ଚୁନ ସୁରକି ଇଟାର ଆଜବେଷ୍ଟସ ଘର। କାନ୍ଥରେ ତାର ଆଉ ସେଦିନ ପରି କଳା ଦାଗର ଧଡ଼ି ନାହିଁ। କବିତା ନାହିଁ।

କୋଠରୀର ପୂର୍ବ କଣକୁ ଗୋଟାଏ କଳାପଟା ତିନିଗୋଡ଼ରେ ଛିଡ଼ା ହୋଇଛି ! ଯାହାର ଦେହରେ ପ୍ରତି ମୁହୂର୍ତ୍ତରେ ଅକ୍ଷର ଲେଖା ହୁଏ ପର ମୁହୂର୍ତ୍ତରେ ପୋଛାଯାଏ ଠିକ୍।

ଆଜିକାଲି ମଣିଷ ଜୀବନ ପରି। କେବଳ ମଣିଷ କାହିଁକି— ପୃଥିବୀର ସମସ୍ତ ପ୍ରାଣୀ ଜଗତର ଜୀବନ ପରି।

ଶାସ୍ତ୍ରରେ ଅଛି ପୃଥିବୀରେ ଛପନ କୋଟି ଜୀବଜନ୍ତୁ। ଆଧୁନିକ ବିଜ୍ଞାନ କହେ ପୃଥିବୀରେ ପ୍ରାୟ ତିନିଶହ ପଚାଶ ଲକ୍ଷ ବିଭିନ୍ନ ଜାତିର ବୃକ୍ଷଲତା ଓ ପ୍ରାଣୀ ରହିଥିବାର ଅନୁମିତ ହୁଏ ଯାହା ମଧ୍ୟରୁ ମଣିଷ ଆଜିଯାଏଁ ମାତ୍ର ୧୪ ଲକ୍ଷ କିସମର ପ୍ରାଣୀକୁ ଚିହ୍ନିତ କରି ପାରିଛି। ଏହି ତିନିଶ ପଚାଶ ଲକ୍ଷ ଭିତରେ କିନ୍ତୁ ବିଭିନ୍ନ ପ୍ରକାରର ଜୀବାଣୁ ଓ ଭୂତାଣୁମାନଙ୍କୁ ହିସାବରେ ଅଣାଯାଇ ନାହିଁ।

ଅଥଚ ଆଜିକର ପୃଥିବୀରେ ପ୍ରତି ମୁହୂର୍ତ୍ତରେ ଗୋଟାଏ ଲେଖାଏଁ ସ୍ପେସିଜ୍‌ରୁ ପ୍ରାଣୀ ଚିରଦିନ ପାଇଁ ଭୂପୃଷ୍ଠରୁ ଅନ୍ତର୍ହିତ ହୋଇ ଯାଉଛନ୍ତି। ଏହା ତ ମଣିଷର ଚିହ୍ନିଥିବା ପ୍ରାଣୀଜଗତ ମଧ୍ୟରୁ ଗୋଟିଏ। କିନ୍ତୁ ତାର ଅଲକ୍ଷ୍ୟରେ ତାର ଜ୍ଞାନର ବାହାରେ ରହିଯାଇଥିବା ପ୍ରକାଣ୍ଡ ଜୀବଜଗତର କେତେଲକ୍ଷ କୋଟି ଜୀବ ଯେ ପ୍ରତି ମୁହୂର୍ତ୍ତରେ ଧ୍ୱଂସ ପାଇ ଯାଉଛି ତାର ହିସାବ କିଏ ଦେବ ?

ପୃଥିବୀରୁ ଜୀବନ ଅଲକ୍ଷ୍ୟରେ ଧୀରେ ଧୀରେ ଅବଶ୍ୟମ୍ଭାବୀ ଗତିରେ ଅବଲୁପ୍ତ ହୋଇ ଯାଉଛି। ଏକ୍‌ସଟିନକସନ୍ କ୍ରାଇସିସ୍।

ଅଥଚ ମଣିଷର ସଂଖ୍ୟା ବଢୁଛି।

ଜନଗଣନା ଅନୁଯାୟୀ ଭାରତର ଜନସଂଖ୍ୟା ଏବେ ଚଉରାଅଶି କୋଟି। ୨୦୦୦ ଖ୍ରୀ:ଅ: ବେଳକୁ ଏହା ହୋଇଥିବ ୧୦୪ କୋଟି। ପୃଥିବୀର ଲୋକସଂଖ୍ୟା ସେଇ ଅନୁପାତରେ ବଢ଼ିଯିବ ପ୍ରାୟ ସାତଶହ କୋଟିକୁ।

ବୋଧହୁଏ ଆନୁପାତିକ ସ୍ତରରେ ବାଇଓମାସ ସେତିକି ହିଁ ରହିଥିବ। ରକମ ଫେର କେବଳ କିସମରେ, ପ୍ରକାର ଭେଦରେ, ହୁଏତ ଆଉ କେତୋଟି ଶତାବ୍ଦୀ

ପରେ ପୃଥିବୀରୁ ବିଭିନ୍ନତା ଲିଭିଯିବ। ସବୁ କେତୋଟି ପ୍ରାଣୀଜଗତ ଭିତରେ ସୀମାବଦ୍ଧ ହୋଇ ରହିଯିବ ବହୁ ବର୍ଣ୍ଣ; ବହୁ ଆକାର, ବହୁ ସ୍ୱରର ପୃଥିବୀ ଠିକ୍ ସରକାରୀ ଘରର କଲୋନୀମାନଙ୍କ ପରି। ସବୁ ଏକାକାର, ସବୁ ସମାନ। ପାଞ୍ଚ ଛଅଟି ଟାଇପ ମାତ୍ର।

ରହିବେ କେବଳ ମଣିଷ ଓ ତାହାର ଦରକାରରେ ଆସୁଥିବା କେତୋଟି ବୃକ୍ଷଲତା, କେତୋଟି ପ୍ରାଣୀ ତାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ।

ସମସ୍ତ ହିଂସ୍ରଜନ୍ତୁ ଲୋପ ପାଇଯିବେ। ବାଘ, ଭାଲୁ, ଚିତା, ଗଧିଆ କେବଳ ଦେଖାଯିବେ ଚିଡ଼ିଆଖାନାରେ ନହେଲେ ଯାଦୁଘରରେ। ସାପ ସବୁ ବିଚ୍ଛିନ୍ନ ହୋଇ ଆସିଲେଣି। ସେମାନଙ୍କର ଚମଡ଼ା ଛଡ଼ାଇ ବିଭିନ୍ନ ଯାଦୁଘରମାନଙ୍କରେ ରଖା ହେବାର ପ୍ରକ୍ରିୟା ଆରମ୍ଭ ହୋଇ ଗଲାଣି।

ହୁଏତ କିଛି ମିରିଗ, ଶମ୍ବର, କୁଟୁରା ବଞ୍ଚିଯାଇ ପାରନ୍ତି। ଯେମିତି ବଞ୍ଚିଯିବେ ଗାଈଗୋରୁ, ଛେଳି, ଘୋଡ଼ା କୁକୁଡ଼ା ପ୍ରଭୃତି ପ୍ରାଣୀମାନଙ୍କ ପରି। ମଣିଷର ଦୁଧ, ଦହି ଦରକାର। ମାଂସ ଦରକାର। ଅଣ୍ଡା ଦରକାର। ମଣିଷର ଖାଦ୍ୟର ପ୍ରୟୋଜନରେ ହିଁ ସେମାନଙ୍କର ବଞ୍ଚିବା ନିର୍ଭର କରେ।

ଆକାଶରେ ଆଉ ଭଳିଭଳିକିଆ ଚଢ଼େଇ ଦେଖାଯିବେ ନାହିଁ। ହୁଏତ କାଁ ଭାଁ ଗୋଟାଏ କୋଇଲି କି କୁଆଟିଏ, ନାଇଟିଙ୍ଗେଲ କି ଇଗଲଟିଏ ମଣିଷ ହାତରୁ ବଞ୍ଚିଯାଇ ପାରନ୍ତି। କିନ୍ତୁ ତା ବି ଅସମ୍ଭବ ହୋଇ ଉଠିବ। ପ୍ରତି ମୁହୂର୍ତ୍ତରେ ଅଗଣିତ କୀଟପତଙ୍ଗ ଇନ୍‌ସେକ୍ଟିସାଇଡ୍‌ର ବିଷର ପ୍ରକ୍ରିୟାରେ ନିଶ୍ଚିହ୍ନ ହୋଇ ଯାଉଛନ୍ତି। ପକ୍ଷୀଟିଏ କାହାକୁ ଖାଇ ଜୀବନ ଧାରଣ କରିବ? ସେଇ ବିଷାକ୍ତ କୀଟପତଙ୍ଗଙ୍କୁ ଖାଇ ସେ ମଧ୍ୟ ଧୀରେ ଧୀରେ ଲୁପ୍ତ ହୋଇଯିବ କାଳର ଗଭୀର ଅନ୍ଧକାର ମଧ୍ୟରେ।

ଆଗାମୀ ଭବିଷ୍ୟତର ପୃଥିବୀ ଏକ ଭୟାନକ, ବିବର୍ଣ୍ଣ, ଧ୍ୱଂସର ପୃଥିବୀ। ସେଇଠି ନଥିବ ଲକ୍ଷ ଲକ୍ଷ ବିଭିନ୍ନ ପକ୍ଷୀମାନଙ୍କର ମଧୁର କାକଳିର ମଧୁର ଧ୍ୱନି—ନଥିବ ବାଘର ହେଣ୍ଟାଳ, ବେଙ୍ଗର ଧୈବତ, ମୟୁରର କେକାରବ ନଥିବ ବିଭିନ୍ନ ବୃକ୍ଷଲତାର ବିଭିନ୍ନ ବର୍ଣ୍ଣାଢ଼୍ୟ ରୂପ।

ହୁଏତ ମଣିଷର ଭାରରେ ପୃଥିବୀର ବାୟୋମାସ ସମାନ ରହିଥିବ କିନ୍ତୁ ଲୁପ୍ତ ହୋଇ ଯାଇଥିବ ତାର ବିଭିନ୍ନତା—ତାର ବାୟୋଡାଇଭରସିଟି।

ଏମିତି ଏକ ପୃଥିବୀରେ ମଣିଷ ପାଲଟି ଯାଇଥିବ ଏକ ଯନ୍ତ୍ରରେ। ସେ ପରୀକ୍ଷା କରୁଥିବ କେମିତି ଗାଈର ଦୁଧ ବେଶୀ ବଢ଼ିବ, କୁକୁଡ଼ା, ମେଣ୍ଢା ଓ ଛେଳିର ମାଂସ କେମିତି ବେଶୀ ବଢ଼ିବ—। କେମିତି, କେତେ ଅଳ୍ପ ସମୟ ଭିତରେ ସେମାନେ ବଢ଼ିଯିବେ—ମଣିଷର ଅନନ୍ତ କ୍ଷୁଧାକୁ ପ୍ରଶମନ କରିବା ପାଇଁ। ଆଉ ତା'ପରେ ମଣିଷ ମଣିଷକୁ ଦେଖି ଦେଖି କ୍ରମଶଃ ବିତୃଷ୍ଣା ହୋଇଯିବ।

ସେଥିପାଇଁ ସେ ଶୀକାର କରିବ। କଳା ମଣିଷ ହାଣିବ ଗୋରା ମଣିଷକୁ। ଗୋରା ମଣିଷ ହତ୍ୟା କରିବ ପୀତ ମଣିଷକୁ। ପୀତ ମଣିଷ ମହୋଲ୍ଲାସରେ ହତ୍ୟା କରିବ ତାମ୍ର ମଣିଷକୁ।

ତା'ପରେ ଏଇ ସୁନ୍ଦର ପୃଥିବୀର ଶେଷ ପରିଣତି ତେବେ ଏଇଆ ? କେହି ନାହିଁ—ସବୁ କେବଳ ଏକ ହୁ ହୁ ମରୁପ୍ରାନ୍ତର। ସୁଦୂର ମଙ୍ଗଳ ଓ ଶୁକ୍ରଗ୍ରହର ଉପରି ଭାଗ ପରି ପୃଥିବୀରେ ରହିଥିବ ଅଙ୍ଗାରକାମ୍ଳ ବାଷ୍ପର କଠିନ ବରଫାବୃତ୍ତ ଯୋଜନ ଯୋଜନ ବ୍ୟାପୀ। ଏକ ଜୀବନହୀନ ମହା ମୃତ୍ୟୁର ଇଲାକା।

ଏତିକିବେଳେ ହଠାତ୍ ମୋର ମନେ ପଡ଼ିଲା ପିଲାଦିନେ ଘୋଷିଥିବା ସେଇ ଦ୍ୱିତୀୟ କବିତାର ପଂକ୍ତିଟା।

ମାରେ ହରି ରଖେ କିଏ
ରଖେ ହରି ମାରେ କିଏ ?

ଏଇ କବିତାର ପଂକ୍ତିଟା ଲେଖାଥିଲା ଠିକ୍ ମୋ ବସିବା ଜାଗାର ଠିକ୍ ସାମ୍ନାକୁ। କେତେବେଳେ ଅନ୍ୟମନସ୍କ ହୋଇ ଉପରକୁ ଚାହିଁଲା ମାତ୍ରେହିଁ ସେଇ କବିତାର ଧାଡ଼ି ଦୁଇଟା ଆଖିରେ ପଡ଼ିଯାଉଥିଲା। ମୋତେ ଏ କବିତାଟିକୁ ଆଉ ଘୋଷି ମୁଖସ୍ଥ କରିବାକୁ ପଡ଼ି ନଥିଲା। ଆପେ ଆପେ କେତେବେଳେ ମୋର ଅବଚେତନର କଳାକାନ୍ଥ ଉପରେ ସେଇଟା ଖୋଦେଇ ହୋଇ ଯାଇଥିଲା।

ଅଥଚ ଦୀର୍ଘ ପଚାଶ ବର୍ଷ ଧରି ଏ କବିତାଟା ମୋର ଥରକ ପାଇଁ ବି ମନେ ପଡ଼ି ନଥିଲା। ଯଦିବା କେତେବେଳେ ମନେ ପଡ଼ି ଯାଇଥିବ, ମୁଁ ତାକୁ କେବେ ନିଘା ଦେଇନାହିଁ। ଅନ୍ୟ ସବୁ ଘଟଣା ପରି ଏଇଟା ବି ରହି ଯାଇଥିଲା ଗୋଟାଏ ତୁଚ୍ଛ ଘଟଣା।

ଆଜିର ଏଇ ମୁହୂର୍ତ୍ତରେ, ଜୀବନର ଶେଷ ଅବସ୍ଥାରେ କବିତାର ଶବ୍ଦ ଗୋଟିଏ ଗୋଟିଏ ବୋମ୍‌ସେଲ୍ ପରି ଫାଟି ଉଠୁଛି ଭୀଷଣ ଶବ୍ଦରେ, ଷାଠିଏ ବର୍ଷର ଜୀବନକାନ୍ଥକୁ ଭୀଷଣ ଭାବରେ ଦୋହଲାଇ ଦେଇ।

ଗତ ପଚାଶ ବର୍ଷର ନିରନ୍ତର ଧାଇଁବା। ଚାକିରୀ, ପରିବାର ପ୍ରତିପୋଷଣର ଅବିଶ୍ରାନ୍ତ ଘୂର୍ଣ୍ଣନ ଭିତରେ କିଛି ଭଲ କରି ଦେଖି ପାରିନାହଁ, ଶୁଣି ପାରିନାହଁ। ସେଥିପାଇଁ ବୋଧହୁଏ କବିତାର ପଂକ୍ତି ଦୁଇଟା ଏତେ କର୍କଶ, ଏତେ ରୁକ୍ଷ ମନେ ହେଉଛି।

ମୁଁ କଣ ସତରେ କିଛି ନୁହେଁ କେବଳ ଗୋଟାଏ ଯନ୍ତ୍ର। ସତରେ କଣ ଏଇ ସମସ୍ତ ଜୀବଜଗତ, କେବଳ ଏକ ଆତ୍ମଭୋଳା। ଇଚ୍ଛାମୟ ଖିଆଲି 'ହରି'ର ନିତ୍ୟ ଲୀଳା ? ସେ ଯେତେବେଳେ କରିବ ମୁଁ କି କେହି କାହାରିକୁ ରକ୍ଷା କରି ପାରିବୁ ନାହିଁ?

ମଣିଷ ତ ଈଶ୍ୱରର ପ୍ରତିରୂପ ଏବଂ ସେଥିପାଇଁ ବୋଧହୁଏ ପ୍ରତିପକ୍ଷ ମଧ୍ୟ।

ଈଶ୍ୱର ଅନବରତ ଚେଷ୍ଟା କରି ଚାଲିଛନ୍ତି କେମିତି ମଣିଷମାନଙ୍କୁ ମାରିବେ ଓ ମଣିଷ ପ୍ରତି ନିୟତ ଚେଷ୍ଟା କରୁଛି କେମିତି ଭାବରେ ସେ ଈଶ୍ୱରର ଏଇ ଚକ୍ରାନ୍ତକୁ ପଣ୍ଡ କରି ଦେଇ ବଞ୍ଚି ରହିବ।

ଈଶ୍ୱର ଗତିରେ ଶୀତ, ଗ୍ରୀଷ୍ମ, ବର୍ଷା।

ପ୍ରଚଣ୍ଡ ଶୀତ, ପ୍ରଖର ରୌଦ୍ର, ପ୍ରବଳ ଧାରାପାତ। ବରଫାବୃତ୍ତ ମେରୁ, ସ୍ୱଧ ମରୁଭୂମି, ପ୍ରବଳ ବନ୍ୟା। ମଣିଷ ଘର ଗଢ଼େ, ବସ୍ତ୍ର ତିଆରି କରେ, ମାଟିର ଅଭ୍ୟନ୍ତର ଭିତରୁ ଓଏସିସ୍‌ର ଆବିଷ୍କାର କରେ, ନଦୀ ବନ୍ଧ ବାନ୍ଧେ।

ଈଶ୍ୱର ଛାଡ଼ନ୍ତି ଅସ୍ତ୍ର। ରୋଗ। ହଇଜା, ପ୍ଲେଗ, ବସନ୍ତ, ମେଲେରିଆ, ଯକ୍ଷ୍ମା, କାନସାର, ଏଡ଼ସ୍। ମଣିଷ ଔଷଧର ଆବିଷ୍କାର କରେ। ଈଶ୍ୱର ଦତ୍ତ ପଦାର୍ଥ ମଧ୍ୟରୁ ବଞ୍ଚିବାର ପ୍ରତିଷେଧକ ତିଆରି କରେ।

ଈଶ୍ୱର ଦିଅନ୍ତି ଜରା।

ମଣିଷ ଉଦ୍ଭାବନ କରୁଛି ଚିର ଯୌବନ ଲଭିବାର ଉପାୟ। ହୁଏତ ଆଉ କିଛିବର୍ଷ ଭିତରେ ଅମର ସେବାର ଔଷଧ ବି ଆବିଷ୍କୃତ ହୋଇ ଯାଇପାରେ। ସମୁଦ୍ର ମନ୍ଥନ କରି ସେ ଆଣିପାରେ ଚିରଞ୍ଜିବି ରହିବାର ଅମୃତ କଳସ।

ଈଶ୍ୱର କିନ୍ତୁ ପରାସ୍ତ ହୁଅନ୍ତି ନାହିଁ। ପରାସ୍ତ ହେବେ ନାହିଁ। ଶେଷକୁ ସେ ନିକ୍ଷେପ କରନ୍ତି ତାଙ୍କର ଶେଷ ଅସ୍ତ୍ର।

ଅତି ସଙ୍ଗୋପନରେ ମଣିଷର ମନ ଭିତରେ ଭରି ଦିଅନ୍ତି ନିଜକୁ ନିଶେଷ କରିବାର ଅଭିଳାଷ। ଲୋଭ, ହିଂସା ଓ କାମନାରେ ମଣିଷର ମନ ବିଷାକ୍ତ ହୋଇଯାଏ। ସେ ଈଶ୍ୱରଙ୍କ ବିରୁଦ୍ଧରେ ଲଢ଼ିବା ଭୁଲିଯାଏ। ଭୁଲିଯାଏ ତାର ପ୍ରକୃତ ପ୍ରତିଯୋଦ୍ଧା କିଏ ?

ସେ ଆପଣା ବିରୁଦ୍ଧରେ ଲଢ଼ିଯାଏ। ସେ ହତ୍ୟା କରେ ଅନ୍ୟ ମଣିଷକୁ। ନିଜର ଆତ୍ମୀୟମାନଙ୍କୁ ଓ ଶେଷରେ ନିଜକୁ।

ଅସହାୟ ମଣିଷ ଶେଷକୁ ବୁଝିପାରେ ଈଶ୍ୱରର ଏହି ଚକ୍ରାନ୍ତ। କିନ୍ତୁ ତାର ପ୍ରତିରୋଧ କରିବାର ଉପାୟ ତା ପାଖରେ ନାହିଁ। ସେ ପ୍ରତିରୋଧ କରିବାର ଅସ୍ତ୍ର ଖୋଜେ—ସାରା ପୃଥିବୀ ଘୂରିଆସେ। ସବୁ ବିଷାକ୍ତ ପଦାର୍ଥକୁ ଠୁଳ କରେ। କିନ୍ତୁ ନିଜ ଅଜାଣତରେ ନିଜ ଉପରେହିଁ ସେହି ବିଷକୁ ପ୍ରୟୋଗ କରି ମୋହାସକ୍ତ ଭାବରେ। "ହରି" ହଁ ମାରେ। ମଣିଷ ନିମିତ୍ତ ହୋଇଯାଏ। ଅଥଚ 'ହରି' ରୂପେ କାହାକୁ ? କୋଉ ଲୋକମାନଙ୍କ ପାଇଁ ଏଇ କବିତାର ଶେଷଧାଡ଼ି ? କାହିଁକି ବା 'ହରି' ରଖନ୍ତି ? ଆଉ ଯାହାକୁ ରଖନ୍ତି, ସେ କାହିଁକି ଆଜିଯାଏନାହିଁ ? ମୁଁ ତ କାହାରିକୁ ସେମିତି ଦେଖିନାହିଁ ଯେ ଆଜିଯାଏଁ ରହିଛି ଠିକ୍ ସେମିତି, ଯେମିତି ସେ ରହିଥିଲା ଆଜିକୁ ପାଞ୍ଚ କି ଦଶ ହଜାର ବର୍ଷ ତଳେ ?

ଏଇ 'ରଖିବାଟା' ବୋଧହୁଏ ଗୋଟାଏ ମେଟାଫର୍। ଗୋଟାଏ ଉପମା ମାତ୍ର। ମଣିଷର ଦେହ ରହେନାହିଁ, ଏହା ନିର୍ମମ ଭାବରେ ସତ୍ୟ। ତେବେ ରହେ କେଉଁଟା ? ଆତ୍ମା ? କାହିଁ ସେ ଆତ୍ମା ? କାହିଁକି ସେ ଆତ୍ମା ସାକାର ରୂପ ଗ୍ରହଣ କରୁନାହିଁ?

ହରିଙ୍କର ଏହି 'ରଖିବାଟା' ବୋଧହୁଏ ତେଣୁ ସାକାର ରୂପରେ ରଖିବା ନୁହେଁ। ହୁଏତ ଆଉ କିଛି? କଣ ସେ ଆଉକିଛି? ଗୋଟାଏ ଅଶରୀରୀ ଧ୍ୱନି? ଗୋଟାଏ ଚିରନ୍ତନ ଚେତନା ?

ଚେତନାର ରୂପନାହିଁ, ଗନ୍ଧନାହିଁ—ଚେତନା ଏକ ଅନୁଭବ। ସେ ପ୍ରକାଶିତ ହୁଏ ଧ୍ୱନିରେ, ରୂପରେ, ରସରେ ଗନ୍ଧରେ। ପ୍ରତି ମନ୍ୱନ୍ତରେ ସେ ସାକାର ରୂପ ନିଏ। କୃଷ୍ଣ, ରାମ, ଯୀଶୁ, ବୁଦ୍ଧ ଓ ମହମ୍ମଦ ରୂପରେ। ଚିରନ୍ତନ ଚେତନାର ଧ୍ୱନି ରୂପରେ, ବାଣୀ ରୂପରେ ପ୍ରକଟିତ ହୁଏ ସେଇମାନଙ୍କ କଣ୍ଠରୁ।

ବେଦ, ଉପନିଷଦ ଧ୍ୱନିତ ହୁଏ ଜଣେ ସାକାର ଋଷିଙ୍କର କଣ୍ଠରେ। ପ୍ରତିଧ୍ୱନିତ ହୁଏ ଅଗଣିତ ଶିଷ୍ୟମାନଙ୍କ କଣ୍ଠରେ। ସ୍ମୃତି ରୂପରେ ସଞ୍ଚିତ ହୋଇ ରହେ ମନର କେଉଁ ନିଭୃତ ପ୍ରକୋଷ୍ଠରେ। ଶ୍ରୁତ ରୂପରେ ବହିଆସେ ଅଗଣିତ ସାକାର ରୂପ ମାଧ୍ୟମରେ।

ଶବ୍ଦରୁ ରୂପକୁ ପ୍ରକାଶିତ ହେବାପାଇଁ ସେ ମାଧ୍ୟମ ଖୋଜେ। ଚିତ୍ର ରୂପରେ ସେ ପ୍ରତିବିମ୍ବିତ ହୁଏ। ଶେଷକୁ ଲିପି ମାଧ୍ୟମରେ ନିଜକୁ ଚିରସ୍ଥାୟୀ କରିଦିଏ ମାନବ କଲ୍ୟାଣ ପାଇଁ।

'ହରି' ସାକାର ରୂପକୁ ରଖେ ନାହିଁ।

ହରି ରଖେ ତାର ନିଜସ୍ୱ ବାଣୀକୁ—ନିଜସ୍ୱ ଚେତନାକୁ। ଯିଏ ତାର ଏଇ ଧ୍ୱନିର ବାହକ ହୁଏ, ଯେ ତାର ଏଇ ଚେତନାର ଇଚ୍ଛାକୃତ ଧାରକ ହୁଏ ତାରି ମାଧ୍ୟମରେ 'ହରି' ନିଜକୁ ହିଁ ରଖନ୍ତି।

ସେଥିପାଇଁ ବୋଧହୁଏ ବେଦ ରହିଛି। ଉପନିଷଦ ରହିଛି। ରାମାୟଣ, ମହାଭାରତ, ଧର୍ମପଦ, ତ୍ରିପିଟକ, ବାଇବେଲ, କୋରାନ ରହିଛି। ରହିଁଥିବ କଳ୍ପକ୍ଷୟର। ଶେଷ ପର୍ଯ୍ୟନ୍ତ।

ସବୁ ଧର୍ମ ପୁସ୍ତକ ପୋଡ଼ା ହୋଇ ଯାଇପାରେ। ସବୁ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ମହା ବିହାର, ଗୁରୁଦ୍ୱାର ଭସ୍ମୀଭୂତ ହୋଇ ଯାଇପାରେ। କିନ୍ତୁ ସମଗ୍ର ଜୀବଜଗତ କଥା। ଜଡ଼ ଜଗତର ଗଭୀର ଅନ୍ତଃସ୍ଥଳ ମଧ୍ୟରେ ଚେତନାର ସ୍ଫୁଲିଙ୍ଗଟି ରହିଥିବ ସେହିପରି ଚିର ଭାସ୍ୱର।

ତାକୁ ମାରିବ କିଏ ?

-୦-

# ସାପ

ମିସେସ୍ କାନନବାଳା ମହାପାତ୍ର ଗତ କିଛିଦିନ ଧରି ଖାଲି ସାପ ସ୍ୱପ୍ନ ଦେଖୁଛନ୍ତି। କିଛି କାରଣ ନାହିଁ—ଏମିତି ହଠାତ୍ କାହିଁକି ହେଲା କେଜାଣି ? ରାତି ଅଧରେ ସ୍ୱପ୍ନ ଦେଖି ବିଲିବିଲେଇ ଉଠି ବସନ୍ତି। ଦିହରୁ ଗମ୍ ଗମ୍ ଝାଳ ବୋହିଯାଏ। ପାଟି ଅଠା ଅଠା ହୋଇଯାଏ। ଡ଼ରରେ ଦିହହାତ ଥରୁଥାଏ ଏକାଦିକ୍ରମେ ନିଦ ଭାଙ୍ଗିବାର ଅଧଘଣ୍ଟା ପର୍ଯ୍ୟନ୍ତ। କେବେ କେବେ କେମିତି ଗୋଟାଏ ବିକଳ ଚିତ୍କାର କରି ଉଠି ବସନ୍ତି।

ବ୍ରିଗେଡ଼ିଅର ମହାପାତ୍ରଙ୍କ ମଦ୍ୟନିଶାର ପ୍ରଗାଢ଼ ସୁଷୁପ୍ତି ମଧ ଭାଙ୍ଗିଯାଏ ତାଙ୍କର ଏ ଚିତ୍କାରରେ।

ସେ ସ୍ୱପ୍ନ ଦେଖନ୍ତି। ସୁନ୍ଦର ରାଜପ୍ରାସାଦ। ତା' ଭିତରେ ଶଙ୍ଖ ମଲମଲ ପଥରର ଅତି ସୁନ୍ଦର କୋଠରୀଟିଏ। ବଡ଼ ବଡ଼ ଝର୍କା। ଝର୍କାରେ ନାଲି ନାଲି ରଙ୍ଗର ମୋଟା ଭେଲଭେଟ୍‌ର ପରଦା। ତଳେ ରକ୍ତରଙ୍ଗର ମୋଟା ପର୍ସିଆନ୍ କାର୍ପେଟ୍। ତା ପାଖରେ କୋଟିକମ କରା ବିରାଟ ଶିଶୁକାଠର ପଲଙ୍କ। ପଲଙ୍କ ଉପରେ ମୋଟା ବହଳ ଗଦି। ଯାହାକୁ କହନ୍ତି "ଦୁଗ୍ଧଫେନନିଭ ତୁଳିତଳ୍ପ ଶଯ୍ୟା"। ସେ ଦେଖନ୍ତି ସେ କେମିତି ଧୀରେ ଧୀରେ ଯାଇ ସେଇ ବହଳ ଗଦିର ନରମ ଓ ଉଷୁମ ଗଦିରେ ଶୋଇ ପଡ଼ିଛନ୍ତି। ଧୀରେ ଧୀରେ ତାଙ୍କର ଆଖିପତା ବୁଜି ହୋଇ ଆସୁଛି ମହାନ ତୃପ୍ତିରେ। ଏତିକିବେଳେ ସେ ଅନୁଭବ କରନ୍ତି ତାଙ୍କ ପାଦ ପାଖରେ ଗୋଟାଏ ଶୀତଳ ସ୍ପର୍ଶ। ସେ ଚମକି ପଡ଼ି ଚାହିଁ ଦେଖନ୍ତି ତ ତାଙ୍କ ପାଦ ପାଖରେ ଗୋଟାଏ ବିରାଟ କଳା ନାଗ ଫଣା ଟେକି ଚାହିଁ ରହିଛି ତାଙ୍କ ଆଡ଼କୁ ଏକାଦୃଷ୍ଟିରେ। ମୁଣ୍ଡ ଉପରେ ତା'ର ହୀରା ପରି ମଣିଟିଏ ଜ୍ୱଳଜ୍ୱଳ ହୋଇ ଜଳୁଛି ପାହାନ୍ତି ପହରର ଶୁକ୍ରତାରା ପରି। ଆଖି ଦୁଇଟି ସ୍ଥିର। ଫଣା ବି ସ୍ଥିର। କିନ୍ତୁ ତା'ର ଅସ୍ଥିର ବିଭାଜିତ କଳା ସରୁ ଜିହ୍ୱଟି କ୍ଷଣକେ ବାହାରକୁ ଆସି କ୍ଷଣକେ ଭିତରେ ପଶି ଯାଉଛି। ସେଇଟା ହିଁ ଯେମିତି ଏକମାତ୍ର ସଚଳ ଅଙ୍ଗ। ମୃଦୁ ମୃଦୁ ଶବ୍ଦ ଶୁଭୁଛି ହସ୍ ହସ୍। ଗଳା ପାଖର ଧଳା ଅଂଶଟି ଟିକିଏ ଫୁଲି ଯାଉଛି—ପୁଣି ଅବସ୍ଥାକୁ ଫେରି ଯାଉଛି। ସମାନ୍ତରାଳ ଭାବରେ ଉଠପଡ଼ ହେଉଛି ହିସ୍ ଶବ୍ଦ ସହି।

ଅନେକ ସମୟ ଧରି ସେମିତି ସମ୍ମୋହିତ ହୋଇ ରହନ୍ତି କାନନବାଳା। ତା ଉପରେ ଭୟର ଏକ ଭୟାନକ ଜୁଆର ଉଠିଆସେ ତାଙ୍କ ତଳିପା ପାଖରୁ। ଥଣ୍ଡା ହୋଇ ଆସେ ପାଦର ତଳିପା। ଧୀରେ ଧୀରେ ସେଇ ଶୀତଳତା

ଉପରକୁ ଉଠି ଆସେ ସନ୍ତର୍ପଣରେ। ସେଇ ଶୀତଳତାର ସ୍ପର୍ଶରେ ଯେମିତି ସବୁ କିଛି ସ୍ଥିର, ନିସ୍ପନ୍ଦ ଜଡ଼ ହୋଇ ଯାଉଛି ପକ୍ଷାଘାତ ପରି। ଯେତେବେଳେ ସେଇ ଶୀତଳତା ତାଙ୍କ ଛାତି ଉପରକୁ ଉଠି ଆସେ ସେ ଅନୁଭବ କରନ୍ତି ସତେ ଯେମିତି ତାଙ୍କ ଫୁସ୍‌ଫୁସ୍‌କୁ ସେଇ ଶୀତଳତା ରୁନ୍ଧି ଦେଉଛି, ଚିପୁଡ଼ି ଆଣୁଛି ଏକ ଶକ୍ତ କଠିନ ହାତରେ। ସେ ଅଣନିଃଶ୍ୱାସୀ ହୋଇ ଯାଆନ୍ତି। ଠିକ୍ ସେତିକିବେଳେ ସେ ଧଡ଼ାସ କରି ଉଠି ବସନ୍ତି ବିଛଣା ଉପରେ।

ସ୍ୱପ୍ନର ଦୃଶ୍ୟର ତାରତମ୍ୟ ଘଟିଥାଏ। କୋଠରୀ ବଦଳରେ ବଗିଚା କିମ୍ବା ସମୁଦ୍ରକୂଳ, ପାହାଡ଼ ଜଙ୍ଗଲ, ହୋଟେଲରୁମ୍‌ର ଦୃଶ୍ୟ ସେ ଦେଖିଥାନ୍ତି। କିନ୍ତୁ ସେଇ କଳା ନାଗଟି କିନ୍ତୁ ସେମିତି ଏକାପରି ରହିଥାଏ କେତେବେଳେ ଛାତି ପାଖରେ, କେତେବେଳେ ଅବା ମୁଣ୍ଡ ଉପରେ।

ମିସେସ୍ କାନନବାଳା ମହାପାତ୍ରଙ୍କ ବୟସ ଉତ୍ତର ଚାଳିଶର ଶେଷାର୍ଦ୍ଧ। ଦେଖିବାକୁ ଖୁବ୍ ସୁନ୍ଦରୀ ନ ହେଲେ ମଧ୍ୟ ଦେହର ରଙ୍ଗ ତୋଫା ଗୋରା। ଉଚ୍ଚତା ପାଞ୍ଚଫୁଟ ଦୁଇଇଞ୍ଚ ହେଲେ ମଧ୍ୟ ତାଙ୍କର ଚମତ୍କାର ଫିଗର୍ ତାଙ୍କୁ ଅପେକ୍ଷାକୃତ ଲମ୍ବା ଦେଖାଏ। ସୁନ୍ଦର, ସୁଠାମ ଶରୀର। ଏ ପର୍ଯ୍ୟନ୍ତ ବି ବିଶେଷ ମେଦ ବୃଦ୍ଧି ଘଟିନାହିଁ। ଏହି ବୟସରେ ବି ସେ ପଇଁତ୍ରିଶଠାରୁ ଊର୍ଦ୍ଧ୍ୱ ଜଣା ପଡ଼ନ୍ତି ନାହିଁ।

କାନନବାଳା ବାହା ହୋଇଥିଲେ ମାତ୍ର ଷୋହଳ ବର୍ଷ ବୟସରେ ଏକାଦଶ ଶ୍ରେଣୀରେ ପାଠ ପଢ଼ିଲାବେଳେ। ତାଙ୍କର ପିତା ଚାଳିଶ ଦଶକରେ କଲିକତା ଆଶୁତୋଷ କଲେଜରେ ଚଳଚ୍ଚିତ୍ରାଭିନେତ୍ରୀ କାନନବାଳାଙ୍କର ଅତି ଅନୁରକ୍ତ ଥିବାରୁ ଶ୍ରଦ୍ଧାରେ ନିଜ ଝିଅର ନାମ ରଖିଥିଲେ 'କାନନବାଳା'।

ବ୍ରିଗେଡ଼ିଅର ମହାପାତ୍ରଙ୍କ ବାପା ଥିଲେ ପାରଳାଖେମୁଣ୍ଡିର ତତ୍କାଳୀନ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜଣେ ବେତନଭୋଗୀ କର୍ମଚାରୀ। ପାରଳାଖେମୁଣ୍ଡି କଲେଜରୁ ଆଇ.ଏ.ପାଶ୍ କରି ସାରିଲା ପରେ ସେ ମହାରାଜାଙ୍କ ସୁପାରିଶ କ୍ରମେ ଯୋଗ ଦେଇଥିଲେ ଭାରତୀୟ ସେନାବାହିନୀର ଆର୍ମଡ଼୍ କୋର୍‌ର ଜଣେ ଜୁନିଅର କମିଶନଡ଼ ଅଫିସର ଭାବରେ ଦ୍ୱିତୀୟ ମହାଯୁଦ୍ଧର ମଧ୍ୟ କାଳରେ। ତାଙ୍କର ନିଷ୍ଠା, ସାହସ ଓ ବୀରତ୍ୱ ଫଳରେ ସେ କ୍ରମଶଃ ପଦୋନ୍ନତି ପାଇ ଶେଷକୁ ବ୍ରିଗେଡ଼ିଆର୍ ଭାବରେ ଅବସର ଗ୍ରହଣ କରିଥିଲେ।

ବ୍ରିଗେଡ଼ିଅର ମହାପାତ୍ର ଓ ମିସେସ୍ କାନନବାଳାଙ୍କ ବୟସରେ ପାର୍ଥକ୍ୟ ପ୍ରାୟ ଦଶବର୍ଷ।

ଯଦିଓ ବାହା ହେଲା ବେଳକୁ କାନନବାଳା ବାରିପଦା ସହରର ଶତକଡ଼ା ଶହେଭାଗରୁ ମାତ୍ର ଦଶଭାଗ ଦେଖିଥିଲେ ଓ କେବଳ ସାଙ୍ଗରେ ପଢୁଥିବା ସଂଖ୍ୟାଧିକ ବଙ୍ଗୀୟ କନ୍ୟାମାନଙ୍କ ଗହଣରେ କିଛି କିଛି ବଙ୍ଗଳା ଜାଣିଥିଲେ, ତାଙ୍କୁ ଅନ୍ୟ କିଛି ଭାଷା ଜଣା ନଥିଲା। ତଥାପି ନିଜର ଓ ସ୍ୱାମୀଙ୍କର ପ୍ରଗାଢ଼ ପ୍ରଚେଷ୍ଟା ଫଳରେ ଦୁଇ ମାତ୍ର ବର୍ଷରେ ହିନ୍ଦୀ ଓ ଇଂରାଜୀ ଭାଷା କହିବାରେ ବେଶ୍ ପାରଦର୍ଶିତା ଅର୍ଜନ କରିଥିଲେ। ମିଃ ମହାପାତ୍ର କ୍ୟାପଟେନ ହେଲା ବେଳକୁ କାନନବାଳା ବବ୍

ହେଆର କଟିଂ କରି ସାରିଥିଲେ। ଅନ୍ୟାନ୍ୟ ପ୍ରଦେଶର ମହିଳାଙ୍କ ପରି ବିଶେଷତଃ ଅଫିସରମାନଙ୍କ ସ୍ତ୍ରୀ ଭାବରେ ରହିବାର ଯୋଗ୍ୟତା ଅର୍ଜନ କରିବାରେ ସେ ସକ୍ଷମ ହୋଇଥିଲେ।

ପାର୍ଟି, ଡ୍ରିଙ୍କ୍‌ସ, ସ୍ୱେଟର ବୁଣାଠାରୁ ଆରମ୍ଭ କରି ସବୁ ଜିନିଷରେ ପାରଙ୍ଗମତା ଲାଭ କରିଥିଲେ।

ମିସେସ୍ କାନନବାଳା ମହାପାତ୍ର ଧୀରେ ଧୀରେ ଅଫିସର୍‌ମାନଙ୍କର ଗେଟ୍-ଟୁଗେଦାର ପାର୍ଟିର ମଧ୍ୟ ମଣି ହୋଇ ଯାଇଥିଲେ ନିଜ ଅଜାଣତରେ।

ଏତେବର୍ଷ କାଳ ବାହାରେ ବାହାରେ ରହିବା ପରେ ସେ ଓଡ଼ିଶାକୁ ଫେରି ଆସିଥିଲେ ସ୍ୱାମୀଙ୍କ ଅବସର ଗ୍ରହଣ କରିବାର ବର୍ଷେ ପୂର୍ବରୁ। କିନ୍ତୁ ଆର୍ମି ଜୀବନର ସେଇ ଶୃଙ୍ଖଳିତ ପରିବେଶ ତଥା ଆଧୁନିକତମ ଜୀବନଯାତ୍ରାରେ ଅଭ୍ୟସ୍ତ କାନନବାଳା ଓଡ଼ିଶା ବିଶେଷତଃ କଟକର ଜଳବାୟୁ ସହିତ ଆଦୌ ଖାପ ଖୁଆଇ ପାରି ନଥିଲେ। ଶେଷକୁ ସେ ଫେରିଗଲେ ଦିଲ୍ଲୀ। ସେଇଠି ସେ ଗୋଟାଏ ଫ୍ଲାଟ୍ କିଣି ଏବେ ବସବାସ କରୁଛନ୍ତି। ଓଡ଼ିଶାରେ କାହାରି ସହିତ ବିଶେଷ ସମ୍ପର୍କ ବି ତାଙ୍କର ନ ଥିଲା। ବରଂ ତାଙ୍କର ବେଶୀ ବନ୍ଧୁବାନ୍ଧବ ଦିଲ୍ଲୀରେ। ଝିଅଟି ବାହା ହୋଇଗଲା ଜଣେ ବଙ୍ଗାଳୀ ଆର୍ମି ଡାକ୍ତର ସହିତ। ପୁଅ ବି ଜଣେ ପଞ୍ଜାବୀ ଝିଅ ବାହା ହୋଇଗଲା। ପୁଅ ମଧ୍ୟ ଆର୍ମି ଇଞ୍ଜିନିଅରିଂ କୋର୍‌ରେ ଜଣେ ଲେଫ୍‌ଟନାଣ୍ଟ।

ଏମିତି ଏକ ସୁଖୀ ପରିବାରର କୁଳବଧୂ ମିସେସ ମହାପାତ୍ରଙ୍କର ସ୍ୱପ୍ନରେ ସର୍ପ ଦର୍ଶନ ଏକ ଅଦ୍ଭୁତ କଥା ନୁହେଁ କି ?

ସବୁ ପରୀକ୍ଷା ନିରୀକ୍ଷା କରି ସାରିଲା ପରେ ଆର୍ମି ମେଡ଼ିକାଲ କୋର୍‌ର ଚିଫ୍ ମେଡ଼ିକାଲ ଅଫିସର ମେଜର ଜେନେରାଲ ଚାଟାର୍ଜି ମୁରୁକି ହସି କହିଲେ, "ଦେଖନ୍ତୁ ବ୍ରିଗେଡ଼ିଅର, ଆପଣଙ୍କ ମିସେସ୍‌ଙ୍କର କିଛି ରୋଗ ନାହିଁ। ସାମାନ୍ୟ ଟିକିଏ ବ୍ଲଡ଼ପ୍ରେସର୍ ରହିଛି। ତା ଏହି ବୟସରେ ସ୍ୱାଭାବିକ। ବରଂ ତାଙ୍କୁ ଜଣେ ସାଇକ୍ରିଆଟ୍ରିଷ୍ଟଙ୍କୁ ଦେଖାନ୍ତୁ। ଦିଜ୍ ଆର୍ ଡ଼େଞ୍ଜରସ୍ ଇୟାର୍ସ।"

ଆମେରିକାରୁ ଉଚ୍ଚଶିକ୍ଷାପ୍ରାପ୍ତ ପ୍ରାୟ ତିନିଲାଇନ ବିଶିଷ୍ଟ ଉପାଧିଧାରୀ ଅତ୍ୟାଧୁନିକ ନର୍ସିଂହୋମ୍ କରିଥିବା ଡକ୍ଟର ବ୍ରିଜ୍‌ଭୂଷଣ ଶ୍ରୀବାସ୍ତବ ନାନା ପ୍ରକାର ପରୀକ୍ଷା କରି ସାରିଲା ପରେ ବ୍ରିଗେଡ଼ଅରଙ୍କୁ ଏକାନ୍ତରେ ଡାକି କହିଲେ, "ଦେଖନ୍ତୁ ବ୍ରିଗେଡ଼ିଅର ସାହେବ। ମୁଁ କିଛି ଖୋଲାଖୋଲି କଥା ବାର୍ତ୍ତା କରିବାକୁ ଚାହେଁ। ଆପଣ କିଛି ଭାବିବେ ନାହିଁ।"ବ୍ରିଗେଡ଼ିଅର ମହାପାତ୍ର ତାଙ୍କର ଆର୍ମିସୁଲଭ ଉଦାରତା ତଥା ଉନ୍ମୁକ୍ତ ଭାବରେ ହୋ ହୋ ହସି କହିଲେ, "କହନ୍ତୁ, କହନ୍ତୁ, ଏଥିରେ ଭାବିବାର ଅଛି କ'ଣ ?" ଡକ୍ଟର ଶ୍ରୀବାସ୍ତବ ସତର୍କତାର ଭଙ୍ଗୀରେ ଅପେକ୍ଷାକୃତ ଧୀର ଗମ୍ଭୀର ସ୍ୱରରେ ଅତି ଅନ୍ତରଙ୍ଗ ଭାବରେ କହିଲେ, "ଦେଖନ୍ତୁ ବ୍ରିଗେଡ଼ିଆର୍, ଆପଣ ହେଲେ ଅତି ପ୍ରାକ୍ଟିକେଲ୍ ସୈନିକ। ନାରୀ ମନର ଏ ଜଟିଳ ମନସ୍ତତ୍ତ୍ୱ ବୁଝିବା ଟିକିଏ

କଷ୍ଟକର ହୋଇପାରେ। ତେବେ ଯଥାସମ୍ଭବ ସରଳ ଭାବରେ କହୁଛି। ସାପ ଏକ ଯୌନତାର ପ୍ରତୀକ। ମାନେ ଅବଦମିତ ଯୌନ ସଙ୍ଗମର ଇଚ୍ଛାର ପ୍ରତୀକ। ଆମେରିକାରେ ଏବଂ ଇଉରୋପପୀୟ ଦେଶରେ ଏ ବିଷୟରେ ବହୁ ଗବେଷଣା କରାଯାଇଛି। ଦେଖାଯାଇଛି ଯେ ପୁରୁଷମାନେ ତାଙ୍କର ଯୌନ ପରିତୃପ୍ତିର ଚୂଡ଼ାନ୍ତ ଶୀର୍ଷକୁ ତାଙ୍କର 'ଟିନ୍' ବା କୈଶୋର ଅବସ୍ଥାରେ ହିଁ ଉପନୀତ ହୋଇଥାନ୍ତି, କିନ୍ତୁ ନାରୀମାନଙ୍କର ପ୍ରକୃତ ସଙ୍ଗମ ତୃଷା କେବଳ ଉତ୍ତର ତିରିଶରେ ହିଁ ଆରମ୍ଭ ହୋଇଥାଏ ଓ ଉତ୍ତର ଚାଳିଶରେ ହିଁ ପୂର୍ଣ୍ଣତା ପ୍ରାପ୍ତ ହୋଇଥାଏ। ପୁଣି ଏହି ସମୟ ମଧ୍ୟ ଋତୁସ୍ରାବ ବନ୍ଦ ହେବାର ସମୟ। ତେଣୁ ଏହି ସମୟରେ ନାରୀମାନଙ୍କ ମନରେ ଉଦ୍‌ବିଗ୍ନତା, ଉତ୍କଣ୍ଠା; ଭୟ ଇତ୍ୟାଦି ବହୁ ପରିମାଣରେ ବଢ଼ିଯାଏ। ଏହି ସମୟରେ ସାପ ସ୍ୱପ୍ନ ଦେଖିବା ସ୍ୱାଭାବିକ। ଆପଣ କିଛି ଚିନ୍ତା କରନ୍ତୁ ନାହିଁ। ତାଙ୍କୁ ଚାରି ପାଞ୍ଚଟା 'ସିଟିଂ' ଦରକାର ପଡ଼ିପାରେ। ମୁଁ ତାଙ୍କ ସହିତ ଏକାନ୍ତରେ କଥାବାର୍ତ୍ତା କରି ସାରିଲା ପରେ ଦେଖିବେ ସେ ଭଲ ହୋଇଯିବେ। ଗୋଟାଏ 'ସିଟିଂ' ପାଇଁ ମୋ ଫିସ୍ ଶହେଟଙ୍କା। ହଁ, ସେ ଏକୁଟିଆ ଆସିବେ। ଆପଣ ତାଙ୍କ ସହିତ ଆସିବେ ନାହିଁ। ଆଉ ଗୋଟାଏ କଥା। ତାଙ୍କ ମନ ବୁଝେଇବା ପାଇଁ ମୁଁ କିଛି 'ପ୍ଲେସେବୋ' ଟାଇପ୍‌ର ଔଷଧ ଦେଇପାରେ। ମାନେ ସେ ଔଷଧର କିଛି ଅର୍ଥ ନାହିଁ। କିନ୍ତୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେ ଔଷଧ ଖାଇବା ଦରକାର। ଆଉ ତାଙ୍କର ଏ ଚିକିତ୍ସା ଚାଲିଥିବା ଅବସ୍ଥାରେ ଆପଣ—ଟ୍ରାୟ ଟୁ କିପ୍ ହର୍ ଇନ୍ ଗୁଡ୍ ହ୍ୟୁମର୍। ବୁଝିଲେ।" ଗୋଟାଏ ଇଙ୍ଗିତଧର୍ମୀ ଚାହାଣୀରେ ସେ ସବୁକିଛି ବୁଝେଇ ଦେଲେ।

ବ୍ରିଗେଡ଼ିଆର୍ ମହାପାତ୍ର ଏ ଜଟିଳ ମନସ୍ତତ୍ତ୍ୱ ବିଷୟରେ କିଛି ବୁଝିଲେ କି ନାହିଁ ଜଣାନାହିଁ କିନ୍ତୁ ସେ ଏତକ ବୁଝିଲେ ଯେ ତାଙ୍କର ଏ ଚିକିତ୍ସା ଖର୍ଚ୍ଚ ବାବଦକୁ ଅନ୍ତତଃ ପାଞ୍ଚଶହଟି ମୁଦ୍ରା ଖର୍ଚ୍ଚ କରିବାକୁ ପଡ଼ିବ। ସେକ୍‌ସ ଇଜ୍ ନୋ ପ୍ରବ୍ଲେମ୍। ସେ ତ ପୂରା ପୂରି ଅକ୍ଷମ ହୋଇଯାଇ ନାହାନ୍ତି।

ମିସେସ୍ ମହାପାତ୍ର କିନ୍ତୁ ଭାରାକ୍ରାନ୍ତ ମନ ନେଇ ଘରକୁ ଫେରିଲେ।

ଦୁଇଟି 'ସିଟିଂ' ପରେ ମିସେସ୍ ମହାପାତ୍ର ଆଉ ଯିବାକୁ ମଙ୍ଗିଲେ ନାହିଁ। ସ୍ୱପ୍ନ ତ କିଛି କମିଲା ନାହିଁ ବରଂ ବଢ଼ିବାକୁ ଲାଗିଲା। ଆଉ ତା'ଛଡ଼ା ଡାକ୍ତରଙ୍କ ଅନେକ କିଛି ପ୍ରଶ୍ନ, ଯାହାକି ତାଙ୍କ ମନ ଭିତରେ କସ୍ମିନକାଳେ ଆସି ନ ଥିଲା। ସେମିତି ଅନେକ ନିର୍ଲଜ୍ଜତମ ତଥ୍ୟ ତାଙ୍କ ମନକୁ ଆହୁରି ଉତ୍ତେଜିତ ତଥା ବିଚଳିତ କରିଦେଇ ଗଲା।

ଲୋକଟା ଡାକ୍ତର ନୁହେଁ ତ ଲୋଛାଟାଏ। ମନସ୍ତତ୍ତ୍ୱ ନାମରେ ପର୍ନୋଗ୍ରାଫି କରୁଛି। ସେ ଯୋଉ ଯୋଉ ଗୋପନ ପ୍ରଶ୍ନ ପଚାରିଲା, ଶୁଣିଲାମାତ୍ରେ ତାଙ୍କର କାନମୁଣ୍ଡା ଲାଜରେ ଲାଲ ହୋଇଗଲା। କାନ ଭିତରଟା ଭାଁ ଭାଁ ହୋଇଗଲା।

ନିଜ ଉପରେ ବିତୃଷ୍ଣା ଆସିଗଲା। ମଣିଷ କ'ଣ ସତରେ ଏତେ କଦର୍ଯ୍ୟ? ଏତେ ବିକାରଗ୍ରସ୍ତ? ସେ ନିଜେ କ'ଣ ସେଇପରି ଏକ ବିକାରଗ୍ରସ୍ତ ମହିଳା?

ନା, ସେ ଆଉ ଯିବେ ନାହିଁ। ସେ 'ସାପ' ସ୍ୱପ୍ନ ଦେଖନ୍ତୁ ପଛକେ। ସ୍ୱାମୀଙ୍କୁ ରୋକ୍‌ଠୋକ୍ ନାହିଁ କରିଦେଲେ। "କିଛି ଲାଭ ନାହିଁ। ଭଲ ତ ହେଉନି ବରଂ ବଢୁଛି। ମିଛଟାରେ ଠକେଇ ସେ ପଇସା ନେଉଛି। ଏତେ ଟଙ୍କା ପାଣିରେ ପକାଇ ଲାଭ କ'ଣ?"

କିନ୍ତୁ କ'ଣ କରିବେ ସେ? ଏମିତି ରାତି ରାତି ଅନିଦ୍ରା ରହିବା ସମ୍ଭବପର ନୁହେଁ। ଦିନକୁ ଦିନ ତାଙ୍କର ସ୍ୱାସ୍ଥ୍ୟହାନି ଘଟୁଛି। ଆଖି ତଳେ କଳା କଳା ଦାଗ ଗହୀର ହେବାକୁ ଆରମ୍ଭ କଲାଣି। ଆଖି କୋଣରେ ରିଙ୍କୁ ପଡ଼ିବାକୁ ଆରମ୍ଭ କଲାଣି। ମୁହଁଟା ଶୁଖିଲା ଦିଶୁଛି।

ମିସେସ୍ ରେନୁ ଚକ୍ରବର୍ତ୍ତୀ ଦେଖି ତ ଚମକି ପଡ଼ିଲେ। "କ'ଣ ହୋଇଛି ମିସେସ୍ ମହାପାତ୍ର ଆପଣଙ୍କର? ଏଇ ମାସେ ଦେଢ଼ ମାସ ଭିତରେ ଏମିତି ରୋଗୀ ପରି ଦେଖା ଯାଉଛନ୍ତି କାହିଁକି? ଆପଣଙ୍କର ଦେହ କ'ଣ ଖରାପ? କ'ଣ ହୋଇଛି? ଆପଣଙ୍କ ବୟସ ଏଇ କେତେଦିନ ଭିତରେ ଦଶବର୍ଷ ବଢ଼ିଗଲା ପରି ଲାଗୁଛି।"

ମିସେସ୍ ମହାପାତ୍ର ଏଇ ଡବଡ଼ବି ପାଖରେ କିଛି ନ କହିବାକୁ ମନେ ମନେ ସିଦ୍ଧାନ୍ତ କରିଥିଲେ ସୁଦ୍ଧା ତାଙ୍କର ଚେହେରା ପ୍ରତି ଏକ ଆକ୍ଷେପୋକ୍ତି ସେ ଆଉ ସହ୍ୟ କରି ପାରିଲେ ନାହିଁ। ବାଧ୍ୟ ହୋଇ ସବୁ କଥା ତାଙ୍କୁ କହିବାକୁ ପଡ଼ିଲା। ମିସେସ୍ ଚକ୍ରବର୍ତ୍ତୀ ସବୁ କଥା ଶୁଣିସାରି କହିଲେ, "ଓଃ, ଏଇ କଥା! କିଛି ଚିନ୍ତା ନାହିଁ। ଏଇ ଡାକ୍ତର ଫାକ୍ତରଙ୍କ କଥା ସବୁ ମିଛତ। ସବୁଗୁଡ଼ାକ ଠକ। ଚାଲନ୍ତୁ ମୁଁ ଆପଣଙ୍କୁ ଆମର ଗୁରୁ ମହାରାଜାଙ୍କ ପାଖକୁ ନେଇଯିବି। ସେଇଠି ମନ୍ତ୍ର ନେବେ। ଦେଖିବେ ଦିନ ସାତଟା ଭିତରେ ସବୁ ସ୍ୱପ୍ନଫପ୍ନ ଉଭେଇ ଯିବ ତାଙ୍କ କବଚ ଧାରଣ କଲେ। ଏମିତି କେତେ ଲୋକଙ୍କର ଭଲ ହୋଇଛି ନା। ଆପଣ ଆଜି ଚାଲିଲେ।

ଏଇ 'ଗୁରୁ' ଫୁରୁ କଥାରେ ମିସେସ୍ ମହାପାତ୍ରଙ୍କ ସେଇ ପିଲାଦିନରୁ ରାଗ। ସେ ଜମା ବିଶ୍ୱାସ କରନ୍ତି ନାହିଁ ଏଥିରେ। ସେଥିପାଇଁ ମିସେସ୍ ଚକ୍ରବର୍ତ୍ତୀ, ମିସେସ୍ ମାଲବା, ମିସେସ୍ ଲକ୍ଷ୍ମୀନାଥନ ପ୍ରଭୃତିଙ୍କ ଅନେକ ପ୍ରବର୍ତ୍ତନା ସତ୍ତ୍ୱେ ବି ସେ ଆଡ଼େଇ ଯାଇଛନ୍ତି ସବୁବେଳେ। କୌଣସି ନା କୌଣସି ବାହାନା କରି ସେମାନଙ୍କ ସାଥିରେ ଯାଇ ନାହାନ୍ତି।

ଏବେ ଆଉ ଉପାୟ ନାହିଁ। ବିଶ୍ୱାସ ଥାଉ କି ନ ଥାଉ ଥରେ ଚେଷ୍ଟା କଲେ କ୍ଷତି କ'ଣ। ଯଦି ଭଲ ହୋଇଯାଏ ତ। ଏମାନେ ତ

ଏତେ ବିଶ୍ୱାସରେ କରୁଛନ୍ତି। ମଣିଷର ମନ ଥରେ ଦୁର୍ବଳ ହୋଇଗଲେ, ଥରେ ନିଜ ଉପରୁ ବିଶ୍ୱାସ ତୁଟିଗଲେ ସବୁ ପ୍ରକାରର ଆଶା ତାକୁ ଟାଣିନିଏ। ଏପାଖ ସେପାଖ କରି ଭୁଆଁ ବୁଲାଏ।

ଗୁରୁ ମହାରାଜ ଉପେନ୍ଦ୍ର ବ୍ରହ୍ମଚାରୀ। ଚିର ବ୍ରହ୍ମଚାରୀ। ଗୌରବର୍ଣ୍ଣ। ସୁନ୍ଦର ବଳିଷ୍ଠ ଶରୀର। ତେଜୋଦୀପ୍ତ ଚେହେରା। ମୁଣ୍ଡରେ ବାବୁରିବାଳ ଜଟା ଓ ମୁହଁଭର୍ତ୍ତି ନିଶ ଦାଢ଼ିର ଜଙ୍ଗଲ ସତ୍ତ୍ୱେ ସୌମ୍ୟ ମୁଖମଣ୍ଡଳ। ଆଖି ଦୁଇଟି ଭସା ଭସା, ଏକ ଅଦ୍ଭୁତ ସମ୍ମୋହନୀ ଶକ୍ତି ଦୁଇଟି ଡ଼ୋଳାରେ।

ବାନ୍ଧବୀମାନଙ୍କ ଗହଣରେ ପଦସ୍ପର୍ଶ କଲେ ମିସେସ୍ ମହାପାତ୍ର। ଗୋଟାଏ ଝୁଡ଼ି କମଳା ଓ ପଚିଶଟଙ୍କା ପ୍ରଣାମୀ ଦେଇ। ମୃଦୁ ମୃଦୁ ହସିଲେ ଗୁରୁ ମହାରାଜ। ଆଶୀର୍ବାଦ କଲେ କଲ୍ୟାଣ ହୋ। ଆୟୁଷ୍ମତୀ ଭବ।''

କିଛି ସମୟ କୁଶଳ ପ୍ରଶ୍ନ ତଥା ଅନ୍ୟାନ୍ୟ ବାକ୍ୟାଳାପ ପରେ ରେନୁ ଚକ୍ରବର୍ତ୍ତୀ କହିଲେ, ''ବାବା, ଏ ଜଣେ ମୋର ଘନିଷ୍ଠ ବାନ୍ଧବୀ କାନନବାଳା। ତା'ର ଟିକିଏ ବିପଦ ପଡ଼ିଛି। ତାକୁ ଟିକିଏ ସାହାଯ୍ୟ କରନ୍ତୁ ବାବା।''

''ଆରେ ବେଟୀ, ମୋ ପାଖକୁ ଥରେ ଯିଏ ପହଞ୍ଚି ଯାଇଛି ତା'ର ବିପଦ ଆଉ କ'ଣ ? ସବୁ ଖଣ୍ଡନ ହେଲା ବୋଲି ଜାଣ। କହ କହ।''

''ସେ ଏଇ କିଛି ଦିନ ହେଲା ରାତିରେ ଖାଲି ସାପ ସ୍ୱପ୍ନ ଦେଖୁଛି। ଭଲ କରି ଶୋଇ ପାରୁନାହିଁ। ତା'ର ଗୋଟାଏ କିଛି ବ୍ୟବସ୍ଥା କରନ୍ତୁ ବାବା।''

''ଆରେ, ସାପ ସ୍ୱପ୍ନ ତ ଅତି ଉତ୍ତମ ସ୍ୱପ୍ନ। ଏଥିରେ ଭୟ ପାଇବାର କ'ଣ ଅଛି। ସ୍ୱୟଂ ମାତା ବାସୁକୀ ସର୍ପ ତ ପୃଥିବୀକୁ ମସ୍ତକରେ ଧାରଣ କରିଛନ୍ତି। ସର୍ବଂସହା ସେ ବାସୁକୀ ମାତା। ଆରେ ସେଇଥିପାଇଁ ତ ମହାବିଷ୍ଣୁ କ୍ଷୀରାବ୍ଧି ସାଗରେ ସହସ୍ରଫଣା ଶୋଭିତ ସର୍ପର ଆଢୁଆଳରେ ଯୋଗନିଦ୍ରାରେ ନିଶ୍ଚିନ୍ତରେ ଶୟନ କରିଛନ୍ତି। ସର୍ପର କୋଳ ତ ମାତାର କୋଳ। ଆଉ ଦେଖ, ଭଗବାନ ଶଙ୍କର। ଗଳାରେ ସର୍ପମାଳା, ପୁଣି ସର୍ପକୁ ଉପବୀତ ଭାବରେ ବି ଗ୍ରହଣ କରିଛନ୍ତି। ମହାବିଷ୍ଣୁ ଓ ଶଙ୍କର ଭଗବାନ ଯେତେବେଳେ ସର୍ପକୁ ଅତି ଆପଣାର ବୋଲି ଗ୍ରହଣ କରିଛନ୍ତି ସେଥିରେ ସାପ ସ୍ୱପ୍ନରେ ଭୟ କ'ଣ ? ଆରେ ମାତେ, ତୁ ତ ଅତି ପୁଣ୍ୟବତୀ। ତୋର କୁଳକୁଣ୍ଡଳିନୀ ଜାଗ୍ରତ ହେବାର ଉତ୍ତମ ଲକ୍ଷଣ ମୁଁ ଦେଖି ପାରୁଛି। କୁଣ୍ଡଳିନୀ ତ ମାତା, ସର୍ପର ଅନ୍ୟନାମ। ଶକ୍ତି ଯେତେବେଳେ ସୁଷୁପ୍ତି ଅବସ୍ଥାରେ ଥାଏ ସେ—ଏଇ ସର୍ପ ରୂପରେ କୁଣ୍ଡଳୀ ପକେଇ ରହିଥାଏ।

ଏଇ କୁଣ୍ଡଳିନୀ ଏବେ ତୋର ଜାଗ୍ରତ ହୋଇଛନ୍ତି। ସେଥିପାଇଁ ସେ ସର୍ପ ରୂପରେ ତୋ ସ୍ୱପ୍ନରେ ଆବିର୍ଭୂତ ହେଉଛନ୍ତି। ଏ ତ ଅତି ଆନନ୍ଦର କଥା। ଏଥିରେ ଭୟ କ'ଣ ?

ତୁ ଆଉ ସାତଦିନ ଛାଡ଼ି ଆ। ସେଇ ଦିନ ମୋର ଯଜ୍ଞ। ତା'ପରେ ସେଇଦିନ ହିଁ ମୁଁ ତୋତେ ମନ୍ତ୍ରଦୀକ୍ଷା ଦେବି। ତୋର ହୋଇଯିବ ମା'। ତୋର ଆଉ ବେଶୀ ଡ଼େରି ନାହିଁ। ଅତି ପୁଣ୍ୟବତୀ ମହିଳା ତୁ।''

ଯାହା ହେଉ, କାନନବାଳାଙ୍କ ମନଟା ଅନେକ ପରିମାଣରେ ଶାନ୍ତ ହୋଇଗଲା। ସେ ଅନେକଦିନ ପରେ ସେଦିନ ବିନା ସ୍ୱପ୍ନରେ ଶୋଇ ପଡ଼ିଥିଲେ। ତା'ପରଦିନ ସକାଳୁ ଉଠି ବାବାଙ୍କ କହିବା ମୁତାବକ ସାତଦିନ ଧରି ଯୋଉ ଯୋଉ କାର୍ଯ୍ୟ କରିବା କଥା ସେଗୁଡ଼ାକ କରିବାକୁ ଲାଗିଲେ। ମନ୍ତ୍ରଦୀକ୍ଷା ପୂର୍ବରୁ ଶୁଦ୍ଧପୂତ ହୋଇ ଯିବା କଥା। ବ୍ରାହ୍ମମୁହୂର୍ତ୍ତରୁ ଉଠି ଗାଧୋଇବା, ଶହେଥର ରାମନାମ ନେଇ ଗୋଟାଏ ବାକ୍‌ସରେ ଦୈନିକ ପିଚିଶଟଙ୍କା ରଖିବା ଇତ୍ୟାଦି ଇତ୍ୟାଦି କାର୍ଯ୍ୟ ସେ ଅତି ଯତ୍ନର ସହକାରେ, ଅତି ନିଷ୍ଠା ସହକାରେ କରିବାକୁ ଲାଗିଲେ।

ସପ୍ତମଦିନ ସକାଳୁ ବାବାଙ୍କ ପାଖକୁ ଯିବାର ପୂର୍ବ ମୁହୂର୍ତ୍ତରେ ଖବରକାଗଜରେ ଆଖି ପକାଇ ମିସେସ୍ ମହାପାତ୍ର ତ ହତବାକ୍ ହୋଇ ବସି ପଡ଼ିଲେ। ଖବର କାଗଜର ପ୍ରଥମ ପୃଷ୍ଠାରେ 'ବାବା ଉପେନ୍ଦ୍ର ବ୍ରହ୍ମଚାରୀଙ୍କ' ଫଟୋ। ବଡ଼ ବଡ଼ ହରଫରେ ଲେଖା ହୋଇଛି 'ନକଲି ବାବା ଗିରଫ'। ନାରୀ ଘଟିତ ଅନେକ ବ୍ୟାପାର, ଚୋରାଚାଲାଣ, ନିଶା ବ୍ୟବସାୟରେ ବାବା ଜୁଆଡ଼େ ସଂପୃକ୍ତ।

ତାଙ୍କ ମନ ନିଜ ଉପରେ ବିତୃଷ୍ଣାରେ ଭରିଗଲା। ଏତେଦିନ ଧରି ସେ ଯାହାକୁ ଉପେକ୍ଷା କରି ଆସୁଥିଲେ ସେଇ ଜାଲରେ ସେ ନିଜେ ପୁଣି ପଡ଼ିଗଲେ କେମିତି। ସେଇ କଥା ଭାବି, ନିଜ ଉପରେ ଧିକ୍‌କାର କରି ସେ ଆହୁରି ବିଷାଦଗ୍ରସ୍ତ ହୋଇ ଉଠିଲେ। ତା' ପରଦିନଠାରୁ ସେ ଆହୁରି ଭୟଙ୍କର ସ୍ୱପ୍ନମାନ ଦେଖିବାକୁ ଆରମ୍ଭ କଲେ।

ଏହି ସମୟରେ ତାଙ୍କ ଘରେ ପହଞ୍ଚିଲେ ତାଙ୍କର ବିଧବା ପିଉସୀଶାଶୁ। ପୁଅ ସାଙ୍ଗରେ ତୀର୍ଥ କରି ଆସିଛନ୍ତି। ଏ ଦିଲ୍ଲୀରେ ଥିବା ଝିଅଜୋଇଁଙ୍କ ପାଖରେ ଓହ୍ଲାଇଛନ୍ତି। ଏଇଠୁ ବନାରସ ହୋଇ ପୁଣି ବ୍ରହ୍ମପୁର ଫେରିଯିବେ। ପ୍ରାୟ ପଞ୍ଚସ୍ତରୀ ବୟସର ବୁଢ଼ୀ। ମୁଣ୍ଡବାଳ ସବୁ ଝୋଟ ହୋଇ ଗଲାଣି। ଦାନ୍ତ ତ ଗୋଟାଏ ନାହିଁ। ମୁହଁ ସାରା ଜାଲି ଜାଲି ବଳୀରେଖା। ଦେହହାତ ଶୀର୍ଣ୍ଣ। ପୁଳାଏ ମାଉଁସ ନାହିଁ। ତଥାପି ବୁଢ଼ୀ ଟାଣ ଅଛି। ଭଲ ନ ଦିଶିଲେ ବି ଅସୁବିଧା କିଛି ହେଉନାହିଁ।

ବ୍ରିଗେଡ଼ିଅର ମହାପାତ୍ରଙ୍କ ବନ୍ଧୁବାନ୍ଧବଙ୍କ ସହିତ ସମ୍ପର୍କ ଅନେକ ଦିନରୁ କଟି ଯାଇଛି। ସେଥିପାଇଁ ତାଙ୍କର ମାମୁଁଝିଅ ଭଉଣୀ ଏଇ ଦିଲ୍ଲୀରେ ରହୁଥିଲେ ବି ସେ ଖବର ନେଇ ନାହାନ୍ତି। ସେମାନେ ମଧ୍ୟ ଆସି ନାହାନ୍ତି। କାରଣ ମିସେସ୍ ମହାପାତ୍ର ତାଙ୍କ ଶ୍ୱଶୁରଘରର ଏଇ ନିପଟିଆ ମଫସଲିମାନଙ୍କୁ ଜମା ସହ୍ୟ କରି ପାରୁ ନଥିଲେ।

କିନ୍ତୁ ବୁଢ଼ୀ ନଛୋଡ଼ବନ୍ଧ। 'ଜଟିଆ'କୁ ଟିକେ ଦେଖିବେ। ପିଲାଦିନେ ତ ସେ ମୋ କୋଳରେ ମଣିଷ ହୋଇଛି। ତା ମା'ଟା ତ ରୋଗିଣାଟାଏ। ତା'ପରେ ପୁଣି ସେ ବର୍ଷକର ହୋଇଥିଲା କି ନାହିଁ ତା ସାନଭାଇ ଜନମ ହେଲା। ମୋ କୋଳରେ ତ ସବୁ ବେଳେ ପଶିଥାଏ। ତାକୁ ଟିକେ ଦେଖି ନ ଗଲେ ଦକ ଦକ ହେବ।''

ତେଣୁ ଅନିଚ୍ଛା ସତ୍ତ୍ୱେ ବି ଜୋଇଁ ଘର ଠିକଣା ଖୋଜି ଆଣି ପହଞ୍ଚେଇ ଦେଇଗଲା।

ମିସେସ୍ ମହାପାତ୍ର ସେମାନଙ୍କୁ ଦେଖି କିଛି ଅସୁସ୍ଥତା ଯୋଗୁ ଓ କିଛି ମଫସଲିଆଣୀ ବୁଢ଼ୀର କଥାବାର୍ତ୍ତାକୁ ପସନ୍ଦ କରୁ ନ ଥିବା ହେତୁ ବିଛଣାରେ ଚାଦର ଘୋଡ଼ିହୋଇ ଶୋଇ ପଡ଼ି ରହିଲେ।

ବୁଢ଼ୀ ପହଞ୍ଚି ଆଗେ ବ୍ରିଗ୍ରେଡ଼ିଆରଙ୍କୁ ପରସ୍ତେ ଦେହଠୁ ମୁଣ୍ଡଯାଏ ଆଉଁସି ଯାଇ କହିଲା ''ଆରେ ବୁଢ଼ା ହୋଇଗଲୁଣି ନାଁରେ। ଏଡ଼ିକି ବକଟେନାକୁ ଦେଖିଥିଲି। ଏବେ ଦେଖୁଛି। ବୋହୂର କ'ଣ ହୋଇଛି କିରେ? ଦିହପା ଖରାପ ନା କ'ଣ? ଏଇ ସକାଳଟାରେ ଶୋଇଛି କାହିଁକି?''

ବ୍ରିଗେଡ଼ିଆର ବହୁଦିନ ପରେ ଜଣେ ସ୍ନେହମୟୀ ମା'ର ସ୍ପର୍ଶରେ କିଛିକ୍ଷଣ ପାଇଁ ଆତ୍ମହରା ହୋଇ ହଜି ଯାଇଥିଲେ ବହୁଦିନରୁ ଲିଭି ଲିଭି ଆସୁଥିବା ସ୍ମୃତିର ଅନ୍ଧାରି ଆଲୁଅର ସ୍ୱପ୍ନକୁ କୁହେଳି ଭିତରେ। ସେ ଚମକି ପଡ଼ି କହିଲେ, ''ତା' ଦିହ ଭଲ ରହୁନାହିଁ କେତେ ଦିନ ହେଲା। ରାତିରେ ସାପ ସ୍ୱପ୍ନ ଦେଖି ଚମକି ପଡ଼ି ଉଠି ବସୁଛି। କେତେ ଔଷଧ, ଡାକ୍ତର ଗୁଣିଆ କିଛି ହେଉ ନାହିଁ। ଦିନକୁ ଦିନ ତା' ଦେହ ଆହୁରି ଖରାପ ହୋଇ ଯାଉଛି।''

''ଆଲୋ, ଆଲୋ। କାଇଁ ଦେଖେଁ ତ।''

ତା'ପରେ ବୁଢ଼ୀ ବିଛଣା ପାଖରେ ଯାଇ ବସି ମିସେସ୍ ମହାପାତ୍ରଙ୍କ ମୁଣ୍ଡକୁ ସ୍ନେହରେ ଆଉଁଷି ଦେଉ ଦେଉ କହିଲା, ''ଦିହ କେମିତି ଲାଗୁଛି?''

ଗୋଟାଏ ଅପରିଷ୍କାର, ମଫସଲିଆଣୀ, ଶାୟା, ବ୍ଲାଉଜ୍ ପିନ୍ଧି ନ ଥିବା, ଅଧନଙ୍ଗୁଳୀ, ଜୀର୍ଣ୍ଣା, ଧେକଡ଼ି ବୁଢ଼ୀର ଶୁକୁଟା ହାତର କି ସ୍ପର୍ଶ ଥିଲା କେଜାଣି ବହୁଦିନ ପରେ ମିସେସ୍ ମହାପାତ୍ର ଅନୁଭବ କଲେ ଗୋଟାଏ ଅଦ୍ଭୁତ କୋମଳ ଆତ୍ମୀୟତାର, ଯାଦୁକରୀ ସ୍ପର୍ଶ। ସେ ହଜି ହଜି ଯାଉଥିଲେ ସ୍ମୃତିର ସୁରଭିବୋଳା କୋଉ ଗୋଟାଏ ଅଜଣା ମହକରେ। ତାଙ୍କର ସମସ୍ତ ଦୁଃଖ ବେଦନା ଯେମିତି ଲିଭି ଲିଭି ଯାଉଥିଲା ଏଇ ଅମୃତମୟୀ ସ୍ପର୍ଶରେ।

''କହିଲେ ତ ମା' ରାଗ କରିବୁ। ହେଲେ ରାଗିଲେ ରାଗ ପଛେ ନ କହି ରହି ପାରିବି ନାହିଁ। ତୁ ତ ମା ପାଠପଢୁଆ ଝିଅ। ଦିଅଁ ଦେବତା ମାନିଲୁ

ନାହିଁ। ସେଇଥିପାଇଁ ଠାକୁର କୋପ କରୁଛନ୍ତି। ସାପ ସପନ ମା' ସେଇଥିପାଇଁ ତାଙ୍କର ରୋଷ। ଆଉ ଫେରି ତାଙ୍କରି କରୁଣା ମଧ। ନହେଲେ ତୋତେ ସପନେଇ ଥାନ୍ତେ କାଇଁକି? ବୁଢ଼ୀଟିଏ ହେଲୁଣି—ସେ ଯୁବା ବୟସ କଥା ଛାଡ଼—ଏବେ ଟିକିଏ ଦିଅଁ ଦେବତା ଆଡ଼କୁ ମନ ଦେ। ଶିବଠାକୁର କରୁଣା କରି ନଥିଲେ କି ତୁ ଏମିତି ବର ଏମିତି ପୁଅ ପାଇଥାନ୍ତୁ। ତାଙ୍କରି ଶୁଭ ପାଇଁ ତ କିଛି କଲୁନାଇଁ। ଏବେ ମୋ କଥା ମାନ। ସୋମବାର ଓପାସ କର। ସକାଳୁ ଯାଇଁ କ୍ଷୀର ଗିଲାସେ ମହାଦେବଙ୍କ ଉପରେ ଢ଼ାଳ। ଏତେ ତ ଖାଇଲୁ, ପିଇଲୁ, ମଉଜ କଲୁ। ଯାହାଙ୍କ ଦୟାରେ ଏ ସବୁ ପାଇଲୁ, ତାଙ୍କ ପେଇଁ ଗୋଟିଏ ଦିନ, ଗୋଟିଏ ଓଳି ଓପାସ କରି ପାରିବୁନି। ତୁ ମୋ କଥା ମାନି ମାସଟେ ଏ କଥା କର। ଦେଖିବୁ ସବୁ ସପନ ଉଭେଇ ଯିବ। ତୋ ଦିହ ଭଲ ହୋଇଯିବ। ତୋ ସୁଆମୀର ମଙ୍ଗଳ ହେବ, ତୋ ପୁଅର ମଙ୍ଗଳ ହେବ। ଅସଲ କଥା ମା ବିଶ୍ୱଆସ। ଥରେ ବିଶ୍ୱଆସ କରି ଦେଖ।''

କେଜାଣି କାହିଁକି ସବୁଥର ପରି ସେ ଆଉ ତାର ଉତ୍ତର ହସରେ ଉଡ଼େଇ ଦେଇ ପାରି ନଥିଲେ କି ଏକ ତୀକ୍ଷ୍ଣ ବାକ୍ୟ ବାଣରେ ବୁଢ଼ୀର ମୁହଁ ବନ୍ଦ କରି ଦେଇ ପାରି ନଥିଲେ।

ଗତକାଲି ରାତିରେ ଟି.ଭି.ରେ ନିଖିଳ ଭାରତ ମହିଳା ମହାସଂଘର ଉପସଭାନେତ୍ରୀ ମିସେସ୍ କାନନବାଳା ମହାପାତ୍ରଙ୍କୁ ଦେଖାଯାଇଥିଲା। ସେ ବେଶ୍ ପ୍ରଫୁଲ୍ଲ ଓ ସ୍ୱାସ୍ଥ୍ୟବତୀ ଦେଖା ଯାଉଥିଲେ।

ଶୁଣାଯାଏ ସେ ସୋମବାର ଉପବାସ କରୁଛନ୍ତି।





# କର୍ମରେ ଅଧିକାର

ପଚିଶ ବର୍ଷ ପୂରିବାକୁ ଆଉ ଦୁଇମାସ ତିନି ଦିନ ବାକୀ ରହିଲା ।

ଅକ୍ଟୋବର ୨୦, ଉଣେଇଶ ଶହ ନବେ ମସିହା ।

ବାସ୍, ତା ପରେ ଦୁର୍ଗର ଫାଟକ ଚିରଦିନ ପାଇଁ ବନ୍ଦ ହୋଇଯିବ ତା ପାଇଁ । ସୁଶାନ୍ତ ସାହାଣୀ ସରକାରୀ, ସରକାରୀ ନିଗମ କୌଣସି ଜାଗାରେ ଆଉ ଚାକିରୀ ପାଇବ ନାହିଁ ।

ସେ ସବୁ ଚାକିରୀମାନ ଚିରଦିନ ପାଇଁ ନିଷିଦ୍ଧ ହୋଇଯିବ ତା ନିକଟରେ କଣ କରିବ ସୁଶାନ୍ତ ତା ପରେ ?

ଅଥଚ ସେଇଟା ବି ତାର ଠିକ୍ ଜନ୍ମ ଦିନର ତାରିଖ ନୁହେଁ । କିରାଣୀ ବାପା ଚାଲାକି କରି ଦୁଇ ବର୍ଷ କମ୍ କରି ଲେଖେଇଥିଲେ ସାର୍ଟିଫିକେଟ୍‌ରେ । ତଥାପି ତାର ହେଲା ନାହିଁ ।

ସବୁ ପରୀକ୍ଷା ଦେଇଛି । ସବୁ ପ୍ରତିଯୋଗୀତା ପରୀକ୍ଷାରେ ପାଶ୍ ମଧ କରିଛି । ଅଥଚ୍ କଣ ଯେ ହୋଇଯାଏ ସାକ୍ଷାତ୍‌କାର ବେଳକୁ କେଜାଣି—ସେ ଆଉ ଚାକିରୀ ପାଏ ନାହିଁ । ସବୁ ସାକ୍ଷାତ୍‌କାର ପରେ ସେ କଟିଯାଏ ।

ନିଜ ଉପରେ ଦିନେ ପ୍ରବଳ ଆତ୍ମ ବିଶ୍ୱାସ ଥିଲା ସୁଶାନ୍ତର । ଭଲ ଭାବରେ ବି.ଏ. ପାଶ୍ ମଧ କରିଥିଲା ଅନର୍ସ ଫାଷ୍ଟକ୍ଲାସ୍ ପାଇ । ମଧ୍ୟବିତ୍ତ ଘରର ଆର୍ଥିକ ଅବସ୍ଥା ସମସ୍ତଙ୍କର ଭଣା ଅଧିକେ ସମାନ । ତେଣୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସେ ଆଉ ଏମ.ଏ. ପଢ଼ି ପାରି ନଥିଲା । ଭାବିଥିଲା ଚାକିରିଟିଏ ପାଇଲେ ପଛକୁ ନ ହେଲେ ପ୍ରାଇଭେଟ୍‌ଲି ଏମ.ଏ. ଟା ଦେଇଦେବି ।

ସାମାନ୍ୟ କିରାଣୀ । ଟାଇପିଷ୍ଟ ଚାକିରୀଟିଏ କଣ ତାକୁ ମିଳିବ ନାହିଁ? ଅଥଚ ସେଇ ସାମାନ୍ୟ ଚାକିରୀ ଖଣ୍ଡକ ପାଇଁ ସେ ଗତ ପାଞ୍ଚ ଥର ନୟାନ୍ତ ହୋଇଗଲାଣି ପରୀକ୍ଷା ଦେଇ ଦେଇ, ଇଣ୍ଟରଭିଉ ଆଟେଣ୍ଡ କରି କରି ।

କଣ କରିବ ସୁଶାନ୍ତ ଅକ୍ଟୋବର କୋଡ଼ିଏ ତାରିଖ ପରେ ?

କଟକ ମାଲଗୋଦାମର କେଉଁ ମାରୱାଡ଼ି ଫାର୍ମରେ ଗୁମାସ୍ତା ଗିରି । ? କୋଉ ପ୍ରାଇଭେଟ୍ ହାଇସ୍କୁଲର ଅଧା ଦରମାର ମାଷ୍ଟର ଗିରି ? ସେ ସବୁ ମିଳିବା କଷ୍ଟକର ହୋଇ ଗଲାଣି ?

କଣ କରିବ ସେ ? ଜୋତା ପାଲିସ୍ ? ପାନ ଦୋକାନ ? ନା, ଏ ସବୁ ଆଦର୍ଶବାଦୀର ପାର୍ଥିବ ସ୍ୱପ୍ନ ସବୁ ? କେତେ ଜଣ ଶିକ୍ଷିତ ବାଲା ଜୋତା ପାଲିସ କରୁଛନ୍ତି ନା ପାନ ଦୋକାନ କରିଛନ୍ତି ?

ଏଇ ପଚିଶବର୍ଷର ସରକାରୀ ସୀମାରେଖାର କଥାଟା ବି ସେ ବୁଝିପାରେ ନାହିଁ ?

କାହିଁକି ଜଣେ ପଚିଶବର୍ଷର ସୀମାରେଖା ଅତିକ୍ରମ କରିଗଲା ପରେ ସେ ସବୁ ଚାକିରୀ ପାଇଁ ଅଯୋଗ୍ୟ ହୋଇଯାଏ ?

ହୁଏତ ଏଇ ସୀମାରେଖା ସୈନ୍ୟବାହିନୀ ପାଇଁ କି ପୋଲିସ୍ ଚାକିରୀ କିମ୍ବା ଅନ୍ୟାନ୍ୟ ଶ୍ରମ ବହୁଳ ଚାକିରୀ ପାଇଁ ପ୍ରଯୁଜ୍ୟ ହେବାର କାରଣ ଥାଇପାରେ। ସେଥିରେ ଲୋଡ଼ା ହୁଏ ବୟସ—ସ୍ୱାସ୍ଥ୍ୟ। କମ ବୟସରେ ରିଫ୍ଲେକ୍‌ସ ଭଲ। ଚକ୍ଷୁ, କର୍ଣ୍ଣ ଇତ୍ୟାଦି ସମସ୍ତ ଇନ୍ଦ୍ରିୟ ସେତେବେଳେ ଉରପୁର—ଉନ୍ମୁଖ। ହୁଏତ ଟ୍ରେନିଂ ଗ୍ରହଣ କରିବାର ବୟସ ମଧ୍ୟ ସେଇଟା।

କିନ୍ତୁ କଲମପେଷା, ଚଉକି ଉପରେ ସାରା ଜୀବନ କଟେଇ ଦେଇଥିବା କିରାଣୀ ଚାକିରୀ ପାଇଁ ଏ ବୟସରେ ରେଖା କାହିଁକି ? ସତରେ କଣ ଜଣେ ମଣିଷ ପଚିଶ ବର୍ଷର ସୀମାରେଖା ଅତିକ୍ରମ କରିଗଲା ପରେ ଚଉକିରେ ବସିବାର, ଲେଖିବାର କ୍ଷମତା ହରାଇ ବସାଏ ? ଓ ଯଦି ବସାଏ, ତେବେ ପଚିଶ ବର୍ଷ ପରେ ତା ଚାକିରୀରେ ବି ରହିବାର ଆବଶ୍ୟକତା ନାହିଁ।

କିନ୍ତୁ କାହାକୁ ସେ କହିବ ଏ କଥା ? କାହାକୁ ବୁଝେଇବ ସେ ?

ସରକାର ଗୋଟାଏ ପରମ୍ପରାନୁବର୍ତ୍ତୀର ଏକ ମେକାନିକେଲ ଯାନ୍ତ୍ରିକ ମେସିନ୍ ମାତ୍ର। ସେଥିରେ ବୁଦ୍ଧି ବିଚାରର ବୋଧହୁଏ ପ୍ରୟୋଜନ ପଡ଼େ ନାହିଁ। ନ ହେଲେ ଚାକିରୀ ପାଇଁ ଅଠରରୁ ପଚିଶ ବର୍ଷ—କିଏ ଏମିତି ଏକ ଆର୍ବିଟ୍ରେରୀ ନିୟମ ବାନ୍ଧି ଦେଇଥାନ୍ତା ?

ଆଜି କୁ ଶହେ କି ଦୁଇ ଶହ ବର୍ଷ ତଳେ ଇଂରେଜମାନେ ଯେତେବେଳେ ଏ ନିୟମ ପ୍ରଣୟନ କରିଥିଲେ ସେତେବେଳେ ପୁଅମାନେ ଅଠର ବର୍ଷ ଆଗରୁ ହିଁ ବିବାହ କରୁଥିଲେ। ସେଇ ବୟସରୁ ହିଁ ତାକୁ କୁଟୁମ୍ବ ପ୍ରତିପାଳନ କରିବାକୁ ପଡୁଥିଲା। ଆଜିକାଲି ଅଠରବର୍ଷ ବୟସରେ କେତେ ଜଣ ଚାକିରୀ ପାଉଛନ୍ତି ଯେ ? ଅଥଚ ସେଇ ଅଠର ବର୍ଷର ଲକ୍ଷ୍ମଣଗାର ସେମିତି ବନ୍ଧା ହୋଇ ରହିଯାଇଛି ଏକ ପ୍ରାଚୀନ ଅନ୍ଧ ପରମ୍ପରା ପରି।

ଆଜିକାଲି ତ ଝିଅର ମିନିମମ୍ ବିବାହଯୋଗ୍ୟ ବୟସ ଆଇନାନୁସାରେ ଅଠର ବର୍ଷ ଅଥଚ ପୁଅମାନେ ଚାକିରୀ କରିବେ ଅଠର ବର୍ଷରୁ। ଅଦ୍ଭୁତ ଅଦ୍ଭୁତ।

ସରାକାରଙ୍କ ବାଁ ହାତ ଜାଣୁ ନାହିଁ ଡାହାଣ ହାତ କଣ କରୁଛି। ପୁଅର ବିବାହଯୋଗ୍ୟ ବୟସ ଏକୋଇଶି। ଚାକିରୀ କାଳର ସର୍ବୋଚ୍ଚ ବୟସ ସୀମା କିନ୍ତୁ ସେହିପରି ରହିଯାଇଛି ପଚିଶ।

କିନ୍ତୁ ଏପରି ଏକ ଅନ୍ୟାୟ ଆଦେଶକୁ ବଦଳେଇବ କିଏ ? କାହା ପାଖରେ ଗୁହାରି କରିବ ସୁଶାନ୍ତ ?

ସୁଶାନ୍ତର ମନ ବିଦ୍ରୋହ ହୋଇ ଉଠେ। ଏଇ ସବୁ ଅଯଥା ଓ ଅନ୍ୟାୟ ମୂଳକ ଯେତେ ସବୁ ସରକାରୀ ନିୟମାବଳୀକୁ ଜାଳିପୋଡ଼ି ଧ୍ୱଂସ କରିଦେବାକୁ

ତ ମନପ୍ରାଣ ଇସ୍‌ପିସ୍ କରି ଉଠେ। ତାର ଯଦି କ୍ଷମତା ଥାଆନ୍ତା ! ତାର ଯଦି ଶକ୍ତି ଥାଆନ୍ତା। ସେ ନିଷଫଳ ଆକ୍ରୋଶରେ ନିଜକୁ ହିଁ କଷ୍ଟ ଦିଏ। ବାଳ ଆମୁଡ଼େ। ନିଜ ଗାଲରେ ଚଟକଣା ମାରି ହୁଏ।

ନାଃ, ପଚିଶବର୍ଷର ସୀମାରେଖା ମୃତ୍ୟୁପରି ଅବଶ୍ୟମ୍ଭାବୀ, ଅବଧାରିତ ଓ ଏକ ନିଷ୍ଠୁର ସତ୍ୟ। ତାକୁ ସେ ଲଙ୍ଘନ କରି ପାରିବ ନାହିଁ—

ଆଚ୍ଛା, ଆଇ.ଏ.ଏସ୍. ଚାକିରୀ ପାଇଁ ବୟସ ସୀମା ତିରିଶ ହୋଇପାରେ। ଡାକ୍ତର, ଇଞ୍ଜିନିୟର, ଅନ୍ୟାନ୍ୟ ଅଫିସରଙ୍କ ପାଇଁ ଅଠେଇଶ ହୋଇପାରେ ଅଥଚ ସବୁଠାରୁ ନିକୃଷ୍ଟତମ ଚାକିରୀଟି ପାଇଁ ପଚିଶବର୍ଷର ସୀମାରେଖା କାହିଁକି ?

ଏଇ ସବୁ ଚାକିରୀ ପାଇଁ ବେଶୀ ଲୋକ ମିଳନ୍ତି ବୋଲି ?

ପିଲାଦିନୁ ଏଇ ଚାକିରୀରେ ପଶିଲେ ଭବିଷ୍ୟତରେ ନିର୍ବୋଧ ହୋଇଯିବେ ଓ ସରକାରଙ୍କ ବିରୁଦ୍ଧରେ କିଛି ପ୍ରତିବାଦ କରିବେ ନାହିଁ ବୋଲି ? କ'ଣ ତାର ଅର୍ଥ ? କଣ ତାର ବେସିସ୍ ? କୋଉ ମୂଳ ଭିତ୍ତି ଉପରେ ଏଇ ସମୟର ସୀମାରେଖା ? ଶାରୀରୀକ, ମାନସିକ ନା ଆଉ କିଛି ? ନା. କେବଳ ସୁବିଧାବାଦ ? ନା କେବଳ କୌଣସି ଏକ ବ୍ୟକ୍ତିର ଇଚ୍ଛା ମୁତାବକ ଗୋଟାଏ ଆଇନ।

ବୋଧହୁଏ ଆଜିକୁ ଶହେବର୍ଷ ତଳେ ଯେତେବେଳେ ଜଣେ ସାଧାରଣ ଭାରତବାସୀର ହାରାହାରି ଆୟୁଷ ଥିଲା ମାତ୍ର ସତେଇଶି ବର୍ଷ ସେତେବେଳେ ଏଇ ନିୟମ ପ୍ରଣୀତ ହୋଇଥିଲା କିନ୍ତୁ ଆଜିକାଲି ଯୁଗରେ ଯେତେବେଳେ ସେହି ଆୟୁଷ ଏବେ ଷାଠିଏ ପାଖାପାଖି ପହଞ୍ଚିଲାଣି ସେତେବେଳେ ଏଇ ପୁରାତନ ନିୟମର ଆବଶ୍ୟକତା କଣ ?

ଜଣେ ଜଜ୍ ପଞ୍ଚଷଠି ବର୍ଷ ପର୍ଯ୍ୟନ୍ତ ଚାକିରୀରେ ରହିପାରେ ଜଣେ ପ୍ରଫେସର୍ ଷାଠିଏ ବର୍ଷ ରହିପାରେ ଅଥଚ ଜଣେ କିରାଣୀ ପଚିଶ ବର୍ଷ ପାର ହୋଇଗଲେ ତାର ଚାକିରୀର ଯୋଗ୍ୟତା ହରେଇ ବସେ ଏ କେଉଁ କଳା ନିୟମ ?

ଷାଠିଏ ବର୍ଷରେ ତ ସେନିଲିଟି ଆସିଯିବା କଥା। ସେତେବେଳେ ସେମାନେ କି ନ୍ୟାୟ ଦେବେ ? କେଉଁ ନୂଆ ବିଷୟର ପାଠ ପଢ଼େଇବେ ?

ଯଦି ସ୍ୱୀକାର କରାଯାଏ ଯେ ପରିଣତ ବୟସରେ ବୁଦ୍ଧିର ପ୍ରତାରଣା ବଢ଼େ। ବିଚାର ଶକ୍ତି ଆହୁରି ବୃଦ୍ଧି ପ୍ରାପ୍ତ ହୁଏ—ତେବେ ପଚିଶ ବର୍ଷ ପରେ ଜଣେ ସାଧାରଣ କିରାଣୀ ଯେ କି ସୁବିଧା ପାଇଥିଲେ ଜଜ୍ କିମ୍ୱା ପ୍ରଫେସର ହୋଇ ପାରିଥାନ୍ତା। ତାର ଚାକିରର ଯୋଗ୍ୟତା ହରାଇ ବସେ କାହିଁକି ? ତା ଚାକିରୀ ଜଜ୍, ପ୍ରଫେସରଠୁ ଆହୁରି ବେଶୀ ବିଚାର ବୁଦ୍ଧି ଆଶା କରେ ?

ଜଣେ ନେତାର ବୟସ ସୀମା କିଛି ନାହିଁ। ସେ ଅଶୀବର୍ଷରେ ମଧ ଦେଶ ଚଳେଇବାର କ୍ଷମତା ରଖେ—ଅଥଚ ଫାଇଲରେ ନୋଟ୍ ଲେଖୁଥିବା କିରାଣୀଟିଏ ପଚିଶ ବର୍ଷ ପରେ କ୍ଷମତା ହରେଇ ଦିଏ ବୋଲି କିଏ ଠିକ୍ କରିଛି।

ସୁଶାନ୍ତ ପାଗଳ ହୋଇଯାଏ ଭାବି ଭାବି। କେତେ ଅନ୍ୟାୟ ଏ ଦେଶରେ ? ଗଣତନ୍ତ୍ରର ଦେଶରେ ସମସ୍ତଙ୍କର ସମାନ ସୁବିଧା କେବଳ ପୋଥିପତ୍ରରେ କାର୍ଯ୍ୟକ୍ଷେତ୍ରରେ ନୁହେଁ।

ଶାରୀରିକ ଓ ମାନସିକ ଦୃଷ୍ଟିକୋଣରୁ ବୟସର ନିମ୍ନରେଖା ବାନ୍ଧିଦେବ ହୁଏତ ଯଥାର୍ଥ କିନ୍ତୁ ତାର ଉର୍ଦ୍ଧ୍ୱରେଖା ଛବିଶ ବର୍ଷର ପ୍ରଥମ ଦିନରେ ସୀମୀତ କରିବାର ଯଥାର୍ଥ କାରଣ କ'ଣ। ସେଇଟାତ ଚାଳିଶ ବର୍ଷ ହୋଇ ପାରନ୍ତା। କାରଣ ଚାଳିଶ ବର୍ଷ ହିଁ ମଣିଷର ଶାରୀରିକ ଓ ମାନସିକ କାରଣ ଦୃଷ୍ଟିରୁ ଏକ ବଳିଷ୍ଠ ପ୍ରାକୃତିକ ସୀମାରେଖା। ତାର ଏକ ବୈଜ୍ଞାନିକ କାରଣ ମଧ୍ୟ ରହିଛି। ଅଥଚ—

ଆଚ୍ଛା ସେ ଆଜି ଏତେ ଭାବୁଛି ଚାକିରୀଟିଏ ପାଇଲା ନାହିଁ ବୋଲି ତ ? ଯଦି ସେ ଚାକିରିଟିଏ ପାଇ ଯାଇଥାନ୍ତା, ଏତେ ବେଳକୁ ଆରାମରେ ସେ କୌଣସି ଗୋଟିଏ ଅଫିସର ଚେଆର ଉପରେ ବସି ପଙ୍ଖା ପବନରେ ଢୁଳଉଥାନ୍ତା। ସେ କଣ ଭାବିଥାନ୍ତା କେବେ ତା ପରି ଏମିତି ଅନେକ ଅନେକ ହତଭାଗ୍ୟ—ମାନବର କଥା ଯୋଉମାନଙ୍କର ଏକମାତ୍ର ଦୋଷ ହେଉଛି 'ବୟସ' ? ମଣିଷ କେବେ ଅନ୍ୟମାନଙ୍କର ଦୁର୍ଦ୍ଦଶାର କଥା ବୋଧହୁଏ ଚିନ୍ତା କରେ ନାହିଁ। ସମସ୍ତେ ନିଜ ପାଇଁ ବ୍ୟସ୍ତ। ନିଜର ଛୋଟ ଛୋଟ ସୁଖ ଦୁଃଖ ନେଇ ଏତେ ବ୍ୟସ୍ତ ଯେ ଅପରର କଥା ଭାବିବା ପାଇଁ ସମୟ କାହିଁ।?

ଅନ୍ୟମାନଙ୍କ ପରି ସୁଶାନ୍ତ ମଧ୍ୟ ନିଜେ ଜଣେ ସ୍ୱାର୍ଥପର ବ୍ୟକ୍ତି। ସେ ମଧ୍ୟ କେବେ ଭାବି ନଥାନ୍ତା। ଆଉ ସେଥିପାଇଁ ଏ କଳା ଆଇନ ବର୍ଷ ବର୍ଷ ଧରି ଗଡ଼ି ଆସୁଥିଲେ ମଧ୍ୟ ତା ବିରୁଦ୍ଧରେ କେହି ପ୍ରତିବାଦ କରିନାହାନ୍ତି ଆଜିଯାଏ।

ହତଭାଗ୍ୟମାନେ ଦୁର୍ବଳ। ସେମାନେ ବି ପ୍ରତିବାଦ କରି ପାରନ୍ତି ନାହିଁ। ସେମାନଙ୍କର ସାହାସ ମଜିଯାଏ ବଞ୍ଚିବାର ଅନ୍ୟ ଏକ ପାଥେୟ ଆହରଣ କରିବାର ପ୍ରତିନିୟତର ସଂଗ୍ରାମ ଭିତରେ।

କେମିତି ଉପାୟରେ ପ୍ରତିବାଦ ସୁଶାନ୍ତ। ସେ ଏକୁଟିଆ ଏ କାମ କରିପାରିବ ନାହିଁ। ସେ ନେତା ହୋଇ ପାରିବ ନାହିଁ। ଆଉ ଚାରି ପାଞ୍ଚ ଜଣକୁ ସାଙ୍ଗରେ ମିଶାଇ ପାରିବ ନାହିଁ। କିଏ ତାକୁ ବିଶ୍ୱାସ କରିବ ଯେ ? ତା ଛଡ଼ା ମିଛଟାରେ ଧରା ପଡ଼ିବାରେ ଲାଭ କଣ ? ବରଂ ଯାହା ଯେଉଁଠି ମିଳିବାର ଥିବ ତା ମଧ୍ୟ ମିଳିବ ନାହିଁ।

ସେ କଣ କୌଣସି ରାଜନୈତିକ ଦଳରେ ଯୋଗ ଦେବ ? କିନ୍ତୁ ତା ପରି ଭଦ୍ର, ଶାନ୍ତ, ମିଇଁ ମିଇଁଆ ପିଲାକୁ କିଏ ଦଳରେ ପୁରେଇବ ଯେ ? ଆଜିକାଲି କୌଣସି ଦଳର କର୍ମୀ ହେବା ପାଇଁ ଅସଲ ଯୋଗ୍ୟତା—ଗୋଟାଏ ଅସଭ୍ୟ ଜିଭ, ଉଚ୍ଚ କଣ୍ଠସ୍ୱର, କଠିନ ପେଶୀ ଓ ନିର୍ଲଜ ବ୍ୟବହାର।

ନା, ସୁଶାନ୍ତ ଦେଇ ତା ହେବ ନାହିଁ। ତେବେ? ଯଦି ସେ କୌଣସି ମତେ ଗୋଟାଏ 'ଖବର'ରେ ରୂପାନ୍ତରିତ ହୋଇ ଯାଇ ପାରନ୍ତା ତେବେ ବୋଧହୁଏ ଠିକ୍ ହୋଇ ପାରନ୍ତା। କିନ୍ତୁ ତା ପରି ଜଣେ ସରଳ ନିଷ୍କପଟ ସାଧାରଣ ଯୁବକ ଭିତରେ 'ଖବର'ର ଚାଞ୍ଚଲ୍ୟକାରୀ ଉପାଦାନ ବା ନାହିଁ?

ଭାରତବାସୀର ଦୁର୍ଭାଗ୍ୟ ତ ଏଇଠି।

ଏ ଦେଶର କୋଟି କୋଟି କ୍ଷେତ ଶ୍ରମିକ, ଦିନ ମଜୁରିଆ ଦିନ ସାରାର ଅକ୍ଳାନ୍ତ ପରିଶ୍ରମର ମୂଲ୍ୟ ସ୍ୱରୂପ କେତେଟା ଟଙ୍କା ଅର୍ଜନ କରି ଅର୍ଦ୍ଧ ଅନାହାରରେ ରହି ଜୀବନ ଯାପନ କରନ୍ତି—ଅଥଚ ସେମାନଙ୍କୁ ଦେଖି ଆମର ମନ ଭାରାକ୍ରାନ୍ତ ହୁଏ ନାହିଁ—ସେମାନଙ୍କର ଏଇ ଅର୍ଦ୍ଧାଶନ, ଅର୍ଦ୍ଧ ଉଲଗ୍ନ ବେଶ 'ଖବର' ତିଆରି କରେ ନାହିଁ କିନ୍ତୁ ଗୋଟାଏ 'ହତ୍ୟା' ନା 'ଚୋରି'ର କାହାଣୀ ଖବରକାଗଜରେ ବଡ଼ ବଡ଼ ଦରପରେ 'ଖବର' ହୋଇଥାଏ। ଅଗଣିତ ପଲ୍ଲୀରେ ଯେଉଁ ସବୁ ଲକ୍ଷ ଲକ୍ଷ ଗ୍ରାମ୍ୟବଧୂ ଶାଶୁ ନଣନ୍ଦର ଅନବରତ ଖୁଣ୍ଟା ଓ ଗଞ୍ଜଣା ସହି ନିର୍ବିବାଦରେ ସାରା ଜୀବନ କଟେଇ ଦିଅନ୍ତି—ସେମାନଙ୍କର ଖବରଯୋଗ୍ୟ ନୁହେଁ ଅଥଚ କୌଣସି ଏକ ମଧ୍ୟବିତ୍ତ ପରିବାରର ଶିକ୍ଷିତା ନବବଧୂଟିଏ ଶାଶୁର ସାମାନ୍ୟତମ ଗାଳି ସହ୍ୟ ନ କରି ଯେତେବେଳେ ପ୍ରତିବାଦ କରି ବାହାରି ଆସେ ସେତେବେଳେ ସେଇଟା 'ଖବର' ହୋଇଯାଏ।

ଅଭାବ ଅସୁବିଧା ନେଇ ଯେଉଁମାନେ ନିର୍ବିବାଦରେ ସବୁ ସହ୍ୟ କରି ବଞ୍ଚନ୍ତି—ସେମାନେ ଖବର ତିଆରି କରନ୍ତି ନାହିଁ। ଅଭାବ ସେମାନଙ୍କର ଦେହସୁହା। ଅତଏବ ତାହା ପ୍ରକାଶ ଯୋଗ୍ୟ ନୁହେଁ।

ସବୁ ଦୁଃଖ କଷ୍ଟକୁ ମୁଣ୍ଡପୋତି ସହ୍ୟ କରି, ନିର୍ଲିପ୍ତ ଭାବରେ, ପ୍ରତିବାଦହୀନ ମୂକ ଭାବରେ ଯିଏ ସାରଜୀବନ ଏକ ଆଶହୀନ ତପସ୍ୟାରେ ବଞ୍ଚେ—ତାର ସ୍ଥାନ ଖବର କାଗଜ ପୃଷ୍ଠା ମଣ୍ଡନ କରେ ନାହିଁ।

ପ୍ରତିବାଦ ହିଁ ଖବର। ପ୍ରତିଶୋଧ ହିଁ ଖବର।

ଅତଏବ ସେ ଠିକ୍ କରିନେଲା ତାକୁ ପ୍ରତିବାଦ କରିବାକୁ ହେବ। ଯେମିତି ହେଉ।

ବହୁ ଚିନ୍ତା ପରେ ସେ ଏକ ଅଭିନବ ପ୍ରତିବାଦର ଉପାୟ ଠିକ୍ କରି ନେଲା।

ସେ ଦିନ ଥାଏ ମୁଖ୍ୟମନ୍ତ୍ରୀଙ୍କ ଦରବାରର ଦିନ। ସେହି ନିର୍ଦ୍ଦିଷ୍ଟ ଦିନ ସେ ସମସ୍ତଙ୍କର ଅଭାବ ଅଭିଯୋଗ ଶୁଣନ୍ତି। ସେ ସ୍ଥିର କଲା ସେଇ ଦିନ ସେ ପ୍ରତିବାଦ କରିବ ଗଣତନ୍ତ୍ର ଦେଶର ମୁଖ୍ୟ ପୁରୋଧାଙ୍କ ନିକଟରେ।

ସକାଳ ନଅଟା ବେଳକୁ ଦର୍ଶନ ଆରମ୍ଭ। ସେ ସାଢ଼େ ଆଠଟା ବେଳକୁ ଯାଇ ଦେଖେ ତ ଶହ ଶହ ଲୋକର ଭିଡ଼ ଜମିଛି। ଏଇ ଭିଡ଼ ଭିତରେ ସେ

କେତେବେଳେ ଓ କେତେ ମୁହୂର୍ତ୍ତ ପାଇବ ତାଙ୍କ ପାଖରେ କଥା କହିବାକୁ ହୁଏ ତ ଗୋଟାଏ ମିନିଟ୍ ବି ନୁହେଁ। ଗୋଟାଏ ମିନିଟ୍‌ରେ କଣ ସବୁ କଥା ସେ କହିପାରିବ? ନା, ଆଜି ଆଉ ହେବନି। ସେ ଫେରିଯିବ। ପୁଣି ଆର ସପ୍ତାହକୁ ଚେଷ୍ଟା କରିବ। କିନ୍ତୁ ଏ ଭିଡ଼ କଣ କେବେ ହେଲେ କମିବ? ଆରଥରକୁ ହୁଏତ ଆହୁରି ବେଶୀ ଭିଡ଼ ହୋଇ ଯାଇପାରେ। ତା ଛଡ଼ା ଆଜି ସେ ପ୍ରସ୍ତୁତ ହୋଇ ଆସିଛି। କେତେ କଷ୍ଟରେ ମନକୁ ସ୍ଥିର କରି, ମାନସିକ ଭାବରେ ପ୍ରସ୍ତୁତ ହୋଇ ଆସିଛି। ଆଜି ଯଦି ସେ କହିପାରେ ବୋଧହୁଏ ଆଉ ଜୀବନରେ ସେ କେବେ କହିପାରିବ ନାହିଁ। ସେ ସ୍ଥିର ହୋଇ ଗୋଟାଏ ଜାଗାରେ ବସିଲା। ନିଜ ନାମ ଧାମ ଠିକଣା ଦରଦ କରି।

ନଅଟା ବେଳକୁ ସାକ୍ଷାତ୍‌କାର ଆରମ୍ଭ ହୋଇଗଲା। ଯେତେ ଯେତେ ଲୋକ ବାହାରକୁ ବାହାରି ଯାଉଥାନ୍ତି ତାଠାରୁ ଦୁଇଗୁଣ ଲୋକେ ପଶି ଆସୁଥାନ୍ତି। ଯିଏ ଥରେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚି ଯାଇଛି ତାର ଯେମିତି କଥା ସରିବାକୁ ଚାହେଁ ନାହିଁ।

ଦଶଟା ବାଜିଲା। ଏକ ଚତୁର୍ଥାଂଶ ବି ଗୁହାରି ସରିଲା ନାହିଁ। ଏଗାରଟା। ଲୋକ ସଂଖ୍ୟା ଯେତିକିକୁ ସେତିକି।

ନା, ସେ ଆଉ ଧୈର୍ଯ୍ୟ ଧରି ପାରିବ ନାହିଁ। ଏକ ଅଦ୍ଭୁତ ଧରଣର ଅବସାଦ ତାକୁ ଗ୍ରାସ କରି ଆସୁଛି। ଏକ ଭୀରୁ ପଳାୟନପନ୍ଥୀ ମନୋଭାବ ତାକୁ ଧୀରେ ଧୀରେ ଦୁର୍ବଳ କରି ଦେଉଛି। ମନେ ହେଉଛି କଣ ଦରକାର ଏସବୁ କହି? ଏମିତି କଣ ତାକୁ ଆଉ ପ୍ରାଇଭେଟ୍ ଚାକିରୀଟିଏ ମିଳିବ ନାହିଁ।? କୌଣସି ମତେ ଗୁଜୁରାଣ ମଣ୍ଡେଇ ଦୁଃଖେ ସୁଖେ ବଞ୍ଚିଯିବା କଣ ଭଲ ନୁହେଁ? ଜୀବନ ତ ବଞ୍ଚିବା ପାଇଁ। ଭିକାରୀଟିଏ ବି ବଞ୍ଚୁଛି। କୋଷ୍ଟୀଟିଏ ବଞ୍ଚୁଛି। ତାର କଣ ହୋଇଛି ଯେ?

ସାମାନ୍ୟ ସରକାରୀ ଚାକିରୀଟିଏ ନ ପାଇଲା ବୋଲି—ଘରେ ବାପା ମା ଅଛନ୍ତି। ଭାଇ ଭଉଣୀ ଅଛନ୍ତି। ବନ୍ଧୁବାନ୍ଧବ ପରିଜନ। ଏଇ ପୃଥିବୀ ରହିଛି । କେତେ ସୁନ୍ଦର ପୃଥିବୀ। ଏତେ ବଡ଼ ସୁନ୍ଦର ପୃଥିବୀରେ ତା ପାଇଁ କଣ ଜାଗାଟିଏ ମିଳିବ ନାହିଁ—ବଞ୍ଚି ରହିବା ପାଇଁ ଆଧାର ମିଳିବ ନାହିଁ? ମଣିଷ ଛଡ଼ା କେତେ ଲକ୍ଷ କୋଟି ପଶୁ ପକ୍ଷୀ, କିଟ ପତଙ୍ଗ ଏ ସମଗ୍ର ଜଗତରେ ବ୍ୟାପ୍ତ ହୋଇ ରହିଛନ୍ତି। ସେମାନେ ତ ଫେର ବଞ୍ଚୁଛନ୍ତି। ଆଉ ସେ ମଣିଷ ହୋଇ ବଞ୍ଚି ପାରିବ ନାହିଁ। ଛାଡ଼ ହୋ—କଣ ମିଳିବ ଏ ପ୍ରତିବାଦରୁ। ବରଂ କୋଉ ପ୍ରାଇଭେଟ୍ ଫାର୍ମରେ ଯାଇ ଧାରଣା ଦେଲେ ହୁଏତ ଚାକିରୀ ଖଣ୍ଡେ ମିଳିଯାଇପାରେ।

ସୁଶାନ୍ତ ବୁଡ଼ି ଯାଉ ଯାଉ ଉଠିପଡ଼ିଲା। ଛି ଛି ସେ ଦୁର୍ବଳ ହୋଇଯାଉଛି। ଦୁର୍ବଳ ବ୍ୟକ୍ତି ପ୍ରତିବାଦ କରିପାରେ ନାହିଁ।

ଦୁର୍ବଳ ବ୍ୟକ୍ତି ଆତ୍ମତ୍ୟାଗ କରିପାରେ ନାହିଁ। ପ୍ରତିବାଦ ମାନେ ତ ସ୍ୱାର୍ଥତ୍ୟାଗ।

ସେ ଜୋର କରି ଉଠି ପଡ଼ିଲା ! ହଲ୍‌ଘର କଣକୁ ରହିଥିବା ଗୋଟାଏ କଳ ପାଖରେ ଛିଡ଼ା ହୋଇ ପକେଟ୍‌ରୁ ଗୋଟାଏ ପୁଡ଼ିଆ କାଢ଼ିଲା। ଚଟ୍ କରି ପାଟିରେ ପକେଇ ଦେଇ ଢକ୍ ଢକ୍ କରି ପାଣି ପିଇଗଲା। ତାପରେ ମୁହୂର୍ତ୍ତେ ସ୍ଥିର ହୋଇ ଛିଡ଼ା ହୋଇ ଚିତ୍କାର କରି କରି ଧାଇଁଲା ମୁଖ୍ୟମନ୍ତ୍ରୀଙ୍କ ବସିଥିବା ଚେଆର୍ ଆଡ଼କୁ।

ଏଇ ଗଣତନ୍ତ୍ର ଦେଶର ମାନ୍ୟବର ମୁଖ୍ୟମନ୍ତ୍ରୀ। ଆପଣଙ୍କର ସରକାର ମୋ ଜୀବନର ଏଇ ମଧ୍ୟାହ୍ନରେ ମୋତେ ମୃତ ଘୋଷଣା କରିଦେଇଛି। ମୋର ଯୌବନର ଦ୍ୱିପ୍ରହର ବେଳାରେ ମୋତେ 'ଚାକିରୀ' ପାଇଁ ଅଯୋଗ୍ୟ- ଘୋଷିତ କରି ଦେଇଛି। ପଚିଶ ବର୍ଷ ବୟସରେ ମୁଁ ଅଲୋଡ଼ା, ବେଦରକାରୀ। ଅଯୋଗ୍ୟ। ଅତଏବ—ଅତଏବ— — —''

ଏତକ କହୁଁ କହୁଁ ସେ ଚେଆର ପାଖରେ ପହଞ୍ଚ୍ ଯାଇଥିଲା। ମନ୍ତ୍ରୀମାନେ ଚାରିଆଡୁ ଖେଦି ଆସିଲେ ତାକୁ ଧରିବା ପାଇଁ। କାଳେ ସେ ସନ୍ତ୍ରାସବାଦୀ କି ନକ୍ସାଲବାଦୀ ହୋଇଥିବ ପରା ମନ୍ତ୍ରୀଙ୍କୁ ଆକ୍ରମଣ କରିବାକୁ ଆସିଛି। କିନ୍ତୁ ସେମାନଙ୍କ ଧରିବା ଆଗରୁ ସେ ତଳେ କଚାଡ଼ି ହୋଇ ପଡ଼ିଥିଲା।

ଡାକ୍ତର ପରୀକ୍ଷା କରି କହିଲେ 'ମୃତ'। କାରଣ—ପଟାସିଆମ୍ ସାଇନାଇଡ୍।

ତାର ଡାହାଣ ହାତ ମୁଠାରେ ଜାବ ପଡ଼ିଥିବା ଦୁଇଟା କାଗଜକୁ ପୋଲିସ୍ ଆତ୍ମହତ୍ୟାର କାରଣ ଲେଖା ଚିଠି ବା ସୁଇସାଇଡ୍ ନୋଟ୍ ବୋଲି ଉଦ୍ଧାର କରିଥିଲା। କିନ୍ତୁ ଦେଖାଗଲା ତାହା ଭାରତୀୟ ସମ୍ବିଧାନର କେଇଟି ଚିହ୍ନ ପୃଷ୍ଠା ମାତ୍ର। ସେଥିରେ ଗୋଟାଏ କଣରେ ତା ହାତ ଲେଖାରେ ତିନୋଟି ଶବ୍ଦ ଥିଲା। RIGHT TO WORK.

-0-

# ଅଠର ବର୍ଷର ଭୋଟ

ବାବୁଲି ଖୁସିରେ ଚିତ୍କାର କରି ଉଠି କହିଲା ।

‘‘ବୋଉ, ଏଥରକ ମୁଁ ଭୋଟ ଦେବି । ମୋର ଅଠରବର୍ଷ ହୋଇଗଲାଣି । ହେଉ, ରେଡ଼ିଓରେ ଏବେ ଆନାଉନ୍ସ ହେଇଗଲା ।’’

ତା’ ବୋଉ ବିରକ୍ତ ସ୍ୱରରେ କହିଲେ ‘‘ହେଁ, ଆଗରୁ କଲେଜ ୟୁନିଅନରେ ଭୋଟ ପାଇଁ ତ ପଢ଼ା ନଷ୍ଟ କଲୁ । ଏବେ ଏଥିରେ ମାତି ଆଉ କ’ଣ କରିବୁ କେଜାଣି ? ତୋତେ କହିଦେଉଛି । ରାଣ ପକଉଛି ଏଥିରେ ଆଉ ମାତିବୁ ନାହିଁ ।’’

ବାପା ପୁଣି ଗମ୍ଭୀର ହୋଇ କହିଲେ ‘‘ରାଜନୀତିଜ୍ଞମାନେ ଦେଶଟାକୁ ନଷ୍ଟଭ୍ରଷ୍ଟ କରିଦେଲେ । କଲେଜରେ ତ ଯାହା ପଢ଼ାପଢ଼ି ହେଉଥିଲା, ଏବେ ପୁଣି ରାଜନୀତି ଭର୍ତ୍ତି କରିଦେଇ ପିଲାଙ୍କ ଭବିଷ୍ୟତକୁ ପୂରାପୂରି ନଷ୍ଟ କରିଦେଲେ । ପିଲାଏ ତ ଭୋଟରେ ମାତିବେ—ପଢ଼ାପଢ଼ି କରିବେ କ’ଣ ? ଏ ମାଷ୍ଟରଙ୍କୁ ତ ଆହୁରି ଠକିବାକୁ ସୁଯୋଗ ମିଳିଗଲା । ଖବରଦାର୍, ସେଥିରେ ପଶିବୁ ନାହିଁ କହିଦେଉଛି ।

ବାପା ବୋଉଙ୍କ ମନ୍ତବ୍ୟ ଓ ଟିପ୍ପଣୀ ଶୁଣିସାରିଲା ପରେ ବାବୁଲିର ଉଚ୍ଛ୍ୱାସରେ ଟିକିଏ ପାଣି ପଡ଼ିଗଲା ସିନା; କିନ୍ତୁ ଉତ୍ସାହ ଓ ଉତ୍ତେଜନାଟା ଠିକ୍ ସେମିତି ରହିଥାଏ । ବାପାବୋଉ ଯାହା କହନ୍ତୁ । ଏଥର ସେ ନିଶ୍ଚୟ ଭୋଟ ଦେବ । ଗଣତାନ୍ତ୍ରିକ ଅଧିକାର । ସେ ସାବାଳକ । ସେ ଭୋଟ ନିଶ୍ଚୟ ଦେବ । ଦରକାର ହେଲେ ପ୍ରଚାର ମଧ୍ୟ କରିବ । ଖାଲି ଏଇ କେତେଟା ଦିନରେ କ’ଣ ପଢ଼ାପଢ଼ି ସବୁ ନଷ୍ଟ ହୋଇଯିବ ?

କିନ୍ତୁ କାହାକୁ ସେ ଭୋଟ ଦେବ? କାହା ସପକ୍ଷରେ ପ୍ରଚାର କରିବ? ପ୍ଲସ୍‌ଟୁ ପାସ୍ କଲା ପର୍ଯ୍ୟନ୍ତ ସେ ଏ ସମ୍ବନ୍ଧରେ ମୁଣ୍ଡ ପୂରେଇ ନଥିଲା କି କିଛି ଭାବି ନଥିଲା । ରାଜନୀତି କ’ଣ ଭୋଟ କ’ଣ—ଏ ସମ୍ବନ୍ଧରେ ତା’ ମନରେ ଗୋଟାଏ ଧୂଆଁଳିଆ ଆଭାସ ମାତ୍ର ରହିଥିଲା । ସେ ସମ୍ବନ୍ଧରେ କୌଣସି ପ୍ରତ୍ୟକ୍ଷ ଜ୍ଞାନ ନଥିଲା ବି ଜାଣିବାର ଆଗ୍ରହ ନଥିଲା । ପରୀକ୍ଷା ପାଇଁ ସାଧାରଣଜ୍ଞାନର ଉତ୍ତର ପାଇଁ ସେ ମାନେବହି ମୁଖସ୍ଥ କରି ଭାରତର ପ୍ରଥମ ରାଷ୍ଟ୍ରପତି କିଏ ? ଇତ୍ୟାଦି ଇତ୍ୟାଦି ପ୍ରଶ୍ନଗୁଡ଼ିକର ଉତ୍ତର ମୁଖସ୍ଥ କରିଥିଲା ସିନା; କିନ୍ତୁ ପ୍ରତ୍ୟକ୍ଷ ଭାବରେ ଦେଶରେ ଭାବୀମନ୍ତ୍ରୀ, ଭାବୀ ନେତାମାନଙ୍କୁ ନିଜେ ନିର୍ବାଚନ କରିବାର ସୁଯୋଗ ସେ ପାଇ ନଥିଲା । ସେଥିପାଇଁ ତା’ର ଆଗ୍ରହ ବି ନଥିଲା ।

ଅକସ୍ମାତ୍ ତା’ର ହୃଦୟର ଗୋଟାଏ ନିବୁଜ କୋଠରୀର କବାଟ ଖୋଲିଗଲା ଯେମିତି । ସେ ହଠାତ୍ ନିଜକୁ ଅନୁଭବ କରିବାକୁ ଲାଗିଲା ଜଣେ ବୟସ୍କ ବଡ଼ମଣିଷ ପରି । ତା’ ବାପାଦାଦାଙ୍କ ପରି ଜଣେ ଦାୟୀତ୍ୱବାନ ନାଗରିକ ଭାବରେ ଅଚାନକ ଭାବରେ ସାବାଳକ ହୋଇଯିବାର, ବାପାଦାଦାର ସମକକ୍ଷ ହୋଇଯିବାର ଆନନ୍ଦରେ

ସେ ଏକ ଅଜଣା ପୁଲକ ଓ ଉତ୍ତେଜନାରେ ପୁଲକିତ ହୋଇ ଉଠିଲା । ଗୁରୁଜନମାନେ କହିଲେ ଅଠର ବର୍ଷ କ'ଣ ଏମିତି କେତେ ବୟସ କି ? ଘରେ ବାପା ବୋଉ, ମଉସା ପିଉସା, ଗୁରୁଜନମାନେ ଆଜିଯାଏଁ ତାକୁ ମଣିଷ ପରି ଗଣ୍ୟକରୁ ନଥିଲେ । ଯାହା କହିଲେ ବି ସେ 'ପିଲା' ଭାବରେ ହିଁ ଗଣ୍ୟ ହେଉଥିଲେ । କେହି ତା କଥାକୁ ସିରିଅସ୍‌ଲି ନେଉ ନଥିଲେ । ଏମିତି କି ତା'ର ଶିକ୍ଷକମାନେ ମଧ ତାକୁ ଯେମିତି 'ଛୋଟ ଛୁଆ' ପରି ବ୍ୟବହାର କରୁଥିଲେ । କିନ୍ତୁ ଏବେ ନୁହେଁ ଏବେ ବାପାବୋଉ, ଶିକ୍ଷକ ସମସ୍ତଙ୍କର ଯେମିତି ଗୋଟାଏ ଗୋଟାଏ ଭୋଟ—ତା'ର ବି ସେମିତି । ଆଃ କି ମଜ୍ଜା । ସେଇଥିପାଇଁ ସବୁ ଗୁରୁଜନମାନେ ରାଗିଯାଇ ଗାଳିଦେଉଛନ୍ତି ନେତାମାନଙ୍କୁ । ବାଃରେ କି ଅନ୍ୟାୟ କଥା । ତାକୁ ଅଠରବର୍ଷ ହେଲାଣି—ସେ କ'ଣ ପିଲା ହେଇଛି ?

କିନ୍ତୁ ଏବେ ସେ ଭାବିବ—ନିଜେ ଭାବିବ କାହାକୁ ଭୋଟ ଦେବ ? ଦଳକୁ ନା ବ୍ୟକ୍ତିକୁ ? ଯିଦ ଦଳ ତେବେ କୋଉ ଦଳକୁ ? ଯଦି ବ୍ୟକ୍ତି ତେବେ କୋଉ ବ୍ୟକ୍ତିକୁ ?

ତା'ର କିଛିଦିନ ପରେ ସହରରେ ନିର୍ବାଚନ ସଭା ହେବାର ଥାଏ । କଟକରୁ, ଭୁବନେଶ୍ୱରରୁ ସବୁ ନେତାମାନେ ଆସିବେ । ଭାଷଣ ଦେବେ । ସେଇଦିନ ସନ୍ଧ୍ୟାବେଳେ ସେ ବାପାବୋଉଙ୍କୁ ଲୁଚି ପଳେଇଲା ସଭାରେ ଭାଷଣ ଶୁଣିବାକୁ । ସେ ଦିନ ଥାଏ ବିରୋଧି ଦଳର ସଭା । ଖବରକାଗଜରେ ନାଁ ପଢୁଥିବା; କିନ୍ତୁ କେବେ ଆଖିରେ ଦେଖି ନଥିବା ବିଖ୍ୟାତ ନେତାମାନେ ଆସିଛନ୍ତି । ସେ ଯାଇ ଶୁଣିବ ସେମାନେ କ'ଣ କହୁଛନ୍ତି ! ତା'ପରେ ଯାଇଁ ସେ ମନସ୍ଥିର କରିବ କାହାକୁ ଭୋଟ ଦେବ । ନ ଶୁଣିଲେ, ନ ଜାଣିଲେ କ'ଣ ଭୋଟ ଦେଇହୁଏ ।

ବିରୋଧୀ ଦଳର ବିଖ୍ୟାତ ନେତାମାନେ ଭାଷଣ ଦେବାକୁ ଆରମ୍ଭ କଲେ । "ଭାଇମାନେ, ଗତ ପାଞ୍ଚ ବର୍ଷର ଶାସକ ଦଳର ଶାସନ ଓଡ଼ିଶାର ଏକ କଳଙ୍କିତ ଅଧ୍ୟାୟ । ସେମାନେ ଲୋକଙ୍କୁ ଶୋଷଣ କରିଛନ୍ତି—ଅନ୍ୟାୟରେ ଅର୍ଥ ସଞ୍ଚୟ କରିଛନ୍ତି । ଏହି ଦଳର ପ୍ରତ୍ୟେକ ବ୍ୟକ୍ତି, ପ୍ରତ୍ୟେକ ସମ୍ମାନିତ ନେତା ମନ୍ତ୍ରୀମାନେ ଚରିତ୍ରହୀନ, ମଦ୍ୟପ, ଦୁର୍ନୀତିଗ୍ରସ୍ତ, ଘୁସ୍‌ଖୋର, ଗୁଣ୍ଡା, ବଦ୍‌ମାସ୍ । ସେମାନେ ସରକାରୀ ତହବିଲ୍‌ରୁ ଲକ୍ଷ ଲକ୍ଷ କୋଟି କୋଟି ଟଙ୍କା ତୋଷରପାତ କରିଛନ୍ତି । ଭୁବନେଶ୍ୱର, କଟକରେ ଲକ୍ଷ ଲକ୍ଷ ଟଙ୍କାର କୋଠା ତୋଳିଛନ୍ତି । ଭାଇ ଭଉଣୀ ଶଳା ସମ୍ବନ୍ଧୀମାନଙ୍କ ନାମରେ ବେନାମୀ ବ୍ୟବସାୟ କରିଛନ୍ତି । ଅମୁକ ନେତାଙ୍କର ବିଦେଶୀ ବ୍ୟାଙ୍କରେ କୋଟି କୋଟି ଟଙ୍କା ଅଛି । ସମୁକ ନେତା ଶହ ଶହ କୁମାରୀ କନ୍ୟାର ଇଜ୍ଜତ ଲୁଟିଛନ୍ତି । ସେମାନେ ବେଶ୍ୟାବୃତ୍ତିକୁ ଆଶ୍ରୟ ଦେଇଛନ୍ତି । ସେମାନେ ଗୋଟିଏ ଗୋଟିଏ ଅହଂକାରୀ, ଅସାଚାରୀ, ଲୋଭୀ, କାମୁକ, ଲମ୍ପଟ, ଚୋର, ଘୁଷ୍‌ଖୋର୍ ବ୍ୟକ୍ତିମାନେ । ଭାଇମାନେ,

ଏହିପରି ଅଭଦ୍ର, ଅଶ୍ଳୀଳ, ଦୁରାଚାରୀ ବ୍ୟକ୍ତିମାନଙ୍କୁ ଭୋଟ ଦିଅନ୍ତୁ ନାହିଁ। ସେମାନେ ଦେଶକୁ ରାସ୍ତାତଳକୁ ନେଇଯିବେ।'' ଅନ୍ୟ ଜଣେ ବକ୍ତା କହିଲେ—''ଏହି ଦଳ ଯୋଗୁଁ ଦେଶରେ ଦରଦାମ ବୃଦ୍ଧିହୋଇଛି। ବେକାରୀ ବଢ଼ିଛି, ଦାରିଦ୍ର୍ୟ ବଢ଼ିଛି—ଚାଷୀମାନେ ଡଳିତ୍ରବାନ୍ତ ହୋଇଛନ୍ତି। କେହି ଚାକିରୀ ପାଉନାହାନ୍ତି। ଦେଶର ସୁନାମ ତାଙ୍କରି ଯୋଗୁଁ ଧୂଳିସାତ୍ ହୋଇଛି। ଏମାନେ ସାମ୍ପ୍ରଦାୟିକତା ବୃଦ୍ଧି କରିଛନ୍ତି। ଏହି ଦଳର ସବୁ ନେତାମାନେ ଗୋଟିଏ ଗୋଟିଏ ନ୍ୟସ୍ତ ସ୍ୱାର୍ଥ, ସୁବିଧାବାଦୀ, ପୁଞ୍ଜିପତିର ଦଲାଲ୍। ଏମାନଙ୍କୁ ଭୋଟଦେଇ ଆପଣମାନଙ୍କ ଭୋଟର ଅମର୍ଯ୍ୟାଦା କରନ୍ତୁ ନାହିଁ।''

ହତଚକିତ ହୋଇ ସବୁ ଶୁଣିଲା ବାବୁଲି। ବିସ୍ମୟ, ଆଶ୍ଚର୍ଯ୍ୟ ଓ ସ୍ୱପ୍ନଭଙ୍ଗ ହତାଶାରେ ସେ ସ୍ତବ୍ଧ ହୋଇ ରହିଗଲା। ଯୋଉ ନେତାମାନଙ୍କୁ ସେ ପିଲାଦିନରୁ ଶୁଣିଆସିଛି, କେତେକକୁ ଦେଖିଆସିଛି—ସେମାନଙ୍କର ଅସଲ ସ୍ୱରୂପ ତେବେ ଏଇଆ ? ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା, କଳ୍ପନାରେ ସୁଦ୍ଧା ଆଣି ନଥିଲା ଯେ ଏତେ ବଡ଼ ବଡ଼ ନେତାମାନେ ଏମିତି ଘୃଣ୍ୟକାର୍ଯ୍ୟ କରିପାରନ୍ତି। ତା'ହେଲେ ତାଙ୍କ ଟାଉନ୍‌ର ମଦୁଆ ଦଳି ପ୍ରଧାନ, ଚୋର ଜଗୁ ଭୋଇ, ଗୁଣ୍ଡା ନରହରି ନାଏକଠୁ ତ ଏମାନେ କୋଉ ଗୁଣରେ ଭଲ ନୁହଁନ୍ତି ? ଏଇମାନେ ତେବେ ଆମକୁ ଶାସନ କରୁଥିଲେ ଆଜିଯାଏଁ।

ତା'ର ବାଳକ-ସାବାଳକ ମନଟା ଏକ ତୀବ୍ର ବିସ୍ୱାଦରେ ଏକ ତୀବ୍ର ହତାଶାବୋଧରେ ଭାରାକ୍ରାନ୍ତ ହୋଇଗଲା। ତା'ଭିତରୁ ଗୋଟାଏ କୋହ ଉଠୁଥାଏ—ଅଥଚ ଯେ କାନ୍ଦି ପାରୁ ନଥାଏ। ଗୋଟାଏ ଜର୍ଜରିତ ଯନ୍ତ୍ରଣା ଓ ବେଦନାବୋଧ ତା' ଛାତି ଭିତରଟାକୁ ରୁନ୍ଧି ଦେଇଥାଏ। ସେ ସେଦିନ ରାତିରେ କିଛି ଖାଇପାରିଲା ନାହିଁ। ଓପାସରେ ଶୋଇଗଲା ନିରାଶା, ହତାଶାର ଗଭୀର ଅନ୍ଧକାର ଭିତରେ ଆଶା ଆଲୋକରେ ସନ୍ଧାନ କରୁ କରୁ।

କିଛି ଦିନ ଗଲାପରେ ସେ ସହଜ ହୋଇ ଉଠିଲା ଏବଂ ମନେ ମନେ ସ୍ଥିର କରିନେଲା ଯେ ସେ ବିରୋଧୀ ଦଳକୁ ଭୋଟ ଦେବ। ଏଇ ସମୟରେ ପୁଣି ଶାସକ ଦଳର ନିର୍ବାଚନ ସଭା ତାଙ୍କ ସହରରେ ଆରମ୍ଭ ହେଲା। ଶାସନ ଦଳର ବହୁ ଗଣ୍ୟମାନ୍ୟ ନେତା, ପୂର୍ବତନ ମନ୍ତ୍ରୀ ପ୍ରଭୃତି ଆସିଥାନ୍ତି ଭାଷଣ ଦେବାକୁ। ଏ ସଭାକୁ ତା'ର ସାମାନ୍ୟତମ ଯିବାର ଇଚ୍ଛା ନଥିଲା। ସେ ସେଇ ନେତାମାନଙ୍କର ଭାଷଣ ତ ଦୂରର କଥା ମୁହଁକୁ ଚାହିଁବାକୁ ଇଚ୍ଛାକରୁ ନଥିଲା। କିନ୍ତୁ ବନ୍ଧୁମାନଙ୍କ ଗହଣରେ ବାଧହୋଇ ସେଇ ସଭାକୁ ଯାଇଥିଲା। ଅବଶ୍ୟ ପ୍ରାକ୍ତନ ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ତଥା ଅନ୍ୟାନ୍ୟ ମନ୍ତ୍ରୀମାନଙ୍କୁ ଦେଖିବାକୁ ଓ ତାଙ୍କ କଥା ଶୁଣିବାକୁ ତା'ର ଅଦ୍ୟମିତ କୌତୂହଳ ମଧ୍ୟ ତାକୁ ଏ ସଭାକୁ ଟାଣିଆଣିବାକୁ କମ୍ ପ୍ରୋତ୍ସାହନ ଦେଇ ନଥିଲା। ସେ ନିରବରେ ବସି ଭାଷଣ ଶୁଣିବାକୁ ଲାଗିଲା।

ଭାଇମାନେ ଆମେମାନେ ଗତ ପାଞ୍ଚବର୍ଷ ଧରି ଯୋଉ ଶାସନ କରିଛୁ, ସେଥିରେ ଦେଶର କେତେ ପ୍ରଗତି ହୋଇଛି ତା' ଆପଣମାନେ ଲକ୍ଷ୍ୟ କରିଥିବେ—ଅନୁଭବ କରିଥିବେ। ଆମେ ଏତେଟା ନଦୀବନ୍ଧ କରିଛୁ, ଏତେ କଲକାରଖାନା ବସେଇଛୁ, ବେକାରୀ ଭତ୍ତା ଦେଇଛୁ, ଗରିବଙ୍କ ପାଇଁ ଅମୁକ ଅମୁକ କାର୍ଯ୍ୟକ୍ରମ ଗ୍ରହଣ କରିଛୁ। ପୁଣି ଆହୁରି ନୂତନ ନୂତନ କାର୍ଯ୍ୟକ୍ରମ ହାତକୁ ନେବୁ। ଆପଣ ବିରୋଧୀଦଳର ମିଥ୍ୟା ପ୍ରଚାର ଓ ଚରିତ୍ର ସଂହାରରେ ଭୁଲନ୍ତୁ ନାହିଁ। ଏଇ ବିରୋଧୀଦଳର ନେତାମାନେ କିଏ ? ସେମାନେ ପ୍ରଥମେ ଆମ ଦଳରେ ଥିଲେ। କିନ୍ତୁ ସେମାନେ ଭ୍ରଷ୍ଟାଚାରୀ, କଳାବଜାରୀ ଓ ମଦୁଆ ଥିବାରୁ ତାଙ୍କୁ ଆମେ ଦଳରୁ ବହିଷ୍କାର କରି ଦେଇଥିଲୁ। ଆମେ ଆମ ଦଳ ଭିତରେ ସଚ୍ଚୋଟ, ନିର୍ଲୋଭ, ପରୋପକାରୀ ବ୍ୟକ୍ତିମାନଙ୍କୁ ନେଇଛୁ ଓ ଏହିପରି ଚରିତ୍ରହୀନ, ପ୍ରିୟାପ୍ରୀତି ଯେ ଗଣହିତ, ଲାଞ୍ଚଖିଆ, ଚୋର ଲୋକଙ୍କୁ ବାହାର କରିଦେଇଛୁ। ବିରୋଧୀଦଳ ନେତା ଅମୁକବାବୁ, ଅମୁକ ସନରେ ଅମୁକ ଜନାକାରୀ କେଶ୍‌ରେ ଜଡ଼ିତ ଥିଲେ। ଅମୁକ ନେତା କଳାବଜାରୀ ଥିଲେ। ଅମୁକ ନେତା ଟଙ୍କା ତୋଷରପାତ କରିଥିଲେ। ଅମୁକ ନେତା ଗୁଣ୍ଡା ଓ ସ୍ମଗଲର୍। ସୁନା ଚୋରାକାରବାରରେ ଲିପ୍ତ। ଅମୁକ ନେତା ବଦଳି କରି ଟଙ୍କା ନେଉଥିଲେ।

ବାବୁଲିର କାନ ଭାଁ ଭାଁ କରିଗଲା। ଯେଉଁମାନଙ୍କୁ ସେ ଏଇ କିଛି ମୁହୂର୍ତ୍ତ ଆଗରୁ ସେ ଦେବୋପମ ବ୍ୟକ୍ତି ଭାବରେ ଜାଣିଥିଲା—ସେମାନେ ପୁଣି ଏଇପରି ? ସେ ବିଭ୍ରାନ୍ତ ହୋଇଗଲା। କିଏ ସତ କହୁଛି ? ଏମାନେ ନା ସେମାନେ ? ସେମାନେ ପ୍ରମାଣ ଦେଉଛନ୍ତି—ଏମାନେ ପ୍ରମାଣ ଦେଉଛନ୍ତି। ତା'ହେଲେ ଏମାନେ ସମସ୍ତେ କ'ଣ ସମାନ ? ସବୁ ବୟସ୍କ ନେତାମାନେ କ'ଣ ଏହିପରି ଚରିତ୍ରହୀନ, ଲମ୍ପଟ, ଭ୍ରଷ୍ଟାଚାରୀ, ଦୁର୍ନୀତିଗ୍ରସ୍ତ, ପାଷାଣ୍ଡ, ଅମଣିଷ, ଜାନୁଆର ? ତା'ହେଲେ ଏମାନଙ୍କ ପାଇଁ ତା'ର ଅମୂଲ୍ୟ ଭୋଟଟି ସେ ଦେଇଦେବ କିପରି ?

ଏକ ଗଭୀର ହତାଶା, ବିଷାଦରେ ତା'ର ଅଠରବର୍ଷର କୋମଳ, ନିଷ୍ପାପ ମନଟି ଚହଲିଯାଇ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା। ଦେଶର ସମସ୍ତ ବୟସ୍କ ଜନନାୟକମାନେ ଯଦି ଏହିପରି ଦୁଃଶ୍ଚରିତ୍ର ଏବଂ ଦୁର୍ନୀତିଗ୍ରସ୍ତ, ସେ ଦେଶର ଆଉ କୋଉ ଗୁରୁଜନଙ୍କ ଉପରେ ଭରସା ରଖିବ ? କାହାକୁ ସେ ଭୋଟ ଦେବ ? କାହାପାଇଁ ପ୍ରଚାର କରିବ ?

ଭୋଟ ଗ୍ରହଣ ଦିନ ବାବୁଲିକୁ ଘରୁ ନ ବାହାରିବାର ଦେଖି ତା' ବୋଉ ପଚାରିଲେ "କିରେ ଟୋକା ଭାରି ତ ହମ ହମ ହେଉଥିଲୁ ଭୋଟ ଦବୁ ବୋଲି। ଆଜି ଏତେବେଳଯାଏଁ ବାହାରୁନି କାହିଁକି ?"

"ମୁଁ ଯିବି ନାହିଁ।"

"କିରେ କାହିଁକି ?"

ଯୋଉଦିନ ମୁଁ କି ମୋ ସାଙ୍ଗମାନେ ଇଲେକ୍‌ସନରେ ଛିଡ଼ାହେବେ ମୁଁ ସେଇଦିନ ଭୋଟ ଦେବି।

-୦-

# ପୁଅ କଣ କରୁଛି

ସୁରବାବୁ ଏବେ ପରିଚିତ ସମବୟସ୍କ ବନ୍ଧୁମାନଙ୍କୁ ଲୁଚିବାକୁ ଆରମ୍ଭ କଲେଣି। ଦେଖାହେଲେ, ନ ଦେଖିଲାପରି ଏଡ଼େଇ ଦେଇ ଯାଉଛନ୍ତି। ଭାରତବର୍ଷ ବିଶେଷତଃ ଓଡ଼ିଶାର ମଧ୍ୟବିତ୍ତ ସମାଜ ପରି ଏତେ ପରିବାର ଅନୁରକ୍ତ ସମାଜ ପୃଥିବୀରେ ବୋଧେ କେଉଁଠି ନ ଥିବ। ଠିକ୍ ପରିବାର ନୁହେଁ ସରକାରୀ ସ୍ୱୀକୃତିପ୍ରାପ୍ତ ପରିବାର ଆଉ ସେଇଥି ପାଇଁ ନିଜ ଅପେକ୍ଷା ନିଜ ସନ୍ତାନର କୃତିତ୍ୱରେ ଗୌରବବୋଧ ଓ ବିଫଳରେ ଲଜ୍ଜାବୋଧ କରିବା ପରି ପିତାମାତା ମଧ୍ୟ ଭାରତ ଛଡ଼ା ଆଉ କେଉଁଠି ନଥିବେ। ସୁରବାବୁ ଅତିଷ୍ଠ ହୋଇ ଉଠିଲେଣି। ଏଇ ଭାବନାଟା ବୋଧହୁଏ ବୟସ ବଢ଼ିବା ସଙ୍ଗେ ସଙ୍ଗେ ସମସ୍ତଙ୍କ ମନରେ ଆହୁରି ବେଶୀ ଗାଢ଼ତର ଓ ଦୃଢ଼ତର ହୋଇଯାଏ ସେଥିପାଇଁ ଯେତେ ସମବୟସ୍କ ପୁରୁଣା ବନ୍ଧୁ ପରିଚିତ ଲୋକଙ୍କ ସାମ୍ନାରେ ହଠାତ୍ ଦେଖା ହେଲେ ପାରସ୍ପରିକ କୁଶଳ ପ୍ରଶ୍ନ ପରେ ଦ୍ୱିତୀୟ ପ୍ରଶ୍ନଟି ହେଲା ଆଉ ପିଲାମାନେ କଣ କରୁଛନ୍ତି? ପୁଅ କ'ଣ କରୁଚି?

ସେଦିନ ହରିଶବାବୁଙ୍କ ସହ ଦେଖା—ବୁଝିଲେ; ଏଥର ମୋର ଛୁଟି। ବଡ଼ ପୁଅଟା ଡାକ୍ତରୀ ପାଶ୍ କରିଗଲା, ସାନପୁଅଟା ଏବେ ଇଂଜିନିୟରିଂ ପରୀକ୍ଷା ଦେଇଛି, ସାନଟାବି ଏମ୍. ଏ. ଦେବ, ଭଲ ପଢୁଚି, କମ୍ପିଟେସନରେ ନିଶ୍ଚେ ପାଇଯିବ। ଆଉ ଆପଣଙ୍କ ପିଲାମାନେ? ସୁରବାବୁ ସଂକୁଚିତ ହୋଇ ଯା'ନ୍ତି। ତାଙ୍କର ବି ଭାରି ଇଚ୍ଛାଥିଲା ବଡ଼ପୁଅଟା ଡାକ୍ତରୀ ପଢୁ, ହେଲେ ସିଟ୍ ପାଇଲା ନାହିଁ। ତା ତଳୁଟାକୁ ଆଶାଥିଲା ସେ ମଧ୍ୟ ଏଣ୍ଟ୍ରାନ୍ସରେ ନା ଡାକ୍ତରୀ, ନା ଇଂଜିନିୟରିଂ ସିଟ୍ ପାଇଲା ନାହିଁ। ଶେଷକୁ ଦି' ଜଣ ଯାକ ବାଧ୍ୟ ହୋଇ ଏମ୍.ସି. ପଢ଼ିଲେ। ବଡ଼ଟା ଫିଜିକ୍ସରେ ଫାଷ୍ଟକ୍ଲାସ ପାଇ ଦି'ବର୍ଷ ହେଲା ବି ହେଲା ତାର। ସାନଟା କେମିଷ୍ଟ୍ରିରେ ପାଶ୍ କରି ଏବେ ଗୋଟେ ମେଡ଼ିକାଲ ରିପ୍ରେଜେନ୍‌ଟେଟିଭ ଚାକିରି ପାଇଛି, କୋଉ ଗୋଟେ ଔଷଧ କମ୍ପାନୀରେ। ଅଥଚ ସୁରବାବୁ ତାଙ୍କର ଏଇ ପୁଅ ମାନଙ୍କର କୃତିତ୍ୱରେ ଗୌରବାନ୍ୱିତ ହୋଇ ପାରନ୍ତିନି। କେମିତି ମାଡ଼ି ମାଡ଼ି ପଡ଼େ ତାଙ୍କୁ। ସତେଯେମିତି ଏଥିପାଇଁ ସେ ନିଜେଦାୟୀ।

ସତେ ଯେମିତି ଚାକିରୀ ନପାଇବା ଓ ଛୋଟ ଚାକିରୀ କରିବା ଏକ ଗର୍ହିତ ବ୍ୟାପାର। ସେ କଥାଟାକୁ ବାଁଆରେଇ ଦେଇ କହନ୍ତି—ବଡ଼ଟା କଂପିଟେଟିଭ ଦେବା ପାଇଁ 'ପଢ଼ାପଢ଼ି କରୁଚି। ସାନଟା ଏବେ ପାଶ୍ କଲା। ଆଉ ଆପଣଙ୍କ ଭାଗ୍ୟ ଭଲ ପିଲାମାନେ ଏତେ ବ୍ରିଲିଆଣ୍ଟ। ଏତେକ କହି କେମିତି ଖସିବେ ସେ ବାଟ ଖୋଜି ତର ତର ହୋଇ ପାର ହୋଇଯାନ୍ତି।

ଘରକୁ ଫେରିଲେ ଶାନ୍ତି ନାହିଁ। ସ୍ତ୍ରୀ ଅଭିଯୋଗ କରନ୍ତି—"ତମ ଦେଇ କିଛି ହେବନାହିଁ ତମରି ପାଇଁ ମୋ ପିଲାମାନେ ଏମିତି ହେଲେ। ନହେଲେ ସେମାନେ କଣ ଭଲ ପଢୁନଥିଲେ? କେତେ କରି କହିଲି, ଟଙ୍କା ଦଶ ହଜାର ଖର୍ଚ୍ଚ କର

ବୁବୁନିଟା ନିଶ୍ଚେ ମେଡ଼ିକାଲ ପାଇଯିବ। କହିଲେ କ'ଣ ନା—ଏଣ୍ଟ୍ରାନ୍ସ ପରୀକ୍ଷା ଏଥିରେ ଧରାଧରି ନାହିଁ। ଭଲ କରିବତ ପାଇବ। ଆଉ ମୋ ସାଙ୍ଗ ସବିତା ପୁଅ କଣ ବୁବୁନିଠୁଁ ଭଲ ଛାତ୍ର ?

ତା ବାପ କାହିଁ ବୁର୍ଲା, କାହିଁ ବ୍ରହ୍ମପୁର ଯାଇଁ ଟଙ୍କା ୨୦ ହଜାର ଖର୍ଚ୍ଚ କରି ତା ପୁଅକୁ ମେଡ଼ିକାଲରେ ସିଟ୍ କରାଇଲା ନା ନାହିଁ। ତମର ତ ଅଫିସ ଭଲକି ତମେ ଭଲ, ପିଲାମାନଙ୍କ ପାଇଁ ତମ ନଜର କାହିଁ? ଚେଷ୍ଟା କାହିଁ? ବାପ ମା ଏମିତି ହାତରେ ଦେଲେ ଯେ, ସାରା ଜୀବନଟା ଦହଗଞ୍ଜରେ କଟିଗଲା। କଥାଟାର ସତ୍ୟତା ଯେ ନାହିଁ ସେ କଥା ନୁହେଁ—କଥାଟା ହେଉଚି ପୁଅର ଅପାରଗ ପଣିଆକୁ ଘୋଡ଼ାଇବା ପାଇଁ କେଉଁ ବାପ କେତେ ତଳକୁ ଖସିପାରେ ? ପୁଅବୋଲି ନିଜସ୍ୱ ବିବେକ, ନିଜସ୍ୱ ସମ୍ମାନ, ବଳୀ ଦେବା କଣ ସତରେ ଯଥାର୍ଥତା। ପୁଅ ବୋଲି ଜଣେ ଅସହାୟ ପିତାର ସକ୍ଷମ ପୁତ୍ରର ହକଟିକୁ କଳେ ବଳେ କୌଶଳେ ଛଡ଼ାଇ ନେବା, ଅପହରଣ କରିବା କଣ ପିତାର ଏକ ପାରିବାରିକ କର୍ତ୍ତବ୍ୟ ? ସୁରବାବୁ କିଛି ଠିକ୍ କରି ପାରନ୍ତି ନି ସେ ଅସହାୟ ଭାବରେ ଦୁଇପୁଅ ବୁବୁନି ଆଉ ପାପୁନି ଆଡ଼କୁ ଚାହାଁନ୍ତି, ଦି' ଜଣ ଯାକ ଭଲ ପିଲା। ଭଲଛାତ୍ର, ପରିଶ୍ରମରେ ମଧ୍ୟ ଅବହେଳା କରି ନାହାନ୍ତି। ଯେତିକି ପାରନ୍ତି ସେମିତି ସେମାନଙ୍କୁ ସାହାଯ୍ୟ କରି ଆସିଛନ୍ତି। ତଥାପି ହେଲା ନାହିଁ। ଭାଗ୍ୟ! ତା ବୋଲି କଣ ସେମାନଙ୍କୁ ସେ ଦାୟୀ କରିବେ। ଏତେ ଲକ୍ଷ୍ୟ ଛାତ୍ର ଭିତରୁ ସମସ୍ତେ ଯେ ମେଡ଼ିକାଲ୍, ଇଂଜିନିୟରିଂ ସିଟ୍ ପାଇବେ ସେଇଟା ତ ଠିକ୍ ନୁହେଁ। ଆଉ ତା ଛଡ଼ା ସେ ଗୁଡ଼ା ଛଡ଼ା ଯେ ଅନ୍ୟ ଚାକିରୀ ସବୁ ତୁଚ୍ଛ ଏକଥା ବା କିଏ କହିଲା। ସ୍ତ୍ରୀକୁ ବୁଝାଇବାକୁ ଯାଇ ଅଟକି ଯାନ୍ତି' ଛାଡ଼୍! କଣ ମିଳିବ ବୃଥା କଳି ଝଗଡ଼ାରୁ। ସବୁ ମଣିଷର ଗୋଟେ କଳ୍ପନା ଥାଏ ତାର ହୁଏତ ସେଇ ପରି ଗୋଟେ ସ୍ୱପ୍ନ ଥିଲା। ସ୍ୱପ୍ନ ଭାଙ୍ଗି ଯିବାର ହତାଶାରେ ସେ ଆଜି ବିବ୍ରତ, ନିରାଶ, ନା ସେ କାହାରିକୁ ଦୋଷ ଦେବେନି, ସ୍ତ୍ରୀକୁ ନୁହେଁ, ପୁଅକୁ ନୁହେଁ ନିଜକୁ ବି ନୁହେଁ; ସେ ନିଜକୁ ନିଜେ ସାନ୍ତ୍ୱନା ଦିଅନ୍ତି। ଯାହା ଘଟିବାର ଥିବ ଘଟିବ। କିଏ ଆଉ କଣ କରି ପାରିବ, ସବୁ ଭାଗ୍ୟ। ସବୁ ପୂର୍ବ ଜନ୍ମର କର୍ମଫଳ। କିନ୍ତୁ ତଥାପି ମନ ଭିତରେ ଗୋଟେ ଖଟ୍କା ରହିଯାଏ, ନିଜ ଭିତରୁ ନିଜକୁ ଯେତେ ମୁକୁଳାଇବାକୁ ଚେଷ୍ଟା କଲେବି ସେ ମୁକୁଳି ପାରନ୍ତିନି। ମନେହୁଏ ଏସବୁ ଭିତରେ କେଉଁଠି ନା କେଉଁଠି ଗୋଟେ ଭୁଲ୍ ରହି ଯାଉଛି। ସେ ଭୁଲ୍‌ଟା ତାଙ୍କର। କେମିତି ଗୋଟାଏ

ଦୋଷୀ ଦୋଷୀ ଭାବ ତାଙ୍କୁ ଭିତରେ ଭିତରେ କୋରି ପକାଏ ସେଇଟା ଆହୁରି ବଢ଼ିଯାଏ ପୁଣି କାହା ସହିତ ଦେଖା ହୋଇଗଲେ। ବୁଝିଲେ ସୁରବାବୁ କପାଳେ କପାଳେ ନହେଲେ ଦେଖନ୍ତୁ କଣ ଚେଷ୍ଟା ମୁଁ ନକରିଛି ଏ ପିଲାଙ୍କ ପାଇଁ। କେତେ ଟଙ୍କା ନ ସାରିଛି ତାଙ୍କ ପଛରେ।

ଅଥଚ ଦି'ଟା ଯାକ ମଣିଷ ହେଲେନି। ଦିନରାତି, ପଲିଟିକ୍ସ, ଗୁଣ୍ଡାମି, କହିଲେ ପାଟି କରି ଘର କମ୍ପାଉଛନ୍ତି। କିଛି କହିବାର ଉପାୟ ନାହିଁ। ସବୁର ଭାଗ୍ୟ ଦୋଷ। ସୁରବାବୁ ସବୁ ମୋର ଭାଗ୍ୟଦୋଷ। ଏକଥା ଶୁଣିଲା ପରେ ସୁରବାବୁ ଟିକିଏ ଉଚ୍ଛ୍ୱାସ ବୋଧ କରନ୍ତି। ଯାହାହେଉ ତାଙ୍କ ପିଲେତ ଏମାନଙ୍କଠୁଁ ଭଲ। କିରେ ସୁର ନା ! ଚମକି ପଡ଼ିଲେ ସୁରବାବୁ; ମୁହଁଟା ଚିହ୍ନା ଚିହ୍ନା ଲାଗୁଛି, ଅଥଚ ନାଁଟା ମନେ ପଡୁନି।

—"କିରେ ଚିହ୍ନି ପାରିଲୁନି, ମୁଁ ପରା ନର; ନରେନ୍ଦ୍ର ସ୍ୱାଇଁ।"

—ଆରେ ଆରେ, କେତେ ଦିନ ପରେ ଦେଖା। ୨୦ବର୍ଷ ହେଇଗଲା; ଆଉ ଏଣେ କୁଆଡ଼େ ?

ତୁ ସେଇ ମହିଧର ପୁର କଲେଜରେ ଅଛୁଟି ?

ଆରେ ନାଇଁମ; ମୁଁ ଏବେ ଶାଳପଡ଼ା କଲେଜରେ ପ୍ରିନ୍ସିପାଲ ଅଛି। ତୁ କ'ଣ ଏବେ ସେଇ ଏଜୁକେଶନ ଡ଼ିପାର୍ଟମେଣ୍ଟରେ। ହଁ ମୋ ପୁଅ ପରା ତମ ଡ଼ିପାର୍ଟମେଣ୍ଟର ସେକ୍ରେଟାରୀ। ତୁ ଜାଣିନୁ ପରା। ଏବେ ତ ଆସିଛି ଆଉ। ଗତ ୧୦ବର୍ଷ ତଳେ ସେ ସାରା ଭାରତ ବର୍ଷରେ I.A.S. ରେ ତୃତୀୟ ହୋଇଥିଲା। ଶୁଣିଥିବୁ ନିଶ୍ଚୟ। ଆ ଆଜି ଘରକୁ। ତମ ସାଙ୍ଗରେ ପରିଚୟ କରାଇ ଦେବି। ଆଛା ସେ I.A.S. ପାଇଲା, ମୋରି ବିପଦ। କାହାକୁ ମନା କରିବି। ସମସ୍ତେ ଆସି ମୋ ପାଖରେ। ପୁଅକୁ କହି ଏଇଟା କରିଦିଅ, ସେଇଟା କରିଦିଅ, ସେତ ଭୀଷଣ କଡ଼ା ଅଫିସର। ତୁ ତ ଜାଣିଥିବୁ ସବୁ ଆଉ। ପୁତ୍ରର କୃତିତ୍ୱର ଔଜ୍ଜ୍ୱଲ୍ୟରେ ଉଦ୍‌ଭାଷିତ ନରେନ୍ଦ୍ରର ସମୁଜ୍ଜ୍ୱଳ ମୁହଁଟା ଆଡ଼େ ଅନାଇ ଦେବାମାତ୍ରେ ଈର୍ଷାର ଗୋଟେ ଅର୍ଦ୍ଧଶଳାକା ପଶିଗଲା ସୁରବାବୁଙ୍କ ଛାତି ଭିତରେ। ହୀନମନ୍ୟତାର ଧକ୍କାରେ ସେ ମୁହୂର୍ତ୍ତକ ଭିତରେ ଖସିଗଲେ ୧୦ ହାତ ତଳକୁ। କ୍ଷଣକ ଭିତରେ ଭାସି ଉଠିଲା, ଗତ ୩୦ବର୍ଷ ତଳର ନରେନ୍ଦ୍ର ସେଇ ଶୁଷ୍କ ବିଷର୍ଣ୍ଣ ମୁହଁଟା। ତୃତୀୟ ଶ୍ରେଣୀରେ ଏମ୍.ଏ ପାଶ୍ କରିଥିଲା ଏଇ ନର କୌଣସି ଚାକିରୀ ନ ପାଇ ମହୀଧରପଡ଼ା ପ୍ରାଇଭେଟ କଲେଜରେ ଯୋଗ ଦେଇଥିଲା ୯୦ ଟଙ୍କା ବେତନରେ। ଆଉ ସେ ସବ୍ ଡ଼େପୁଟୀ ଚାକିରୀ ପାଇ ଯୋଗ ଦେଇଥିଲେ ଏଇ ଚାକିରୀରେ। ଆଜି ସେ କେଉଁଠି ? ଆଉ ନର କେଉଁଠି ? କୌଣସିମତେ ଆଚ୍ଛାହେଉ ବୋଲି କହି ଖସି ଆସିଲେ ସେଠାରୁ। ହୀନମନ୍ୟତାର ଏକ ତୀବ୍ର Inferiour Complex ରେ

ସେ ଭାଙ୍ଗି ପଡ଼ିଲେ। ନର ସ୍ୱାଇଁର କେତେବଡ଼ ଭାଗ୍ୟ ପୁଅ କେତେ ଯୋଗ୍ୟ ଅଥଚ ତାଙ୍କର କିଛି ହେଲାନାହିଁ। ତାଙ୍କର ପୁଅର ପରିଚୟ ଦେବାକୁ ଲଜ୍ଜା ଲାଗୁଛି। କିନ୍ତୁ କାହିଁକି ? କାହିଁକି ! ଯୋଗ୍ୟତାର ମାପ କାଠି କଣ ଗୋଟେ ବଡ଼ ଚାକିରୀ ! ଏଇ ହୀନମନ୍ୟତା କଣ ସେଇଥି ପାଇଁ ? ନିଜକୁ ନିଜେ ପ୍ରଶ୍ନ କଲେ ସୁରବାବୁ ! ଜଣେ ପୁଅର ଶୃଙ୍ଖଳାଜ୍ଞାନ, ପିତାମାତା ପରିବାର ବନ୍ଧୁମାନଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା, ଭକ୍ତି, ପାଖପଡ଼ୋଶୀଙ୍କ ପାଇଁ ପରୋପକାର କଣ ଅର୍ଥ ଓ କ୍ଷମତାଠାରୁ ବଡ଼ ନୁହେଁ ? ସେ କାହିଁକି ମୁଣ୍ଡଟେକି ଛାତି ଫୁଲେଇ ଗର୍ବରେ କହିପାରୁ ନାହାନ୍ତି ମୋ ପୁଅ ସଚ୍ଚରିତ୍ର, ନିର୍ଲୋଭ, ପରୋପକାରୀ। ମୋ ପୁଅ ମଦ୍ୟପ ନୁହେଁ, ଗୁଣ୍ଡା ନୁହେଁ, ଡ୍ରଗ ଅଡ୍ଡିକ୍ଟସ ନୁହେଁ। ମୋ ପୁଅ ଦୟାଳୁ କ୍ଷମାଶୀଳ, ବିଚାର ବନ୍ତ ସହିଷ୍ଣୁ, ନ୍ୟାୟ ପରାୟଣ। ମୋ ପୁଅ ବଡ଼ ଚାକିରୀ କରିନି ସତ କିନ୍ତୁ ମଣିଷ ପଣିଆରେ ସେ, ସମସ୍ତଙ୍କ ଠାରୁ ଯଥେଷ୍ଟ ବଡ଼, ଯଥେଷ୍ଟ ଉଚ୍ଚରେ। ଏମିତି ସଚ୍ଚୋଟ, ନିର୍ଲୋଭ, ପରୋପକାରୀ ପୁତ୍ର, ଏଇ ଅଧୁନାତନ ସମଗ୍ର ଭାରତବର୍ଷରେ କେତେଜଣ ଅଛନ୍ତି ଯେ; ଏମିତି ପୁତ୍ରର ଗୌରବରେ ଗୌରବାନ୍ୱିତ ହେବା, କେତେଜଣଙ୍କ ଭାଗ୍ୟରେ ଘଟେ। ଅଥଚ ସେ ତାହା କହି ପାରୁନାହାନ୍ତି। ଗୌରବାନ୍ୱିତ ହୋଇ ପାରୁ ନାହାନ୍ତି, କାହିଁକି ? ହଠାତ୍ ତାଙ୍କ ମନ ଭିତରେ ବିଦ୍ୟୁତ୍ ପରି ଝଟକି ଗଲା କଥାଟିଏ। କିଏ ଜଣେ କହିଗଲା ଯେପରି ଦୈବବାଣୀ ପରି। ଯୋଉ ବ୍ୟକ୍ତି ନିଜେ ବ୍ୟକ୍ତିଗତ ଜୀବନରେ କିଛି ହୋଇ ପାରି ନାହିଁ, ସେଇ ବୋଧହୁଏ ସନ୍ତାନର କୃତିତ୍ୱରେ ଔଜ୍ଜ୍ୱଲ୍ୟରେ ଉଦ୍‌ଭାସିତ ହେବାକୁ ଚାହେଁ। ସନ୍ତାନମାନଙ୍କ ଭିତରେ ନିଜର ଅବଦମିତ କାମନାର ପ୍ରତିଫଳନ ଦେଖିବାର ଆଶାହିଁ ସେମାନଙ୍କୁ ସନ୍ତାନ ପ୍ରତି ଅତ୍ୟଧିକ ନିର୍ଭରଶୀଳ କରିଦିଏ, ଏବଂ ତାହା ପ୍ରତିଫଳିତ ନ ହେଲେ ସେମାନେ ଦୁଃଖରେ ଭାଙ୍ଗି ପଡ଼ନ୍ତି। ପ୍ରତିଫଳିତ ହେଲେ ଅହମିକାରେ ଅନ୍ଧ ହୋଇ ଯାନ୍ତି। ତାଙ୍କର ଏଇ ହୀନମନ୍ୟତା ବା Inferious Complex କଣ ଅବଦମିତ କାମନାର ପ୍ରକାଶ ?

-୦-

# ଶାଲା କଟ୍‌କୀ

ଗଳ୍ପର ଶିରୋନାମା ଦେଖି ଅନେକେ ପ୍ରଥମ ଭାବିନେଇ ପାରନ୍ତି ଯେ ମୁଁ ଜଣେ ସମ୍ବଲପୁର ଅଞ୍ଚଳର ବ୍ୟକ୍ତି ବୋଲି। ତେଣୁ ମୁଁ ପ୍ରଥମରୁ ସୂଚାଇ ଦେବାକୁ ଚାହେଁ ଯେ ପ୍ରକୃତରେ ମୁଁ ଜଣେ ଗଡ଼ଜାତ ଅଞ୍ଚଳର ବାସିନ୍ଦା ଓ ମୋର ପ୍ରିୟ ଧର୍ମପତ୍ନୀ ହିଁ ସମ୍ବଲପୁର ବାସିନୀ। ମୋର ଶ୍ୱଶୁରଙ୍କ ଘର ସମ୍ବଲପୁର ଠାରୁ ଅନତିଦୂରରେ ଥିବା ଗୋଟାଏ ଗ୍ରାମରେ। ଜୀବନରେ ମୁଁ ପ୍ରଥମ ଓ ଶେଷଥର ପାଇଁ ସେ ଗାଁକୁ ଯାଇଥିଲି ମୋର ବିବାହର ଦୁଇବର୍ଷ ପରେ। ତା'ପରେ ଆଉ ଯିବାର ସୁବିଧା ହୋଇନାହିଁ।

ମୋର ଶ୍ୱଶୁରଙ୍କ ବିରାଟ ପରିବାର ଭିତରେ ମୁହିଁ ପ୍ରଥମ ଅଣସମ୍ବଲପୁରୀ ଅନୁପ୍ରବେଶକାରୀ। ମୋର ସହିତ ବିବାହ ନେଇ ସେ ସମୟରେ ତାଙ୍କ ପରିବାରରେ ଏକ ବିରାଟ ଝଡ଼ ସୃଷ୍ଟି ହୋଇଥିଲା। ମୋର ଶ୍ୱଶୁର ଯେ ମୋରି ବିଦେଶୀଟିଏଙ୍କୁ ଜ୍ୱାଇଁ ଭାବରେ ବାଛି ଏକ ଘୃଣ୍ୟ ଓ ନିନ୍ଦିତ କଳଙ୍କିତ କାର୍ଯ୍ୟ କରୁଛନ୍ତି, ଏ ସମ୍ବନ୍ଧରେ ତାଙ୍କୁ ବାରମ୍ବାର ଉପଦେଶ ଓ ଚେତାବନୀ ଶୁଣାଇ ଦିଆଯାଇଥିଲା। କିନ୍ତୁ ସେ ଯେହେତୁ ଏଇ ଉପଦେଶ ନ ମାନି ଓ ଚେତାବନୀ ଓ ଧମକକୁ ଭ୍ରୁକ୍ଷେପ ନ କରି ଏ ବିବାହରେ ଆଗେଇ ଗଲେ ପ୍ରତିବାଦ ସ୍ୱରୂପ ତାଙ୍କ ପରିବାର ଭିତରୁ କେହି ଜଣେ ହେଲେ ବି ଏଇ ବିବାହ ଉତ୍ସବରେ ଯୋଗଦାନ କରି ନଥିଲେ।

ସେହି ସମୟରେ ତାଙ୍କ ପରିବାର ଭିତରେ ହୋଇଥିବା କେତେକ ଉକ୍ତି-ପ୍ରତ୍ୟୁକ୍ତି (କହିବା ବାହୁଲ୍ୟ ପତ୍ନୀକଥିତ) ସର୍ବସାଧାରଙ୍କ ରୋଚକାର୍ଥେ ନିମ୍ନରେ ପ୍ରଦତ୍ତ ହେଲା।

''ବାବୁର ମତିଗତି ଦେଖ୍‌ଲ କିଗୋ ନାନି? ବୁଇର ଲାଗି ଇନେ ବର ନାଇଁ ମିଲ୍‌ବାର କାଏଁ? ସେନ ଚାକ୍‌ରି କରୁଛେ ବୋଲି କଟ୍‌କି ବର୍ କରୁଛେ?''

''କାଣା କହମି ଗୋ—ବାହୁଆ ପଲ୍ଲୀର ସାହାଣୀ ଘର କନିଆଁ ମାଗି ଆସିଥିଲେ। ନାଇଁ କେ ନାଇଁ କର୍‌ଲା।''

ରାୟଗଡ଼ର ମୋର ଭାଇ ଘରଭି, ଆସିଥିଲେ। ବୟଲା, ଏତେ ଦୂର୍‌ରେ ନାଇଁଦିଏଁ। କାଣା ଦୂର୍ ଗୋ। ଆର୍ ଜେନ ଦେଉଛେ ସମଲ୍‌ପୁର୍‌ରୁ ତେତ୍‌କି ଦୂର୍‌ନାଇଁ ହେବା? ଆର୍ ଆମର ଘରର ଝି ସେନ କେନ୍ତାକରି ଚଲ୍‌ବା?

ଇତ୍ୟାଦି ଇତ୍ୟାଦି।

କିନ୍ତୁ ସମସ୍ତଙ୍କର ପ୍ରବଳ ପ୍ରତିବାଦ ଓ ବିରୋଧ ସତ୍ତ୍ୱେ ବି ମୋ ବିବାହ ହୋଇଗଲା ସୁରୁଖୁରରେ। କିନ୍ତୁ ବିବାହ ପୂର୍ବରୁ ମୁଁ ଏ ସମ୍ବନ୍ଧରେ ସାମାନ୍ୟତମ ସୂଚନା ପାଇ ନଥିଲି। ବାହାଘରର କିଛି ମାସ ପରେ ଏ ସମ୍ବନ୍ଧରେ ସବିସ୍ତାର ବିବରଣୀ ଦେଇଥିଲେ ମୋର ଧର୍ମପତ୍ନୀ। ଏହା ଶୁଣିବାପରେ ମୋର ସାମାନ୍ୟ

ଭୟ ମଧ ହେଇଯାଇଥିଲା । ଯାହାହେଉ ବାହାଘରର ଗୋଟାଏ ବର୍ଷ ଭିତରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପାଠ ପଢ଼ିବାକୁ ଆସିଥିବା ଜଣେ ଦୁଇଜଣ ସମ୍ବନ୍ଧୀୟ ଶାଳକ ମାନେ ଯେତେବେଳେ ପ୍ରଥମେ ଅତି କୁଣ୍ଠାରେ ଆସିଥିଲେ ଓ ପରେ ଅତି ସହଜ ହୋଇଗଲେ ମୁଁ ଭାବିଲି ବୋଧହୁଏ କଥାଟାର ଏବେ ସମାଧାନ ହୋଇଗଲା । ମଝିରେ ମଝିରେ ପତ୍ନୀଙ୍କ ଆତ୍ମୀୟମାନଙ୍କ ମଧ୍ୟରୁ କେଇଜଣ ମୋ ଘରକୁ ଆସି ବୁଲିଗଲେ । ସେମାନେ ଦେଖିଲେ ଯେ ମୁଁ ବି ତାଙ୍କ ପରି ଜଣେ ମଣିଷ ଓ ସେମାନଙ୍କର ଆଚାର ବ୍ୟବହାରରେ, ଚାଲିଚଳନ କଥାବାର୍ତ୍ତା ସହିତ ସଂପୂର୍ଣ୍ଣ ଭାବରେ ନହେଲେ ମଧ ଅଧିକାଂଶ ମେଳ ରହିଛି । ମୁଁ ଯେ ଗୋଟାଏ କିମ୍ଭୁତ କିମାକାର, ଭୟଙ୍କର, ଅମଣିଷ ନୁହେଁ ବୋଧହୁଏ ଏ ବିଷୟରେ ତାଙ୍କର ହୃଦ୍‌ବୋଧ ହୋଇଗଲା । କ୍ରମଶଃ ଆଶଙ୍କା, ବିଦ୍ୱେଷ ଓ ଭୟର ପ୍ରତିମୂର୍ତ୍ତି 'କଟ୍‌କି' କୋକୁଆ ଭୟ ତାଙ୍କ ମନରୁ ବିଦୂରିତ ହେଲା ପରି ଅନୁମାନ କଲି ।

ଏହିପରି ଭାବରେ ବିବାହର ଦୁଇବର୍ଷ ସୁରୁଖୁରୁରେ ଅତିବାହିତ ହୋଇଗଲା । ମୋର ଶ୍ୱଶୁରଘର ସଂପର୍କୀୟ ବ୍ୟକ୍ତିମାନେ କ୍ରମଶଃ ଧୀରେ ଧୀରେ ପରିଚିତ ହେବାକୁ ଲାଗିଲେ । ସେମାନେ ନିଜକୁ ଆଶ୍ୱାସନା ଓ ପ୍ରବୋଧ ଦେଲେ ଯେ ଜ୍ୱାଇଁଟି ଯାହାହେଉ ଖାଣ୍ଟି 'କଟ୍‌କୀ' ନୁହେଁ । ଗଡ଼୍‌ଜାତିଆ । ତେଣୁ ପରିବାର ଭିତରେ ଜଣେ ବୋଲି ଗ୍ରହଣ କରିନେବାରେ ଆଉ କିଛି ବିଶେଷ ଆପତ୍ତି ରହିବାର କଥା ନାହିଁ ।

ଠିକ୍ ଏଇ ସମୟରେହିଁ ମୋର ଟୁର୍ ପଡ଼ିଲା ସମ୍ବଲପୁରକୁ । ସ୍ତ୍ରୀ ସେତେବେଳକୁ ଅନ୍ତଃସତ୍ତ୍ୱା ଥିବାରୁ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଜିପ୍-ଭ୍ରମଣ ବିପଦଜନକ ବୋଲି, ସେ ମୋ ସାଙ୍ଗରେ ଆଉ ଯାଇ ପାରିଲେ ନାହିଁ । ଅତଏବ ମୁଁ ଏକାହିଁ ସମ୍ବଲପୁର ଯାତ୍ରା କଲି ଜିପ୍‌ରେ । ସେତେବେଳକୁ ଗାଡ଼ିରେ ଜୁନ୍‌ଠାରୁ ଡ଼ିସେମ୍ବର ମଧ୍ୟରେ ସମ୍ବଲପୁର ଯାତ୍ରା ଚନ୍ଦ୍ରଯାତ୍ରାଠାରୁ ଥିଲା ଆହୁରି ଦୂରହ । କଟକରେ ଡଙ୍ଗାରେ ମହାନଦୀ-ବିରୂପା ପାରହୋଇ ଚୌଦ୍ୱାର ବାଟେ ସମ୍ବଲପୁର ଯିବାକୁ ଲାଗିଥିଲା ପ୍ରାୟ ଚବିଶଘଣ୍ଟା ।

ତାଙ୍କର ପ୍ରିୟ ଗାଁ ଭୂମିକୁ ଦେଖି ନ ପାରିବା ଜନିତ ଦୁଃଖରୁ ସ୍ତ୍ରୀ ବିଷାଦଗ୍ରସ୍ତା ହେଲେ । କିନ୍ତୁ ଆଉ ଉପାୟ ବା କଣ ଥିଲା । ଯିବା ଆଗରୁ ଆସି ଶାଶୁ ତିଆରିଲେ । "ପ୍ରଥମେ ମାମୁଁ ଘରକୁ ଯିବ । ବହୁତ ଭଲ ସେ । ଦେଖିବ ନାଇଁ କେତେ ଆଦର କରିବେ । ବାହାବେଳକୁ ରାଗରେ ସିନା ଆସି ନଥିଲା, ଏବେ କଣ ଆଉ ସେ ରାଗ ଥିବ । ଯେତେହେଲେ ଭାଣିଜି ଜୋଇଁ ତ । ହଁ, ତିନି ମାଉସିଙ୍କ ଘରକୁ ଯିବ । ଦୁଇ ମାଉସୀ ତ ସମ୍ବଲପୁରରେ । ଜଣେ ବରଗଡ଼ରେ । ସମ୍ବଲପୁରରୁ ବରଗଡ଼ କେତେ ବା ବାଟ । ଜିପ୍‌ରେ ଚାଲି ଯିବ ଦିନେ । ସେ ବିଚରା ଚିଠି ଦେଇଥିଲା । ତମକୁ ଦେଖିବାକୁ କେତେ ମନ କରିଛି ।"

ଶ୍ୱଶୁର କହିଲେ "ଟିକେ ଗାଁ ଆଡ଼କୁ ଯାଇ ବୁଲି ଆସିବ । କାକା, ବଡ଼ବାପା ସବୁ ଅଛନ୍ତି । ସମସ୍ତଙ୍କୁ ଦେଖା କରି ଆସିବ । ସେମାନେ ଖୁସିହେବେ । ବାହାଘର

ବେଳେ ସିନା ବିରୋଧ କରୁଥିଲେ କିନ୍ତୁ ତମକୁ ଦେଖିଲା ପରେ ମୋର ମନ ହେଉଛି ତାଙ୍କର ଧାରଣା ସଂପୂର୍ଣ୍ଣ ବଦଳି ଯିବ। ପୁରୁଣା କାଳିଆ ଲୋକତ। ଏପଟେ ଜୀବନରେ କେହି ବନ୍ଧୁ ବାନ୍ଧି ନାହାନ୍ତି। ତେଣୁ ତାଙ୍କର ଆଶଙ୍କା ଓ ଭୟ ରହିବା ସ୍ୱାଭାବିକ। କିଛି ଚିନ୍ତା କରିବ ନାହିଁ। ସେମାନେ ଖୁବ୍ ଖୋଲା ଓ ସରଳ ଲୋକ। ପେଞ୍ଚପାଞ୍ଚ ଜାଣନ୍ତି ନାହିଁ। ତେଣୁ ଟିକିଏ ପେଞ୍ଚୁଆ ଲୋକ ଦେଖିଲେ ସେମାନେ ଖୁବ୍ ଭୟକରି ଯାଆନ୍ତି।''

ଶାଶୁ ଓ ଶ୍ୱଶୁରଙ୍କ ପ୍ରଦତ୍ତ ବିଭିନ୍ନ ଆତ୍ମୀୟମାନଙ୍କ ନାମ ଓ ଘରଠିକଣାର ଲିଷ୍ଟ ଦେଖି ଭାବିଲି, ଯଦି ମୁଁ ସମସ୍ତଙ୍କ ଘରକୁ ଯାଏଁ ତେବେ ବୋଧହୁଏ ସମ୍ବଲପୁରରେ ମୋର ଆଠଦିନ ରହଣି ଭିତରେ ଘଣ୍ଟାଏ ବି ଅଫିସ କାର୍ଯ୍ୟ କରି ପାରିବି ନାହିଁ। ତେଣୁ ଗୁପ୍ତରେ ସ୍ତ୍ରୀଙ୍କୁ ପଚାରିଲି ''ଏଇ ଦୀର୍ଘତମ ତାଲିକା ଭିତରେ ସବୁଠାରୁ ମୁଖ୍ୟ ଚରିତ୍ର କିଏ ଯାହାଙ୍କ ଘରକୁ ନ ଗଲେ ବାପା ଓ ମା ବିଶେଷ ମନ କ୍ଷୁର୍ଣ୍ଣ କରିବେ? ତା ନ ହେଲେ ଏତେଜଣଙ୍କ ଘରକୁ ଯିବା ମୋର ସମ୍ଭବପର ହେବନାହିଁ।'' ସ୍ତ୍ରୀ ଲିଷ୍ଟରୁ ବାଛି ବାଛି ତାଙ୍କ ମନ ମୁତାବକ ନାମ ଗୁଡ଼ିକ ଆଗରେ ନାଲି ଦାଗ ମାରିଦେଲେ। ସେଥିରୁ ଯାହା ଦେଖିଲି ଶତକଡ଼ା ଅଶୀ ଶତାଂଶ ମାତୃ ସଂପର୍କୀୟ ଆତ୍ମୀୟ ଓ ଶତକଡ଼ା କୋଡ଼ିଏ ପିତୃ ସମ୍ବନ୍ଧୀୟ ଆତ୍ମୀୟ। ଯଦିଓ ଏଇ ପାତରଅନ୍ତର ବ୍ୟବସ୍ଥାରେ ମୋର ପ୍ରତିବାଦ କରିବାର ଇଚ୍ଛାଥିଲା କିନ୍ତୁ ଶାନ୍ତି ଦୃଷ୍ଟିରୁ ସେ ସମ୍ବନ୍ଧରେ ମୁଁ ଆଉ ଉଚ୍ଚବାଚ୍ଚ କିଛି ନ କରି ଚୁପ୍ ରହିଲି।

ସିଧା ସଳଖ ଯାଇ ମାମୁଁଶ୍ୱଶୁରଙ୍କ ଘରେ ଓହ୍ଲେଇବା ପାଇଁ, ସ୍ତ୍ରୀଙ୍କର ଅନୁନୟପୂର୍ଣ୍ଣ ଆଦେଶ ଓ ଶାଶୁଙ୍କର ସ୍ନେହପୂର୍ଣ୍ଣ ଅଭିଳାଷ ସତ୍ତ୍ୱେ ମୁଁ ଯାଇ ଡାକବଙ୍ଗଳାରେ ହିଁ ରହିଲି। ଜୀବନରେ ଏଇ ମୋର ପ୍ରଥମ ସମ୍ବଲପୁର ଯାତ୍ରା। ତା ଆଗରୁ ଏଇ ଅଞ୍ଚଳ ଦେଖିବାର ମୋର ସୁଯୋଗ ହୋଇ ନଥିଲା। ସେ ଏକ ବିଚିତ୍ର ଅଭିଜ୍ଞତା। ମୋର ମନେ ହେଲା ମୁଁ ଯେମିତି ମଧ୍ୟପ୍ରଦେଶ କିମ୍ବା ଉତ୍ତର ଭାରତର କୌଣସି ସହରରେ ପହଞ୍ଚି ଯାଇଛି। ପ୍ରାୟ କୋଡ଼ିଏ ଏକୋଇଶ ବର୍ଷ ତଳର କଥା ଏ।

ଦୋକାନରେ ପ୍ରାୟ ଅଧିକାଂଶ ହିନ୍ଦୀ ଓ କିଛି ଇଂରାଜୀ ସାଇନ୍‌ବୋର୍ଡ଼। କାଁ ଭାଁ କେଉଁଠି ଗୋଟାଏ ଦୁଇଟା ଓଡ଼ିଆରେ ଲେଖା। ପାନଦୋକାନ, ହୋଟେଲ, ରାସ୍ତାଘାଟ ସବୁଠି ସ୍ଥାନୀୟ ଭାଷା ଓ ତାପରେ ହିନ୍ଦୀ ଭାଷାର ପ୍ରଚଳନହିଁ ବେଶୀ। ଓଡ଼ିଆ କହିଲେ ସମସ୍ତେଯେମିତି କେମିତି ଗୋଟାଏ ଅଦ୍ଭୁତ ଦୃଷ୍ଟିରେ ଦେଖୁଛନ୍ତି ବୋଲି ମୋର ଧାରଣା ହେଲା।

ଅଫିସ୍ ଗୁଡ଼ିକରେ ପରିସ୍ଥିତି କିନ୍ତୁ ସବୁ ଓଲଟା। ଅଳ୍ପ କେତେଜଣ ସ୍ଥାନୀୟ କର୍ମଚାରୀଙ୍କୁ ଛାଡ଼ିଦେଲେ ବାକି ଅଧିକାଂଶ ଅଫିସର ଓ କର୍ମଚାରୀ ସବୁ ଉପକୂଳବର୍ତ୍ତୀ

ବା ଅନ୍ୟାନ୍ୟ ଅଞ୍ଚଳର ଲୋକ। ତେଣୁ ଅଫିସ ଭିତରେ ଶୁଦ୍ଧ ଓଡ଼ିଆ ଭାଷାର ଚଳଣି ସ୍ୱାଭାବିକ।

କଥାଟା ପ୍ରଥମରୁହିଁ ମୋତେ କେମିତି ବିସଦୃଶ ଲାଗିଲା। ଶତକଡ଼ା ଅନେଶତ ଭାଗ ଦୋକାନ ବ୍ୟବସାୟ ହିନ୍ଦୀ, ପଞ୍ଜାବୀ ଲୋକମାନଙ୍କର। ଶତକଡ଼ା ସତୁରି କି ଅଶୀ ଭାଗ କର୍ମଚାରୀ ଉପକୂଳବର୍ତ୍ତୀ ଅଞ୍ଚଳର। ସମ୍ବଲପୁର ସହର ଯେମିତି, ସମ୍ବଲପୁରବାସୀଙ୍କ ଛଡ଼ା ଅନ୍ୟମାନଙ୍କର।

ମୋର ଶ୍ୱଶୁରଙ୍କ ପରିବାରର ପୁଞ୍ଜୀଭୂତ ବିଦ୍ୱେଷ ଓ ଆକ୍ରୋଶର କଥା ମୁଁ ଯେମିତି ଟିକିଏ ଟିକିଏ ବୁଝିବାକୁ ଆରମ୍ଭ କଲି।

ବ୍ୟବସାୟୀମାନେ କିନ୍ତୁ ଭାରି ଚାଲାକ୍। ନହେଲେ ବ୍ୟବସାୟ କରିବେ କେମିତି ? ପହଞ୍ଚିଲେ ଆଗେ ପ୍ରଶ୍ନ କରିବେ ସମ୍ବଲପୁରୀ ଭାଷାରେ। ଦି ପଦ ପରେ ଆରମ୍ଭ କରିବେ ହିନ୍ଦୀରେ। ସ୍ଥାନୀୟ ଲୋକଟି ଆପଣେଇ ହୋଇଯାଏ। ଭାଷାର ମମତାର ମୋହରେ ତାକୁ ଆପଣାର ଲୋକ ବୋଲି ଭ୍ରମ କରେ। ଠକିଯାଏ ସିନା ଠକିଛି ବୋଲି ଭାବିପାରେ ନାହିଁ।

ଯେ କୌଣସି ଗ୍ରାମ, ଜିଲା, ପ୍ରଦେଶ ବା ଦେଶ ଗର୍ବିତ ହୁଏ ତାର କୀର୍ତ୍ତିମାନ୍ ସନ୍ତାନମାନଙ୍କ ପାଇଁ ବା ତାର ଅତୀତର ଐତିହ୍ୟ ପାଇଁ। ସେତେବେଳ ପର୍ଯ୍ୟନ୍ତ ସମସ୍ତ ପଶ୍ଚିମାଞ୍ଚଳର ଗ୍ରାମୀଣ ତଥା ସହରୀ ବ୍ୟକ୍ତିର ଅନ୍ତଃକରଣକୁ ସ୍ପର୍ଶକରି ପାରୁଥିବା (ଗଙ୍ଗାଧର ମେହେରଙ୍କୁ ଛାଡ଼ିଦେଲେ) କୌଣସି କିର୍ତ୍ତୀମାନ୍ ସନ୍ତାନ ଜନ୍ମ ନେଇ ନଥିଲେ। ପଶ୍ଚିମାଞ୍ଚଳର ଐତିହାସିକ ବୀରପୁରୁଷ ସୁରେନ୍ଦ୍ର ସାଏ ପ୍ରାୟ ଅଜ୍ଞାତ। ତେଣୁ ସମସ୍ତ ସାଧାରଣ ମଣିଷ ଏଇ ଭାଷା ମାଧମରେ ହିଁ ତାଙ୍କର ସ୍ୱୀକୃତି ଖୋଜୁଥିଲେ। ସମ୍ବଲପୁରୀ ଭାଷାହିଁ ତାଙ୍କର ଏକ ସୂତ୍ରରେ ବାନ୍ଧି ରହିବାର ଏକମାତ୍ର ଯୋଗସୂତ୍ର। ସେଇଥି ପାଇଁ ବୋଧହୁଏ ସମସ୍ତଙ୍କ ଅବଚେତନ ମନରେ ଏଇ ଭାଷା ପ୍ରତି ତାଙ୍କର ଏତେ ଆନ୍ତରିକତା, ଏତେ ନିବିଡ଼ତା ଏବଂ ସେମାନେ ଏଥିପାଇଁ ସବୁଠାରୁ ବେଶୀ ସ୍ପର୍ଶକାତର। ସେମାନେ ନିଜର ଅପମାନ ନିର୍ବିବାଦରେ ସହ୍ୟ କରି ପାରିବେ, ଭାଷାରେ ନୁହେଁ। ବିହାରୀ ହେଉ, ବଙ୍ଗାଳୀ ହେଉ, ମାରୁଆଡ଼ି ହେଉ, ପଞ୍ଜାବୀ ହେଉ, ଯେ ସେ ଭାଷାରେ କଥା କହି ଶିଖିଲା ସେ ହେଲା ଏକାନ୍ତ ଆପଣାର କିନ୍ତୁ ଯେ କୁହେ ନାହିଁ, ବା ବିଦ୍ରୁପ କରେ ସେ ସେମାନଙ୍କର ସବୁଠାରୁ ବଡ଼ ଶତ୍ରୁ। ଭାଷା ପ୍ରତି ବିଦ୍ରୁପ ତାଙ୍କର ବଞ୍ଚି ରହିବାର ମୂଳଭିତ୍ତି ଉପରେ ପ୍ରଚଣ୍ଡ ଆଘାତ।

ମୁଁ ସେଇ ଅଫିସ ଭିତରେ ହିଁ ଅନୁମାନ କରିନେଲି ଯେ ଉପକୂଳବର୍ତ୍ତୀ ପ୍ରାୟ ସମସ୍ତ କର୍ମଚାରୀମାନଙ୍କ ଭିତରେ ସେଇ ବିଦ୍ରୁପ ଭାବ ରହିଛି ଏବଂ ସେମାନେ ତାଙ୍କୁ ଲୁଚାଇବାକୁ ସାମାନ୍ୟତମ ପ୍ରଚେଷ୍ଟା ମଧ୍ୟ କରୁନାହାନ୍ତି। ସେମାନେ ଓଡ଼ିଆ

ଭାଷାକୁ ଜାଣିଛନ୍ତି—କିନ୍ତୁ ତାର ଉପଭାଷା ଭିତରେ ଥିବା ଆତ୍ମିକ ବନ୍ଧନର ନିଗୂଢ଼ତାକୁ ଜାଣି ପାରିନାହାନ୍ତି ବା ଜାଣିବାକୁ ଚେଷ୍ଟା କରିନାହାନ୍ତି। ସେଇ ସ୍ପର୍ଶକାତର ସଚେତନର ବିନ୍ଦୁଟିର ଉପରେ ଜଣା ବା ଅଜଣା ଭାବରେ ହେଉ ସେମାନେ ଆଘାତ କରୁଥିଲେ ପ୍ରତି ମୁହୂର୍ତ୍ତରେ। ସମ୍ବଲପୁରରେ ଓଡ଼ିଆ ଭାଷା ଧୀରେ ଧୀରେ ବିଦେଶୀ ହୋଇ ଯାଉଥିଲା ଏଇମାନଙ୍କ ଯୋଗୁଁ।

ସମ୍ବଲପୁରରେ ପ୍ରଥମ ଦିନ ରହଣି ଅଫିସ କାର୍ଯ୍ୟରେ ହିଁ କଟିଗଲା। ସନ୍ଧ୍ୟାରେ କ୍ଳାନ୍ତି ଯୋଗୁ ମୋର ଆଉ କୁଆଡ଼େ ଯିବାର ଇଚ୍ଛା ହେଲା ନାହିଁ। ଠିକ୍ କଲି ପରଦିନ ସନ୍ଧ୍ୟାବେଳେ ହିଁ ମୋର ଆତ୍ମୀୟ ପରିଚୟ ପର୍ବର ଶୁଭାରମ୍ଭ କରିବି।

ତା ପରଦିନ ଠିକ୍ ଚାରିଟା ବେଳକୁ ମୁଁ ବାହାରିଲି ପ୍ରଥମେ (ଶାଶୁ ଓ ପତ୍ନୀଙ୍କ ଆଦେଶନାମାକୁ ଶିରୋଧାର୍ଯ୍ୟ କରି) ମାମୁଁ ଶ୍ୱଶୁରଙ୍କ ଘରକୁ। ଲକ୍ଷ୍ମୀ ଟକିଜ କଡ଼ର ଗୁଜୁରାଟୀ (ନା ମାରୁଆଡ଼ି) ଦୋକାନରୁ କିଛି ପେଡ଼ା ଓ ବରଫି ଧରି ଡ୍ରାଇଭରକୁ ନିର୍ଦ୍ଦେଶ ଦେଲି ସେଇ ଠିକଣାରେ ଯିବାକୁ।

ନଭେମ୍ବର ମାସ। ଶୀତ ପଡ଼ି ଯାଇଥାଏ। ସଞ୍ଜ ହେବାକୁ ଅଳ୍ପ ସମୟ ବାକୀ ମୋର ଡ୍ରାଇଭର ଆମ ଡ଼ିପାର୍ଟମେଣ୍ଟରେ ଯୋଗ ଦେଲା ଆଗରୁ ହୀରାକୁଦରେ ପାଞ୍ଚ ବର୍ଷ ରହିଥିଲା। ତେଣୁ ସମ୍ବଲପୁରରେ ରାସ୍ତାଘାଟ ସମ୍ବନ୍ଧରେ ତାଙ୍କୁ ସବୁ ଜଣା। ଅତଏବ ମୁଁ ନିଶ୍ଚିତ ହୋଇ ବସିଥାଏ।

ଆମ ଠିକଣା ଜାଗାର ଠିକ୍ ଦୁଇ ଫର୍ଲଙ୍ଗ ଦୂରରେ ବଡ଼ ରାସ୍ତାରୁ ମୋଡ଼ ବୁଲି ଗଳିରେ ପଶିବା କଥା। ଠିକ୍ ଡ୍ରାଇଭର ମୋଡ଼ ବୁଲିଛି କି ନାହିଁ ହଠାତ୍ ଘଟିଲା ଅଘଟଣଟି। ଘର ଭିତରୁ ଗଳି ଭିତରକୁ ଡ଼େଇଁ ପଡ଼ିଲା ଛଅ ସାତ ବର୍ଷର ପିଲାଟିଏ। ମୁଁ ଭୟରେ ଆଖି ବୁଜିଦେଲି ଡ୍ରାଇଭର ପ୍ରାଣ ବିକଳରେ ବ୍ରେକ୍ କଷିଲା।

ମୁହୂର୍ତ୍ତକ ମଧ୍ୟରେ ପିଲାଟିର ଚିତ୍କାର ସରୁ ନ ସରୁଣୁ ଘେରି ଗଲେଣି ଲୋକେ। ମୁଁ ସିଟ୍ ଉପରେ ସ୍ଥାଣୁ ହୋଇ ବସିଥାଏ। ଡ୍ରାଇଭର ମଧ୍ୟ ଗାଡ଼ି ଛାଡ଼ି ଦେଇ ଦୌଡ଼ି ପଳେଇବାକୁ ମନସ୍ଥ କରୁ କରୁ ଲୋକ ତା ସାମ୍ନାରେ ଛିଡ଼ା ହୋଇ ଗଲେଣି। ମୁଁ ଭାବିଲି ପିଲାଟି ବୋଧହୁଏ ମରିଗଲାଣି। ମୋର ଆକ୍ସିଡ଼େଣ୍ଟ ଦେଖିବାକୁ ଭୀଷଣ ଭୟ। କେମିତି ଏତେ ପାଖରେ ଦେଖିବି ସେକଥା ଭାବି ମୋ ଦେହରୁ ଗୋଟାପଣ ଝାଳ ବାହାରି ଯାଉଥାଏ। ଯାହେଉ ଡ୍ରାଇଭର ଜାଣିପାରିଲା ବୋଧେ କିଛି ହୋଇନି। ସେ ବାହାରକୁ ଆସି ଦେଖେତ ପିଲାଟି ତଳେ ପଡ଼ିଛି—ଚକଠାରୁ ଚାଖଣ୍ଡେ ଦୂରରେ ଗାଡ଼ି ବାଜି ନାହିଁ। ଦୁଇ ହାତକୁ ମୁଣ୍ଡରେ ଲଗେଇ ମୋତେ କହିଲା 'ସାର୍ କିଛି ହୋଇନାହିଁ।' ତା ପରେ ମୁଁ ବାହାରିଲି ବାହାରକୁ। ପିଲାଟିକୁ ତା ମା ବୋଧହୁଏ ଟେକିନେଇ ଯିବାକୁ ଆସିଲା। ଏତିକିବେଳେ କାହାର ବଜ୍ର ଗମ୍ଭୀର କଣ୍ଠ ଶୁଣାଗଲା। କାଣ୍ ହେଲା ବୋ, ମରିଗଲା କାଏଁ? ଶଳା ଡ୍ରାଇଭର୍‌କେ ଧର ବୋ।' ଆମେ

ପଛକୁ ଚାହିଁ ଦେଖୁ ତ ଜଣେ ତେଇଶି ଚବିଶ ବର୍ଷର ବଳିଷ୍ଠ ଯୁବକ। ପଛରେ ଆଉ ଚାରି ପାଞ୍ଚଜଣ ସେତେବେଳକୁ ହୋ ହୋ ଚିତ୍କାର ବେଶ ଜମି ସାରିଥାଏ। ସେମାନଙ୍କ ଭିତରୁ ଜଣେ ଆସି ବିନା ବାକ୍ୟରେ ଡ୍ରାଇଭରର କଲର ଧରି ବସେଇ ଦେଲା ଗୋଟାଏ ମୁଥି।

ମୁଁ ସେତେବେଳକୁ ଆଗେଇ ଯାଇ କହିଲି ''ଆରେ ତାକୁ ମାରୁଛ କାହିଁକି? ପିଲାର ତ କିଛି ହୋଇନି।''

ଡ୍ରାଇଭର ମୋର ସାହାସ ପାଇ ନିଜକୁ ଛଡ଼େଇ ନେଇ ସମ୍ବଲପୁରୀ ଭାଷାରେ ତାର ବୟାନ ଦେବାକୁ ଆରମ୍ଭ କଲା। ସଙ୍ଗେ ସଙ୍ଗେ ଜନତା ଭିତରୁ ଅଧିକାଂଶ ତାକୁ ସର୍ପୋଟ ମଧ୍ୟ କରିଗଲେ। ସେ ଯେ ଖୁବ୍ ଧୀରେ ଧୀରେ ଆସୁଥିଲା, ହର୍ଣ୍ଣଦେଇଥିଲା। ଏଇ କଥା ଠିକ୍ ବୋଲି ସେମାନେ ସାକ୍ଷ୍ୟ ଦେଇଦେଲେ। ପିଲାଟାର ଯେ ଦୋଷ ଅଛି ଏକଥା ମଧ୍ୟ ସେମାନେ କହିବାକୁ ପଛେଇଲେ ନାହିଁ। ସେଇ ଦଳକଯାକ ଅଧେ ଜନତାର ସହାନୁଭୂତି ଯେ ଡ୍ରାଇଭର ପକ୍ଷରେ ଯିବ ଭାବି ନଥିଲେ। ଭାଷା ଶୁଣି ସେମାନେ ବି ଟିକିଏ ନରମି ଗଲା ପରି ମନେହେଲା। ତେଣୁ ମୁଁ ଏଇ ସୁଯୋଗରେ କହିଲି ''ଯାହା ହେଉ, କିଛି ତ ହୋଇନି। ସେ ନିଜେ ପଡ଼ି ଯାଇଛି। ତେଣୁ ଆମକୁ ଛାଡ଼ି ଦିଅନ୍ତୁ। ଆମେ ଯାଉଁ।'

ବାସ୍।

ନିଆଁରେ ଘିଅ ପକେଇଦେଲି କି ଆଉ? ନିଶ ମୋଡ଼ି ମୋଡ଼ି ଜଣେ ମୋ ପାଖକୁ ଆସି କହିଲା ''ଛାଡ଼ି ଦେମୁଁ? ପଲାବ? ବାବୁର ଓଷଦ ଖର୍ଚ୍ଚା କିଏ ଦେବା? ପକା ପଚାଶ ଟଙ୍କା ନହେଲେ ଗାଡ଼ିକି ନାଇଁ ଛାଡ଼ୁ। ଭାଙ୍ଗି ଗୁଁଡ୍‌ଗୁଁଡ଼ା କରିଦେମୁଁ।''

ମୁଁ କହିଲି ''ଦେଖନ୍ତୁ, ଏଇଟା ସର୍କାରୀ ଗାଡ଼ି। କିଛି କ୍ଷତି ହେଲେ ଆପଣମାନେ ଦାୟୀହେବେ। ଆଉ ପିଲାର ଦିହରେ ତ ଗାଡ଼ି ବାଜିନାହିଁ ମୁଁ ଟଙ୍କା କାହିଁକି ଦେବି? ଯଦି ଆପଣମାନଙ୍କର କିଛି ଅଭିଯୋଗ ଥାଏ ତେବେ ଥାନାକୁ ଚାଲନ୍ତୁ।''

ଭିଡ଼ ଭିତରୁ କିଏ ଜଣେ ଚିତ୍କାର କଲା''ଶଳା କଟ୍‌କୀ ଅଛେ ବେ? ଆଇନ୍ କାଢୁଛେ? ଏୟ୍ ତିର୍‌ବି, ଗୁଟେ ଆଇନ୍ ଦେ ତ।

ମୁଁ କିଛି ବୁଝିବା ଆଗରୁ କାନମୁଣ୍ଡାରେ ବାଜିଲା ଗୋଟାଏ ମୁଥି। ତାପରେ ମାର୍‌ଶଳା କଟ୍‌କୀକେ'' କହି ଆଉ ଚାରି ଜଣ ମାଡ଼ି ଆସିଲେ ମୋ ଆଡ଼କୁ। ପ୍ରଥମ ଦୁଇ ଚାରିଟା ବିଧା ଓ ଘୁଷି ମନେ ଅଛି। ତାପରେ ମୋର ହୋସ ଆସିଲା ବେଳକୁ ମୁଁ ଡାକ୍ତରଖାନାରେ।

ଡ୍ରାଇଭର ପାଖରୁ ମୁଁ ଶୁଣିଲି ଯେ ସେଇ ଦୁଇ ଚାରିଟା ଘୁସିରେହିଁ ମୁଁ ସଂଜ୍ଞାହୀନ ହୋଇ ପଡ଼ିଥିଲି। ଆହୁରି ହୁଏତ ହୋଇଥାନ୍ତା କିନ୍ତୁ ସେତେବେଳକୁ

ମୋର ଶାଳକ ପ୍ରବର (ମୋର ମାମୁଁ ଶ୍ୱଶୁରଙ୍କ ପୁଅ ଓ ଭୁବନେଶ୍ୱରରେ ପଠନରତ), ଅକସ୍ମାତ ସେଇ ରାସ୍ତାରେ ଆସୁଥିବା ବେଳେ ମୋତେ ଚିହ୍ନିପାରି "ଆମ୍ଭର ଜୋଇଁ ବ, ଛାଡ଼ିଦିଅ" କହି ସେଇ ଜିପ୍‌ରେ ଡାକ୍ତରଖାନ ନେଇ ନ ଆସିଥିଲେ ବୋଧହୁଏ ମୋର ଡାକ୍ତରଖାନାରେ ବେଶ୍ କିଛି ଦିନ ରହିବାକୁ ପଡ଼ିଥାନ୍ତା।

ଖବର ପାଇ ସନ୍ଧ୍ୟାବେଳକୁ ମୋର ଶ୍ୱଶୁରଙ୍କ ପରିବାରର ଅଧିକାଂଶ ସଦସ୍ୟ ଡାକ୍ତରଖାନାରେ ପହଞ୍ଚି ଯାଇଥିଲେ। ମାମୁଁ ଶ୍ୱଶୁର ପ୍ରଥମରୁ ଆସି ଡାକ୍ତରମାନଙ୍କୁ ଧରି ପ୍ରାଥମିକ ସାହାଯ୍ୟ ଦାନ ତଥା ଏକ୍ସ୍‌ରେ ଇତ୍ୟାଦି କରି ଜଣାଇ ଦେଲେ ଯେ ସାମାନ୍ୟ ଆଘାତ ଛଡ଼ା ମୁଁ ବିପଦମୁକ୍ତ। କାନମୁଣ୍ଡଟା ଆବୁ ପରି ଫୁଲି ଯାଇଥାଏ। ଗୋଟାଏ ପଟ ଆଖି ମଧ ସେମିତି ଫୁଲି ଯାଇଥାଏ। ଦେହ ହାତରେ ପ୍ରଚଣ୍ଡ ଦରଜ ଥାଏ।

ଖବର ପାଇ ମୋର ବନ୍ଧୁ ସିଭିଲି ଏସ୍ ଡ଼ି ଓ ସାଙ୍ଗରେ ଡ଼ି ଏସ୍ ପିଙ୍କୁ ଧରି ମଧ ପହଞ୍ଚି ଗଲେ ଡାକ୍ତରଖାନାରେ। ଥାନା ଇନ୍‌ସ୍‌ପେକ୍ଟର ମଧ ପହଞ୍ଚିଥାନ୍ତି। ଅଫିସରଙ୍କୁ ମାଡ଼ ହେବା ପ୍ରଥମ ଘଟଣା। ମୋର ଡ୍ରାଇଭର ଇତିମଧ୍ୟରେ ଯାଇ ଥାନାରେ ଖବର ଦେଇ ଏଇ ସବୁ କାଣ୍ଡ ଭିଆଇ ସାରିଛି।

ପ୍ରାୟ ସନ୍ଧ୍ୟା ଆଠଟା ହେବ। ମୋତେ ସେତେବେଳକୁ ଟିକିଏ ସୁସ୍ଥ ଲାଗୁଥାଏ। ଏସ୍ ଡ଼ି ଓ ପ୍ରଶାନ୍ତ କହିଲା "ତମେ ବ୍ୟସ୍ତ ହେବ ନାହିଁ। ମୁଁ ଡ଼ି ଏସ୍ ପିଙ୍କୁ ବି କହିଦେଇଛି। କାଲି ସକାଳ ସୁଦ୍ଧା ସମସ୍ତଙ୍କୁ ରାଉଣ୍ଡ ଅପ୍ କରାଯିବ। ତମେ ଖାଲି ଚିହ୍ନେଇ ଦେବ। will see those rescals."

ଯୋଗକୁ ଥାନା ଇନିସ୍‌ପେକ୍ଟର ମୋର ଜଣେ କକାଶ୍ୱଶୁର ହେବେ। ସେ ମୋ କାନ ପାଖେ ପାଖେ ଫୁସ୍ ଫୁସ୍ କରି କହିଲେ, 'ଦେଖବାବୁ, ବଡ଼ା ଭୁଲ ହୋଇଗଲା। ଯେ ତମକୁ ମାରିଛି ସେ ମୋର ପୁତୁରା ତ୍ରିବିକ୍ରମ୍। ତାକୁ ଏଇନା ମୁଁ ଘରେ ପୁରେଇ ଧୁମ୍ ମାରି କରି ଆସିଛି। କେଶ୍ ହେଲେ କଥାଟା ଅଲଗା ହେବ। ତମ ଶାଶୁ ଶ୍ୱଶୁରଙ୍କ ଆଗରେ ଆମେ ଆଉ ମୁହଁ ଦେଖେଇ ପାରିବା ନାହିଁ। ସମସ୍ତଙ୍କୁ ନିନ୍ଦା।"

ମୁଁ ପ୍ରଶାନ୍ତକୁ କହିଲି, "ନାଇଁ ଭାଇ ଥାଉ। ମୋର ବାହାଘରରେ ଶଳାମାନେ ତ ଯାଇ ନଥିଲେ। ତେଣୁ ତାଙ୍କର 'ବିଧାତା' ପ୍ରାପ୍ୟ ଥିଲା। ଏଇଠି ଦେଇଦେଲେ।"

ପ୍ରଶାନ୍ତ ଓ ଅନ୍ୟମାନେ ହୋ ହୋ ହୋଇ ହସି ଉଠିଲେ। ରାତି ନଅଟା ବେଳକୁ ମୁଁ ଡାକ୍ତରଖାନାରୁ ଛୁଟି ପାଇ ସିଧା ଓହ୍ଲାଇଲି ମାମୁଁ ଶ୍ୱଶୁରଙ୍କ ଘରେ।

ଉଦ୍ଧାରକାରୀ ଶାଳକ ଫକୀର ଚନ୍ଦ୍ର ପଚାରିଲେ, "ଜୋଇଁ, ଆଉ କାଟୁଛି ?"

ମୁଁ କହିଲି "ନାଇଁଗୋ ଶଳା, ମାଡ଼୍ ଆଉ ନାଇଁ କାଟେ। ତେବେ 'ଶଳା କଟ୍‌କୀ'ଟା ବଡ଼ା କାଟୁଛେ।"

-୦-

# ଗଣ୍ଠି

ଟାଇର ନଟ୍‌ଟିକୁ ଠିକ୍ କରୁ କରୁ ଅସୀମର ହଠାତ୍ କାହିଁକି ମନେହେଲା ମଣିଷ ନିଜ ପାଇଁ କେତେ ସମୟ ବଞ୍ଚେ ?

କମ୍ପାନୀର ଚେଆର୍‌ମେନ୍ ମି: ମୋଦୀ ଏ ସବୁ ବେଶ ପୋଷାକ ପ୍ରତି ଭାରି ରକ୍ଷଣଶୀଳ। ଯଦି କେହି ଠିକ୍ ଭାବରେ ସୁଟ୍‌ଟା ନ ପିନ୍ଧିଛି, ଟାଇ ନଟ୍‌ଟା ଯଦି ଠିକ୍ ନ ହୋଇଛି, ଯଦି ସୁଟ୍ ସାଙ୍ଗରେ ଟାଇଟା ମେଚିଂ ନ ହୋଇଛି, ଯୋତା ଯଦି ଚିକ୍‌ମିକ୍ ନ ମାରୁଛି, ଭୀଷଣ ବିରକ୍ତ ହୁଅନ୍ତି। ଏ ସବୁ କ୍ରମାଗତ ଅବହେଳା ଫଳରେ ଜଣେ ଦି ଜଣଙ୍କର ଚାକିରୀ ଯିବା କଥା ସେ ଜାଣେ। ଗୋଟାଏ ଅଦ୍ଭୁତ ଅବସେସନ୍ ତାଙ୍କର ଏଇ ଡ୍ରେସ୍ ପ୍ରତି।

ଆଉ ଏଇ କଥାଟା ଜାଣେ ବୋଲି ଅସୀମର ଯେତେକ ଟେନ୍‌ସନ। ସବୁଦିନ ତାର ଟାଇ ନଟ୍‌ଟା ଠିକ୍ ପଡ଼େ ଅଥଚ ଠିକ୍ ଆଜି ପରା ଦିନରେ ତାର ସବୁ ଗୋଳମାଳ ହୋଇଯାଏ। ଗୋଟାଏ ଅଜଣା ଅସ୍ଥିରତାରେ ତାର ଅଭ୍ୟସ୍ତ ହାତ ଗୁଡ଼ାକ ବି କେମିତି ବିଶ୍ୱାସ ଘାତକତା କରନ୍ତି।

ସେ ଚିତ୍କାର କରି ଡାକିଲା "ସୁମିତ୍ରା, ଟିକେ ଶୁଣିଲ।" ଏମିତି ଦିନମାନଙ୍କରେ ସେ ସୁମିତ୍ରାର ସାହାଯ୍ୟ ବିନା କିଛି କରିପାରେ ନାହିଁ।

ଅବଶ୍ୟ ସମୟ ହୋଇନାହିଁ। ପ୍ଲେନ୍ ଆସିବ ନଅଟା ବାଉନ୍‌ରେ। ବର୍ତ୍ତମାନ ସାଢ଼େ ଆଠଟା। ଏରୋଡ୍ରାମ୍ ପହଞ୍ଚିବାକୁ ପନ୍ଦର ମିନିଟ୍। ସେ ସାଢ଼େ ନଅଟା ବେଳକୁ ଗଲେ ବି ଚଳିବ। କିନ୍ତୁ ନା, ତାକୁ ନଅଟା ବେଳକୁ, ଖୁବ୍ ବେଶୀ ହେଲେ ନଅଟା ପନ୍ଦର ବେଳକୁ ବାହାରି ଯିବାକୁ ପଡ଼ିବ। ବାଟରେ ଯଦି ଗାଡ଼ି ଖରାପ ହୋଇଯାଏ—କିମ୍ବା କିଛି ଗୋଟାଏ ଆକ୍‌ସିଡ଼େଣ୍ଟ ହୋଇଯାଏ। ନା ଏ ଅସ୍ଥିରତା ଭିତରେ ଜୋର୍‌ରେ ଗାଡ଼ି ଚଳେଇବା ଉଚିତ୍ ନୁହେଁ। ତେଣୁ ଆଗରୁ ଯିବା ହିଁ ଭଲ। ଧୀରେ ସୁସ୍ଥେ। ସେଇଠି ବରଂ ଅପେକ୍ଷା କଲେ ଚଳିବ।

ମଣିଷ କେତେ ସମୟ ନିଜ ପାଇଁ ବଞ୍ଚେ? ନିହାତି ସ୍ୱାର୍ଥପର ମଣିଷଟିଏ ବି କେବଳ ନିଜ ପାଇଁ, ଏକାନ୍ତ ଭାବରେ ନିଜ ପାଇଁ ବଞ୍ଚେ ନାହିଁ। ସେ ତାର ସ୍ତ୍ରୀ, ପ୍ରେମିକା, ପରିବାର, ସନ୍ତାନମାନଙ୍କ ପାଇଁ ହିଁ ଆହରଣ କରେ।

ତା'ର ବର୍ତ୍ତମାନ ପ୍ରବଳ ଇଚ୍ଛା ହେଉଛି ଲୁଙ୍ଗିଟିଏ ମାରି ଅଗଣାରେ ସପ ଉପରେ ବସି ମୁଢ଼ି ପକୁଡ଼ି କଞ୍ଚାଲଙ୍କା ଖାଇବାକୁ। ତା ପରେ କପେ ଗରମ ଚାଁ ପିଇ, ସିଗାରେଟ ଖଣ୍ଡେ ଧରାଇ ସେଇ ସପ ଉପରେହିଁ ଗଡ଼ି ଯିବାକୁ। ତା ପରେ କପେ ଗରମ ଚା ପିଇ, ସିଗାରେଟ ଖଣ୍ଡେ ଧରାଇ ସେଇ ସପ ଉପରେହିଁ ଗଡ଼ି ଯିବାକୁ। ଡିସେମ୍ବର ଶୀତ ସକାଳର ଉଷୁମ ଖରାରେ ଅଳସ

ଭାବରେ ପଡ଼ି ରହିବାକୁ। କିଛି ଭାବନା ନାହିଁ, ଚିନ୍ତା ନାହିଁ, ତରତର ନାହିଁ, ଦକ ଦକ ନାହିଁ। ଚୁପ୍ ଚାପ ଚିନ୍ତାହୀନ ଭାବରେ ଅନେକ ଅନେକ ସମୟ ଧରି ଖାଲି ସେମିତି ପଡ଼ି ରହିବାକୁ।

ଅସୀମ ସାମଲର ସେ ସ୍ୱାଧୀନତା କାହିଁ?

—ହେଇ, ଶୁଣୁଛ'! ତମ ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ରଖି ଦେଲିଣି। ଶୀଘ୍ର ଆସ। ନହେଲେ ଟୋଷ୍ଟ ଗୁଡ଼ା ଥଣ୍ଡା ହୋଇଯିବ। ପୋଚ୍ ଥଣ୍ଡା ହୋଇଯିବ।

ସୁମିତ୍ରା ଡାଇନିଂ ରୁମ୍‌ରୁ ଡ଼ାକ ଛାଡ଼ିଲାଣି।

ଅଥଚ ଟାଇ ନଟ୍‌ଟା ଠିକ୍ ହେବାକୁ ନାହିଁ। ଦି ତିନିଦିନ ଖୋଲି ସାରିବା ପରେ ସେଥିରେ ଭାଙ୍ଗ ପଡ଼ି ଯାଇଛି।

—ସୁମିତ୍ରା, ଆସ ଟିକିଏ—ଏଇ ଟାଇ ନଟ୍‌ଟା—

—ଆଗ ଖାଇସାର। ଗଲାବେଳେକୁ ଠିକ୍ କରି ଦେବିନି! ସବୁକଥାକୁ ତ ଖାଲି ତରତର!

ଅସୀମ ସାମଲ। ଏକ ବିଖ୍ୟାତ ସର୍ବଭାରତୀୟ କମ୍ପାନୀର ଜେନେରାଲ୍ ମେନେଜର୍। ପ୍ରଚୁର ଦରମା। ସେହି ଅନୁଯାୟୀ ସୁଖ ସ୍ୱାଚ୍ଛନ୍ଦ୍ୟ। ଘର, ଗାଡ଼ି, ଟଙ୍କା ପଇସା କୋଉଥିରେ ଊଣା ନାହିଁ। ଅଭାବ ନାହିଁ। ଘରେ ସୁନ୍ଦରୀ ସ୍ତ୍ରୀ। ପୁଅଟିଏ, ଝିଅଟିଏ। ଭଗବାନ ଓ ଭାଗ୍ୟ କୋଉ ଆଡୁ ତାକୁ ଊଣା କରି ନାହାନ୍ତି।

ଅଥଚ ଚେଆରମେନ୍ କମ୍-ମେନେଜିଙ୍ଗ ଡିରେକ୍ଟରଙ୍କ ସାମ୍ନାରେ ଟାଇନଟ୍‌ଟି ପାଇଁ ତାର କେତେ ଭୟ। କେତେ ଉଦ୍‌ବେଗ। ସତେ ଯେମିତି ସେଇନଟ୍‌ଟି ଉପରେ ତାର ଭଗବାନ ଓ ଭାଗ୍ୟ ଉଭୟ ନିର୍ଭର କରୁଛନ୍ତି।

ସୁମିତ୍ରା ଗପି ଚାଲିଛି।

"ମନେ ଅଛି ନା, କାଲି 'ପିକି'ର ସ୍କୁଲରେ 'ଆନୁଏଲ୍ ଡ଼େ'। ଯେମିତି ହେଲେ ଯିବାକୁ ପଡ଼ିବ। ନ ହେଲେ 'ପିକି' ମନ ଦୁଃଖ କରିବ। ଜାଣିଛ ସେ 'ଏଲିସ୍' ରୋଲ କରୁଛି। ତାର ଜାମାପଟା ସବୁ ଆଜି ଆଣିବାକୁ ପଡ଼ିବ। ରିଙ୍କୁର କ୍ଲାସ୍‌ଟିଚର୍ ଖବର ପଠାଇଥିଲେ। ସେ ମେଥ୍‌ସ୍‌ରେ ବହୁତ ଖରାପ କରୁଛି। ଟ୍ୟୁସନ ଦେବାକୁ ପଡ଼ିବ। ଯଦି ତମେ ତମର 'ବସ'କୁ ଆଜି ଡ଼ିନର ପାଇଁ ନିମନ୍ତ୍ରଣ କରିବ ତେବେ ମୋତେ ଅନ୍ତତଃ ଗୋଟାକ ପୂର୍ବରୁ ଖବର ଦେବ। ନହେଲେ ମୁଁ ଜମା ପ୍ରସ୍ତୁତ ହୋଇ ପାରିବିନି। ଗାଡ଼ିଟା ବି ପଠେଇ ଦେବ। ମାର୍କେଟିଂ କରିବାକୁ ପଡ଼ିବ। ପାରିବ ଯଦି ଅବଦୁଲ୍‌କୁ ପଠେଇବ। ବଳିଆ ଦେଇ ଏ କାମ ହେବ ନାହିଁ। ହଁ, ଶୁଣ, ଆସିଲା ବେଳେ ଲଣ୍ଡ୍ରିରୁ ମୋର ଶାଢ଼ୀଗୁଡ଼ା ନେଇ ଆସିବ। ନ ହେଲେ ମୋର ପିନ୍ଧିବାକୁ କିଛି ଭଲ ଶାଢ଼ୀ ନାହିଁ। ହଁ, ଏତେ କରି କହିଲି ଠିକ ସମୟରେ ଘରକୁ ଟଙ୍କାଟା ମନିଅର୍ଡ଼ର କରି ଦେବ। ହେଲା ନାହିଁ। ବାପା

ଚିଠି ଦେଇଛନ୍ତି। ଆଜି କାଲି ଭିତରେ ଯେମିତି ମନିଅର୍ଡ଼ର କରି ଦେବ। ମିନି ଟେଲିଫୋନ୍ କରିଥିଲା—ତାର ସଦଖିଆ ୨୫ ତାରିଖ। ଯେତେହେଲେ ନିଜ ଭଉଣୀ ତମର। ଯିବାକୁ ପଡ଼ିବ। ତା ପାଇଁ ପୁଣି ଶାଢ଼ୀ କିଣିବାକୁ ପଡ଼ିବ। ହଉ, ସେ ତ ଡେ଼ରି ଅଛି। କିନ୍ତୁ ଆଜିକା କଥା ଯେମିତି ଭୁଲି ନ ଯାଅ।''

ଅସୀମ ସାମଲର ନିଜ ପାଇଁ ଭାବିବାର ସମୟ କାହିଁ? ଷ୍ଟେନୋ' ଟେଲିଫୋନ୍ କରିଛି। ''ସାର, ଆଜି ଦଶଟା ବେଳେ ଏମ୍.ଡ଼ିଙ୍କ ଡ଼ିସ୍‌କସନ୍—ସାଢ଼େ ଏଗାରଟା ବେଳକୁ ସେଲସ୍ ରିପ୍ରେଜେଣ୍ଟେଟିଭି ସହିତ ଆଲୋଚନା—ସାଢ଼େ ବାରଟା ଡିରେକ୍ଟର ବୋର୍ଡ଼ ମିଟିଂ। ନ'ଟା ବେଳେ ଫାଇନେସ ସେକ୍ରେଟେରୀଙ୍କ ସହିତ ଆପଏଣ୍ଟମେଣ୍ଟ—''

ନା' ଅସୀମ ସାମଲର ସତରେ ନିଜ ପାଇଁ ଭାବିବାର ସମୟ ନାହିଁ।

ବେଳେବେଳେ ତାର ମନେ ହୁଏ ସେ ପଳେଇ ଯାଆନ୍ତା କେଉଁ ଏକ ଦୁର୍ଭେଦ୍ୟ ଅଗନା ଅଗନି ବନସ୍ତକୁ। ସେଇଠି କୋଟ୍‌ପେଣ୍ଟ୍ ଟାଇ ସବୁ ଫୋପାଡ଼ି ଦେଇ ଖୋଲା ଲଙ୍ଗଳା ହୋଇ ହାଣ୍ଡିଆ କି ସରାପ ପିଇ ଧାଙ୍ଗଡ଼ା ଧାଙ୍ଗଡ଼ୀ ସାଙ୍ଗରେ ନାଚ କରନ୍ତା ନିଶ୍ଚିନ୍ତ ମନରେ। କିମ୍ୱା କେଉଁ ଏକ ନିର୍ଜନ ଦ୍ୱୀପରେ ହେନ୍ତାଳ ବଣର ବେଳାଭୂମି ଭିତରେ ନିଖୋଜ ହୋଇ ଯାଆନ୍ତା। ବାଲୁକା ଶଯ୍ୟା ଉପରେ ଖାଲି ଶୋଇ ଶୋଇ ଆକାଶର ତାରା ଗଣନ୍ତା। ଶୀତୁଆ ହେମାଳ ପବନର ସିକ୍ରାର ଭିତରେ ଅନୁଭବ କରନ୍ତା ସୀମାହୀନ ଅନନ୍ତ ଆକାଶର ନୀଳିମାକୁ। ଆଦିଗନ୍ତ ବିସ୍ତୃତ ନୀଳ-ସବୁଜ ସମୁଦ୍ରର ଅସୀମତା ଭିତରେ ନିଶ୍ଚିହ୍ନ ହୋଇ ଯାଆନ୍ତା।

ସେଇ ଅନନ୍ତ, ସୀମାହୀନ ବିସ୍ତୃତ ଭିତରେ ସବୁ କିଛି ଭୁଲି ଯାଇ ଅନୁଭବ କରନ୍ତା ଅସୀମ ସାମଲ ରୂପାନ୍ତରିତ ହୋଇ ଯାଇ ଆବିଷ୍କାର କରନ୍ତା ନିଜର ବ୍ୟକ୍ତି ଚେତନାଟିକୁ। ନିଜକୁ ଫେରି ପାଆନ୍ତା। ନିଜକୁ ଖୋଜି ପାଆନ୍ତା।

ସାମାଜିକ ଘଟାଟୋପ ଭିତରେ ''ଅସୀମ ସାମଲ'' ଷ୍ଟାମ୍ପ ମରା ବ୍ୟକ୍ତିଟିର ଖୋଳଟିକୁ ଉତାରି ଦେଇ ଫିଙ୍ଗି ଦିଅନ୍ତା ଆକାଶର ତାରଶୂନ୍ୟ ଭିତରକୁ—ସମୁଦ୍ରର ଦିଗହଜା ଗଭୀର ବ୍ୟାପ୍ତି ଭିତରକୁ।

ତା ପରେ ସେଇ ନିଆଁ ଝୁଲ ପରି ଦପ୍ ଦପ୍ କରିଥିବା 'ମୁଁ ଅଛି' ମୁଁ ଅଛି ବୋଲି ଚିତ୍କାର କରୁଥିବା ଚେତନାଟିକୁ ମୁହାଁ ମୁହିଁ ପଚାରନ୍ତା—ତୁ କିଏ? ତୁ କିଏ ?

ପ୍ଲେନ୍ ଆସିବାକୁ ଆହୁରୀ ପଇଁଚାଳିଶ ମିନିଟ୍ ବାକୀ।

ଅଧ ଘଣ୍ଟାଏ ଲେଟ୍।

ଆସିଲା ବେଳେ ଘରଟା ଆଡ଼େ ଟିକେ ବୁଲି ଆସି ପାରିଥାନ୍ତି। ଭଡ଼ାବାଲା ନୋଟିସ୍ ଦେଇ ସାରିଲାଣି। ଆଉ ଜଣେ ଭଡ଼ାଟିଆ ଖୋଜିବାକୁ ପଡ଼ିବ। ଏମିତି ସେମିତି ଲୋକକୁ ଦେଇ ଲାଭ ନାହିଁ। ଘରଟା ନଷ୍ଟ କରି ଦେବ। ତା ଛଡ଼ା

ଏତେ ସୁନ୍ଦର ବଗିଚା। ସମସ୍ତେ ଚାହିଁ ରହନ୍ତି।

ପଚାରନ୍ତି ''ଏଇଟା କାହା ଘର ? କି ସୁନ୍ଦର।''

''ମୋ ଘର'' କହିଲା ବେଳେ ଅସୀମର ଛାତି ଭିତରେ ଗର୍ବ ଗୌରବର ଗୋଟାଏ ଆତ୍ମତୃପ୍ତିର ଭାବ ତାକୁ ବିହ୍ୱଳିତ କରିଦିଏ। ଯେମିତି ତାକୁ ବିହ୍ୱଳ କରେ ତାର ସୁନ୍ଦରୀ ସ୍ତ୍ରୀ କି ଯେତେବେଳେ ଇଣ୍ଟ୍ରୋଡ୍ୟୁସ କରେ ''ମୋ ସ୍ତ୍ରୀ' ବୋଲି।

''ମୋର ସୁନ୍ଦର ଘର, ମୋର ସୁନ୍ଦର ସ୍ତ୍ରୀ, ମୋର ସୁନ୍ଦର ସନ୍ତାନ, ମୋର ସୁନ୍ଦର ରଙ୍ଗର ଗାଡ଼ି। ମୋର ସୁନ୍ଦର ଚେହେରା। ମୋର ମୋଟା ଦରମା ବାଲା ଚାକିରୀ''— ଏ ସବୁ କଥା ଅପରକୁ କହିଲାବେଳେ ସେ ଯେତେ ଆନନ୍ଦ ଅନୁଭବ କରେ, ଏକୁଟିଆ ନିରୋଳାରେ ଭାବି ବସିଲେ କିନ୍ତୁ ତାକୁ ଏତେ ଆନନ୍ଦ ଲାଗେ ନାହିଁ।

ମଣିଷ ବୋଧ ହୁଏ ନିଜକୁ ନିଜେ ନେଇ ଆନନ୍ଦ ପାଏ ନାହିଁ। ତାର ଲୋଡ଼ା ହୁଏ ଅନ୍ୟ ଏକ ତୁଳନୀୟ ବସ୍ତୁ। ଆପେକ୍ଷିକ ସମ୍ବନ୍ଧର ବନ୍ଧନ ଭିତରେ ହିଁ ସେ ଦୋଳାୟିତ। ଆପେକ୍ଷିକତା ନ ହେଲେ, ତୁଳନା ନକଲେ ସେ ସୁଖୀ ହୁଏନା କି ଦୁଃଖୀ ବି ହୁଏନା।

ନ ହେଲେ ମହେନ୍ଦ୍ର ଶତପଥୀର ଘର ଦେଖି ସେ ଏତେ ଦୁଃଖ ପାଇଥାନ୍ତା କେମିତି ? ମହେନ୍ଦ୍ର ତାଠାରୁ ଆହୁରି ସୁନ୍ଦର ଡିଜାଇନ୍‌ର ଘର କରିଚି। ତା ବଗିଚା ଠାରୁ ଆହୁରି ଚମତ୍କାର ବଗିଚା କରିଛି। ସେମିତି ମିସେସ୍ ଅନୀତା ରାଏନା ଦେଖି ବା ସେ ଦୁଃଖ ଅନୁଭବ କରିଥାନ୍ତା କାହିଁକି ? ଅନୀତା ସତରେ ଅପରୂପା। ଶ୍ରୀନଗରର ଝିଅ। ରଙ୍ଗ, ରୂପ; ଫିଗର୍—ଅଜନ୍ତାର ଗୁମ୍ଫାରୁ ଓହ୍ଲେଇ ଆସିଛି ଯେପରି।

ବୋଧ ହୁଏ 'ସୌନ୍ଦର୍ଯ୍ୟ'ରେ ବି ଆନନ୍ଦ ନାହିଁ। ଆପେକ୍ଷିକ ସୌନ୍ଦର୍ଯ୍ୟରେ ହିଁ ନିହିତ ରହିଛି ପ୍ରକୃତି ଆନନ୍ଦ। ଯେତେବେଳେ ଯାଏଁ ଅନୀତା ରାଏନା ପ୍ରେକ୍ଷାପଟକୁ ଆସି ନ ଥିଲେ ସେତେବେଳ ଯାଏଁ 'ସୁମିତ୍ରା' ଆନନ୍ଦର ବସ୍ତୁ ଥିଲା। ସୁଖର ଘର ଥିଲା। ଏବେ ସୁମିତ୍ରାକୁ କେମିତି ନିଷ୍ପ୍ରାଣ ଲାଗେ।

ମିଃ ମୋଦୀ ବୋଧହୁଏ ଏଥର ମି. ରାଏନାଙ୍କ ଘରେ ଡିନର ଅତିଥି ହେବେ। ହାୟ ସୁମିତ୍ରା।

ସୁନ୍ଦର, ସୁପୁରୁଷ ବୋଲି ମଧ୍ୟ କମ୍ ଖାତିର ଥିଲା 'ଅସୀମ ସାମଲ'ର। ଅଥଚ ଅନୀଲ କୁମାର ରାଏନା ଆସିବା ପରେ ତାଙ୍କର ସୌନ୍ଦର୍ଯ୍ୟ ଯେମିତି ମଳିନ ପଡ଼ିଯାଇଛି। ଏବେ ସେ ନିଜକୁ ଦେଖି ପୂର୍ବପରି ଆଉ ଉତ୍‌ଫୁଲ୍ଲିତ ହୋଇ ପାରୁ ନାହାନ୍ତି।

'ସୁନ୍ଦର', 'ସୁନ୍ଦରତର', 'ସୁନ୍ଦରତମ' ଏଇ ଶବ୍ଦ ଗୁଡ଼ାକ ବାୟୁ ମଣ୍ଡଳରେ ଏକ ଫମ୍ପା ଧ୍ୱନି ମାତ୍ର। କିନ୍ତୁ ବ୍ୟକ୍ତିଗତ ସାମାଜିକ ଜୀବନରେ ଏଇ ଶବ୍ଦ ଗୁଡ଼ିକ ଯେ କେତେ ବିଦ୍ରୋହ, ବିଦ୍ୱେଷ ସୃଷ୍ଟି କରନ୍ତି ଭାବିଲେ ଆଶ୍ଚର୍ଯ୍ୟ ଲାଗେ।

କଣ ହେଲା ସେଇଠୁ ଯଦି ଅନୀଲ ରାଏନା ସୁନ୍ଦରତର ? କ'ଣ ଭାସିଗଲା ସେଇଠୁ ଯଦି ଅନୀତା ସୁମିତ୍ରା ଠାରୁ ସୁନ୍ଦର !

ଅସୀମ ସାମଲ ସୁନ୍ଦର।

ସୁମିତ୍ରା ସାମଲ ସୁନ୍ଦର।

ଅଥଚ ଅସୀମ ସାମଲ କି ସୁମିତ୍ରା ସାମଲ ତାକୁ ନେଇ ସୁଖୀହୋଇ ପାରନ୍ତି ନାହିଁ।

ମନର କୋଉ କୋଣରେ ଈର୍ଷାର କଣ୍ଟାଟିଏ ଖଚ୍‌ଖଚ୍ କରେ। ସୌନ୍ଦର୍ଯ୍ୟର ଫୁଲରେ ପୋକ ଧରିଯାଏ। ସୌନ୍ଦର୍ଯ୍ୟହିଁ ବିସ୍ୱାଦର କାରଣ ହୋଇଯାଏ।

ନା, ଏଥର ଆଉ କିଛି ଭାବିବ ନାହିଁ ଅସୀମ ସାମଲ। କାହା କଥା ନୁହେଁ। ସେ ନିଜେ ନିଜ କଥାହିଁ ଭାବିବ। ସାରା ଜୀବନ ଖାଲି ବେଠି ବେଗାରି କରି ଆସିଛି ସେ। ବାପା ମା ବନ୍ଧୁ ବାନ୍ଧବର ବେଗାରି ଖଟିଛି। ସ୍ତ୍ରୀ ସନ୍ତାନର ବେଗାରୀ ଖଟୁଛି। ତାର ସହକର୍ମୀ ଚେୟାରମେନ ଅଧସ୍ତନ କର୍ମଚାରୀ ସମସ୍ତଙ୍କର ବେଗାରୀ ଖଟୁଛି ସେ। ସମାଜର ବେଗାରୀ, ଦେଶର ବେଗାରୀ।

ନା ଆଉ ନୁହେଁ।

ସେ ଏକାକୀ ନିଜର କଥାହିଁ ଭାବିବ। କିନ୍ତୁ ସେ ଏକାକୀ କି ? ହଁ ସେ ଏକା ଆସିଛି—ଏକାହିଁ ଯିବ। ଜନ୍ମବେଳେ ସେ ଏକୁଟିଆ ଆସିଥିଲା—ମୃତ୍ୟୁବେଳକୁ ସେ ଏକୁଟିଆହିଁ ଯିବ।

ଅତଏବ ତାର ନିଜ ଏକୁଟିଆର କଥା ସେ ଭାବିବ। ଅପରର କଥାପାଇଁ ସେ ଘାଣ୍ଟି ହେବ କାହିଁକି ?

କିନ୍ତୁ ଅସୀମ ସାମଲ ବୋକା। ତୁ ମଣିଷ ଛୁଆ। ଜନ୍ତୁ ଜାନୁଆର ନୁହେଁ। କୁକୁଡ଼ା ପରି ଏକାବେଳକେ ପଲେ ନୁହେଁ—ଘୁଷୁରି ପରି ପୁଞ୍ଜାଏ ନୁହେଁ ଗୋଟିଏ ମାତ୍ର।

ସେମାନେ ପଲେ ହେଇ ଜନ୍ମ ନିଅନ୍ତି। କିଛି ଦିନ ପରେ ଏକୁଟିଆ ହୋଇ ଯାଆନ୍ତି—ତାଙ୍କର ସମାଜ ନାହିଁ—ଜ୍ଞାନ ନାହିଁ। ତୁ କିନ୍ତୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମ୍ପର୍କିତ। ଯେତେ କହିଲେବି ତୁ ପୃଥିବୀରେ ଏକୁଟିଆ ନୋହୁଁ। ତୋର ଏକୁଟିଆ ସତ୍ତା ନାହିଁ। ମୃତ୍ୟୁ ପରେ ବି ତୋର ମୁକ୍ତି ନାହିଁ। ତୋତେ ତୋର ଉତ୍ତର ଦାୟାଦ ମାନେ ବର୍ଷକୁ ବର୍ଷ ଶ୍ରାଦ୍ଧ ଦେଇ ସମ୍ପର୍କିତ କରି ରଖିଥିବେ। ବିରୁଦାବଳୀ ଲେଖି ପଥରରେ ଖୋଦିତ କରି ରଖିଦେବେ।

ତୁ କେବେ ଏକୁଟିଆ ନ ଥିଲୁ ରହି ବି ପାରିବୁ ନାହିଁ। ଗଣ୍ଠି ପଡ଼ିଛି। ସହସ୍ର ସହସ୍ର ଶତାବ୍ଦୀର ଗଣ୍ଠି। ସହସ୍ର ସହସ୍ର ବନ୍ଧନର ଗଣ୍ଠି। ଏଥିରୁ ମୁକୁଳି ଯିବା କଣ ଏଡ଼େ ସହଜ।

ପ୍ଲେନ୍ ଆସିବାକୁ ଆହୁରି ପନ୍ଦର ମିନିଟ୍ ବାକି। ଏ ସବୁ ଅଜବ ଚିନ୍ତା ଗୁଡ଼ିକ ଯେ ଏମିତି ଅସମୟରେ କାହିଁକି ତା ମୁଣ୍ଡରେ ପଶେ ସେ ବୁଝି ପାରେ ନାହିଁ। ତାର ବର୍ତ୍ତମାନ ଭାବିବା ଉଚିତ୍ ମିଃ ମୋଦୀଙ୍କୁ ସେ କଣ କହି କରିମର୍ଦ୍ଦନ କରିବ ? ରାସ୍ତାରେ ଯାଉ ଯାଉ ତାଙ୍କୁ କୋଉ କୋଉ ବିଷୟରେ ତଥ୍ୟ ପ୍ରଦାନ କରିବ। ଅସୀମ ସାମଲ। ଆଉ କିଛି ନୁହେଁ ବିଖ୍ୟାତ କମ୍ପାନୀର ଜେନେରାଲ ମେନେଜର ମାତ୍ର।

ଆକାଶରେ ମେଘ ଘୋଡ଼ାଇଲାଣି ? ଡିସେମ୍ବର ମାସରେ ବି କଳା ଘୁମୁର ମେଘ ସାରା। ଆକାଶ ଛାଇ ଗଲାଣି। ଟିକିଏ ଫାଙ୍କରେ ଦେଖାଯାଉଛି ବିନ୍ଦୁଏ ନୀଳ ଆକାଶ।

ମେଘ ଘୋଡ଼େଇଚି ବୋଲି ନୀଳ ଆକାଶ ସତ୍ୟ ନୁହେଁ? ଗଣ୍ଠି ପଡ଼ିଚି ବୋଲି କଣ ମୁକ୍ତି ବୋଲି କିଛି ନାହିଁ ?

ମନେ ହେଉଛି ତାର ହୃଦୟର କେଉଁ କୋଣରେ, ନୀଡ଼ ଭିତରେ ପକ୍ଷୀଶାବକଟିଏ ପରି କିଛି ଗୋଟାଏ ଖୁଜୁବୁଜୁ ହେଉଛି। ବାହାରି ଆସିବାକୁ ଚାହୁଁଛି। ଡ଼େଣାମେଲି ନୀଳ ଆକାଶରେ ଉଡ଼ି ଉଡ଼ି ବୁଲିବା ପାଇଁ ବ୍ୟଗ୍ର ହୋଇ ଉଠୁଛି। ନୀଡ଼ ନୀଡରେ ଜନ୍ମ ନେଇଛି ବୋଲି, ନୀଡ଼ ଭିତରେ ବଢ଼ିଛି ବୋଲି ପକ୍ଷୀଡ ଆଉ ନୀଡ଼ର ନୁହେଁ। ସାରା ଆକାଶ-ସାରା ପୃଥିବୀ ତାର ଚରାଭୂଇଁ।

ଅସୀମ ସାମଲ ହଠାତ୍ ବୁଝି ପାରିଲା କାହିଁକି ଏମିତି ତାକୁ ପଳେଇ ଯିବାକୁ ଇଚ୍ଛା ହୁଏ ଅଗନାଗ୍ନି ବନସ୍ତକୁ। ନିର୍ଜନ ବେଳାଭୂମିକୁ ଆକାଶର ନୀଳିମା ଭିତରକୁ—ସାଗରର ଗଭୀରତା ଭିତରକୁ। ଚେତନାର ଚଢ଼େଇଟି ଦେହରେ ଖୋଳପାର ବନ୍ଦୀଶାଳା ଭିତରୁ କିନ୍ତୁ ପାଇବାକୁ ଚାହେଁ, ବିସ୍ତାରିତ ହେବାକୁ ଚାହେଁ ଏରୋପ୍ଲେନ ଶବ୍ଦରେ ଅସୀମ ସାମଲର ତନ୍ଦ୍ରା ଭାଙ୍ଗିଗଲା।

ଅଜାଣତରେ ତାର ହାତ ଉଠିଗଲା ନେକ୍‌ଟାଇର ଗଣ୍ଠିକୁ ଠିକ୍ କରିବାକୁ। ଗଣ୍ଠି ପଡ଼ିଗଲା ଚେତନାର ଦ୍ୱାରରେ। ଅସୀମ ସାମଲ ତରତର ହୋଇ ଗେଟ୍ ପାଖକୁ ଆଗେଇ ଗଲା ରିସିଭ୍ କରିବାକୁ।

—o—

# ପର୍ବତ ଉପର ବାଘଁ

*(କୌଣସି ଦାର୍ଶନିକ ତଥା ଜାଗତିକ ସତ୍ୟକୁ ପ୍ରତିପାଦିତ କରିବାକୁ ଉପନିଷଦୀୟ ଯୁଗର କଥୋପକଥନ ଶୈଳୀର ଆଶ୍ରୟ ନିଆ ଯାଇଛି। ନଚିକେତା-ଯମ ସମ୍ବାଦ, ଯାଜ୍ଞବଲ୍କ୍ୟ-ମୈତ୍ରେୟୀ ସମ୍ବାଦ ପ୍ରଭୃତି ଭୂରି ଭୂରି ପ୍ରମାଣ ପ୍ରତ୍ୟେକ ଉପନିଷଦରେ ଗୁମ୍ଫିତ ହୋଇ ରହିଛି। ସେହି ଶୈଳୀ ପୁରାଣ ରାମାୟଣ ଓ ମହାଭାରତରେ ମଧ୍ୟ ଅନୁସୃତ ହୋଇଛି। ଯୋଗବାଶିଷ୍ଠ ରାମାୟଣର ବଶିଷ୍ଠ-ରାମଚନ୍ଦ୍ର ପ୍ରଶ୍ନୋତ୍ତର, ରାବଣ-ଶ୍ରୀରାମଚନ୍ଦ୍ରଙ୍କର ପ୍ରଶ୍ନୋତ୍ତର ମହାଭାରତର ଶ୍ରୀକୃଷ୍ଣ-ଅର୍ଜୁନ ତଥା ଭୀଷ୍ମ-ଯୁଧିଷ୍ଠିର ସମ୍ବାଦ, ଭଗବତର ଶ୍ରୀକୃଷ୍ଣ, ଉଦ୍ଧବ ସମ୍ବାଦ ପ୍ରଭୃତି ଶୈଳୀରେ ବିଭିନ୍ନ ଦାର୍ଶନିକ ତଥ୍ୟର ଉପସ୍ଥାପନା ଓ ସମାଧାନର ବ୍ୟାଖ୍ୟା କରାଯାଇଛି। ଗୀତା ଏହି ଶୈଳୀର ସର୍ବଶ୍ରେଷ୍ଠ ଉଦାହରଣ। ଗ୍ରୀସ ଦେଶରେ ସକ୍ରେଟିସ୍ ପ୍ଲାଟୋଙ୍କ ପ୍ରଶ୍ନୋତ୍ତର ତ ପୃଥିବୀ ବିଖ୍ୟାତ। ସେହିପରି ଚୀନ ଦେଶରେ କନଫୁସିଅସ ବି ତର୍କ ଶିକ୍ଷା ସହିତ କଥୋପକଥନ ମଧ୍ୟ ସେହି ପରମ୍ପରାର ଅନୁସରଣ କରିଛି। ଭାରତ ବର୍ଷରେ ପୁରାଣ ଯୁଗଠାରୁ ଆରମ୍ଭକରି ଆଜିଯାଏ ବି ଗୁରୁଶିକ୍ଷା ପ୍ରଶ୍ନୋତ୍ତର ଛଳରେ ବିଭିନ୍ନ ସତ୍ୟର ଉପସ୍ଥାପନ ଓ ବ୍ୟାଖ୍ୟା କରାଯାଇଛି।*

*ଏହା ବୋଧହୁଏ 'ପ୍ରବନ୍ଧ'ର ସର୍ବଜନୋଦୃତ ତଥା ବୋଧଗମ୍ୟ ମୌଳିକ ରୂପ। ମୁଁ ଏଇ ଲେଖାରେ ସେହି ଶୈଳୀର ଆଶ୍ରୟ ନେଇଛି।)*

—ଘୋର ଅନାଚାର ବ୍ୟାପିଗଲା ଦେଶରେ। ଓହେ-ଘୋର କଳି।

—କଣ ହେଲ ମଉସା—ସକାଳୁ ସକାଳୁ ହଠାତ୍—

—ନାଇରେ, ବାଆସ୍ତରୀ ହେଲା। ଜୀବନରେ କେତେ କଥା ଦେଖିଲି କେତେ କଥା ଶୁଣିଲି। କିନ୍ତୁ ଏମିତି ପରିସ୍ଥିତି ମୋ ଜୀବନ ଭିତରେ କେବେ ଦେଖି ଦେଖି ନଥିଲି କି ଶୁଣି ନଥିଲି। କଣ ହୋଇଗଲା ଏ ଦେଶ—କୌଣସି ମୂଲ୍ୟବୋଧ ନାହିଁ—ପାପକୁ ଡ଼ର ନାହିଁ—ଭଗବାନଙ୍କୁ ଭୟନାହିଁ।

—ଏତ ନିତିଦିନିଆ ଦେହଘଷା କଥା ହେଲାଣି। ତେଣୁ ଆଜି ସକାଳୁ ହଠାତ୍—

—ନାଇଁ ଯେ, ଖବରକାଗଜଟି ପଢୁଥିଲି। ପ୍ରଥମ ପୃଷ୍ଠାରୁ ଶେଷ ପୃଷ୍ଠାଯାଏ କେବଳ ନରହତ୍ୟା ଲୁଣ୍ଠନ ହିଂସା ଲୋକ ଚୋରଧପାବାଜି, ବଧୂହତ୍ୟା, ଗଣହତ୍ୟା ଘଟଣା ସାରା ଆଠପୃଷ୍ଠା କାଗଜରେ ଗୋଟିଏ ହେଲେ ପ୍ରେମ, ଭଲପାଇବା, କ୍ଷମା, ନିଃସ୍ୱାର୍ଥପରତାର ଘଟଣାଟିଏ ନାହିଁ? ଏପରି ଘଟଣା କଣ ଭାରତବର୍ଷ ପରି ଏକ ବିଶାଳ ଭୂଖଣ୍ଡର କେଉଁ କୋଣରେ ଘଟୁନାହିଁ?

—ବୁଝିଲ ମଉସା, ଏ ହେଲା ଗଣତନ୍ତ୍ର ଯୁଗ। ଲୋକେ ଯେଉଁ କଥା ପଢ଼ିବାକୁ ଚାହୁଁଛନ୍ତି, ଶୁଣିବାକୁ ଚାହୁଁଛନ୍ତି, ଦେଖିବାକୁ ଚାହୁଁଛନ୍ତି ସେଇ କଥାହିଁ ପ୍ରକାଶ

କରୁଛନ୍ତି ଖବରକାଗଜମାନେ। ଗାଉଛନ୍ତି ଶିଳ୍ପୀମାନେ, ଦେଖଉଛନ୍ତି ସିନେମା, ଟି.ଭି. ଓ ରଙ୍ଗୀନ ଚଳଚ୍ଚିତ୍ର ଓ ଯୌନଦୀପକ ପତ୍ରିକାମାନେ। ତାହାହିଁ କରିବେ? ନ ହେଲେ ସେମାନେ ଚଳିବେ କିପରି ?

—କିଏ କହିଲା ଲୋକେ ସେ କଥା ଜାଣିବାକୁ ଚାହୁଁ ନାହାନ୍ତି ବୋଲି? ହେଲେ ମୁଁ ତ ଚାହୁଁଛି। ମୋ ପରି ସେମିତି ଅନେକ ଲୋକ ଥିବେ। କିନ୍ତୁ ଆମେ ମାଇନରିଟି ବୋଲି ଆମପାଇଁ କିଛି ଖବର ନାହିଁ। ଆଉ, ତା ଛଡ଼ା ଅର୍ଥକଣ ସବୁଠାରୁ ବଡ଼କଥା ?

—ଆଜିକାଲି ଅର୍ଥପାଇଁ ପ୍ରତିଦ୍ୱନ୍ଦିତା ତ ସବୁଠାରୁ ବଡ଼କଥା। ସବୁ ପ୍ରତିଯୋଗିତା ବା ପ୍ରତିଦ୍ୱନ୍ଦିତା କେବଳ କ୍ଷମତା ପାଇଁ, ଅର୍ଥ ପାଇଁ। ଜ୍ଞାନ ପାଇଁ ନୁହେଁ, ସତ୍ୟ ପାଇଁ ନୁହେଁ ଧର୍ମ ପାଇଁ ନୁହେଁ। ସେ ସବୁ ପୁରୁଣା କଥା ହେଲାଣି। ତା ଛଡ଼ା, ଆପଣଙ୍କ ବେଳେ କଣ ଏମିତି ନ ଥିଲା ?

—ମୁଁ ମାନୁଛି, ଆମ ବେଳେ ମଧ ଥିଲା। କିନ୍ତୁ ସେତେବେଳେ ଏତେ ଶିକ୍ଷିତ ଲୋକ ବି ନଥିଲେ। ଏତେ ପ୍ରକାର ଚାକିରି ମଧ ନଥିଲା। ମୋ'ର ତ ଯାହା ମନେ ହେଉଛି, ଦେଶରେ ଯେତିକି ଯେତିକି ଶିକ୍ଷାର ପ୍ରସାର ଘଟୁଛି, ସେତିକି ସେତିକି ଅନ୍ୟାୟ ବଢ଼ି ଚାଲିଛି।

—ତା ହେଲେ କଣ ଶିକ୍ଷା ପ୍ରସାର ବନ୍ଦ କରିଦେବାକୁ ଆପଣଙ୍କର ମତ? ତା ନୁହେଁ, ଏ ସବୁର ମୂଳ କାରଣ ହେଲା ରାଜନୀତି ଓ ରାଜନୀତିଜ୍ଞ।

—ଚୁପ୍ କର। ଆଜିକାଲି ତମମାନଙ୍କ ପରି ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା। ପର ମୁଣ୍ଡରେ ଅଠା ବୋଳିବାର ଏକ ପ୍ରୟାସ। ହୁଏତ ରାଜନୀତିଜ୍ଞ ମାନେ କିଛି ପରିମାଣରେ ଦାୟୀ। କିନ୍ତୁ ତମପରି ଶିକ୍ଷିତ ଲୋକମାନେ କଣ ତାଙ୍କଠାରୁ ବେଶୀ ଦାୟୀ ନୁହନ୍ତି। ଗାଁ ଗହଳରେ ରହୁଥିବା ଶତକଡ଼ା ଅଶୀଭାଗ ଲୋକ କଣ ଚାହାନ୍ତି; ମୁଠାଏ ଭାତ ଖଣ୍ଡିଏ ଲୁଗା। ସାମାନ୍ୟ ଶିକ୍ଷା। ତାଙ୍କରି ପାଇଁ ତିଆରି ହୋଇଛି ବିଭିନ୍ନ ବିଭାଗମାନ। ରାଜସ୍ୱ, କୃଷି, ଅବକାରୀ ସ୍ୱରାଷ୍ଟ୍ର, ଶିକ୍ଷା ବିଭାଗମାନ। ଗାଁ ଗହଳରେ ଜମି ପାଇଁ ଯୋଉଁ କନ୍ଦଳ ଜାଣିଶୁଣି ଭିଆଯାଉଛି ତା ପାଇଁ ଅଧିକାଂଶ କ୍ଷେତ୍ରରେ ତମର ଉଚ୍ଚଶିକ୍ଷିତ ତହସିଲ୍‌ଦାର ଓ ରେଭିନ୍ୟୁ କର୍ମଚାରୀମାନେ ଦାୟୀ ନୁହନ୍ତି? ପରସ୍ପର ଝଗଡ଼ା ଲଗାଇବାରେ ଶିକ୍ଷିତ ଥାନା ଇନିସ୍‌ପେକ୍ଟର, କନେଷ୍ଟବଳମାନେ ଦାୟୀ ନୁହନ୍ତି? ଚୋରକୁ ସୁରକ୍ଷା ଦେଇ ଚୋରିକୁ ଉତ୍ସାହିତ କରୁନାହାନ୍ତି? କୃଷି ବିଭାଗରେ ଯେଉଁମାନେ ଋଣ, ସାର, ବିହନ ଦେଉଛନ୍ତି ସେମାନେ କଣ ଉଚ୍ଚ ଶିକ୍ଷିତ ନୁହନ୍ତି? ଅବକାରୀ ବିଭାଗର କର୍ମକର୍ତ୍ତାମାନେ ଯେଉଁମାନେ ଚୋରା ମଦକୁ ଦେଉଛନ୍ତି, ସେମାନେ କଣ ସବୁ ମୂର୍ଖ? ଶିକ୍ଷା ବିଭାଗରେ ଯୋଉ ଦୁର୍ନୀତି ଚାଲିଛି, ଶିକ୍ଷକମାନେ ଯେଉଁଳି ଭାବରେ ପିଲାମାନଙ୍କୁ ଠକୁଛନ୍ତି, ସେମାନେ ଶିକ୍ଷିତ ନୁହନ୍ତି? ଗାଁର ଡାକ୍ତରଖାନାରେ ଡାକ୍ତର ରହୁ ନାହାନ୍ତି—ରହିଲେ ବି ଗରିବର ତଣ୍ଟିଚିପି ଫିସ୍ ଆଦାୟ କରୁଛନ୍ତି। ସେମାନେ ତ ଉଚ୍ଚ ଶିକ୍ଷିତ।

ମୁଁ ତ କହିବି ସରକାରଙ୍କଠାରେ ଚାକିରୀ କରିଥିବା ସମସ୍ତ ଶିକ୍ଷିତ ରାଜକର୍ମଚାରୀ ମାନେ ହିଁ ଜନସାଧାରଣଙ୍କର ପ୍ରଥମ ଓ ଚୂଡ଼ାନ୍ତ ଶୋଷଣକାରୀ। ମାତ୍ର ଶତକଡ଼ା ଦୁଇ ଭାଗ ଲୋକ ଆଜି, ଶତକଡ଼ା ଅଠାନବେ ଲୋକଙ୍କୁ ଶୋଷଣ କରୁଛନ୍ତି ନିର୍ବିବାଦରେ। ସବୁଠାରୁ ଦୁଃଖର କଥା ଏହି ଯେ ସେମାନେ ସମସ୍ତେ ତଥାକଥିତ ଶିକ୍ଷିତ ବ୍ୟକ୍ତି। ଏମାନେ କଣ ସତରେ ଶିକ୍ଷିତ? ଯୋଉ ଶିକ୍ଷା ଦୁର୍ବଳ, ଅସହାୟଠାରୁ ପରିସ୍ଥିତିର ଚାପରେ ଗରିବ, ନିରିହ ଲୋକଟିକୁ ଶୋଷଣ କରିବା ପାଇଁ ପ୍ରରୋଚିତ କରେ ସେ ଶିକ୍ଷାର ମୂଲ୍ୟ କଣ? ଏମିତି ଶିକ୍ଷା ବନ୍ଦ ହୋଇଯିବାର ଶ୍ରେୟସ୍କର।

—ଆପଣ ମିଛଟାରେ ଉତ୍ତେଜିତ ହେଉଛନ୍ତି ମଉସା। ମୁଁ କହିଲି ପରା ସବୁଠାରୁ ମୂଳକାରଣ ହେଲା ରାଜନୀତିଜ୍ଞ ଓ ତାଙ୍କ ଚେଲା ଚାମୁଣ୍ଡାମାନ। ମନ୍ତ୍ରୀ ଯଦି ପଇସା ଚାହିଁବେ, ଅଧସ୍ତନ କର୍ମଚାରୀମାନେ ସେଇଟା ଯୋଗାଡ଼ କରିବେ। ସେମାନେ ଯୋଗାଡ଼ କରିବେ କାହାପାଖରୁ? ତାଙ୍କ ଅଧସ୍ତନ କର୍ମଚାରୀଙ୍କ ପାଖରୁ। ଏମିତି ଉପରୁ ତଳକୁ ଗଡ଼ି ଯାଉଛି ଦୁର୍ନୀତିର ଚେର। ନିର୍ମୂଳ ଲତା ଗଛ ଉପରେ ରହେ। ତାର ଚେର ମାଟିରେ ଭେଦେ ନାହିଁ। କିନ୍ତୁ ଗଛକୁ ହେବାକୁ ପଡ଼େ ତାର ଅବଲମ୍ବନ। ତାର ଚେର ତ ମାଟି ଭିତରେ। ପରିଶେଷରେ କିନ୍ତୁ 'ମାଟି' ହିଁ ଅସଲରେ ଶୋଷିତ ହୁଏ। ତେଣୁ ଜନସାଧାରଣ ଶୋଷିତ ହେବାଟାହିଁ ସ୍ୱାଭାବିକ।

ଆଉ ଶିକ୍ଷା କଥା କହିଲେ ଯେ ନୈତିକ ଶିକ୍ଷାର ବାତାବରଣ ଘର ଭିତରେହିଁ ସୃଷ୍ଟି ହୋଇଥାଏ। ସ୍କୁଲ କଲେଜରେ ନୈତିକ ଶିକ୍ଷା ଦିଆଯାଏ ନାହିଁ। ଦିଆଗଲେ ବି ପିଲାଙ୍କ ଉପରେ ତାର ପ୍ରଭାବ ସାମାନ୍ୟ। ଯୋଉ ବାତାବରଣରେ ଶିଶୁଟି ସାତ ଆଠ ବର୍ଷ ବୟସ ପର୍ଯ୍ୟନ୍ତ ବଢ଼େ, ସେଇ ବାତାବରଣର ଛାପ ରହିଯାଏ ତାର ମନରେ ସାରା ଜୀବନ ଧରି। ଯୋଉ ପାରିବାରିକ ଜୀବନରେ ନୈତିକତା ନାହିଁ, ସେଇ ପରିବାରର ଶିଶୁ କେମିତି ଭଲ ମଣିଷ ହେବ ଯେ? ସେଇଥିପାଇଁ ଆପଣମାନେ କଣ ଦାୟୀ ନୁହନ୍ତି? ଆଜିକାର ଶିକ୍ଷିତ ସମାଜ ଆପଣମାନଙ୍କର ସନ୍ତାନ। ସେଇ ସନ୍ତାନମାନଙ୍କୁ ଆପଣ ଯୋଉ ଶିକ୍ଷା ଦେଉଛନ୍ତି, ସେମାନେ ସେମିତି ଭାବରେ ଚଳୁଛନ୍ତି।

—ବୁଝିଲି, ନିଜ ଦୋଷ ଛଡ଼ାଇବା ପାଇଁ ତମମାନଙ୍କର ଏ ଅବାନ୍ତର ଯୁକ୍ତି। ପ୍ରଥମେ ରାଜନୀତିଜ୍ଞ ହେଲେ ଦୋଷୀ—ଏବେ ପିତାମାତା ହେଲେ ଦୋଷୀ। ତମେମାନେ ଗୋଟିପଣେ ତୁଳସୀ?

ଧରାଯାଉ ରାଜନୀତିଜ୍ଞ ନେତାମାନେ ଦୋଷୀ। ତମେ ମୋତେ ପ୍ରତିଶ୍ରୁତି ଦେଇ ପାରିବ କି ଯଦି ଏହି ମୂହୂର୍ତ୍ତରେ ସମସ୍ତ ରାଜନୀତିକ ନେତା, ଟାଉଟରମାନଙ୍କୁ ବନ୍ଦୀ କରାଯାଏ ଏବଂ ଦେଶରେ ଏକଛତ୍ରବାଦ ବା ପ୍ରେସିଡ଼େଣ୍ଟସ୍ ରୁଲ୍ କରାଯାଏ, ତେବେ ସମସ୍ତ ରାଜକର୍ମଚାରୀମାନେ ଘୁସ୍ ନେବା ଛାଡ଼ିଦେବେ, ଅନ୍ୟାୟ କରିବା

ଛାଡ଼ିଦେବେ, ସମସ୍ତେ ସାଧୁ, ସଚ୍ଚୋଟ, ନିର୍ଭୀକ, ଦୟାବାନ, ନୀତିବାନ, ନ୍ୟାୟନିଷ୍ଠ ହୋଇଯିବେ ?

ମୁଁ ହଲପ କରି କହିପାରେ ତା କଦାପି ହେବନାହିଁ। ମୁଁ ତା ବରଂ କହିବି ଶତକଡ଼ା ଏକଭାଗ ହେଉ ପଛେ, କେତେଜଣ ସୁସ୍ଥ, ନ୍ୟାୟନିଷ୍ଠ ରାଜନୀତିଜ୍ଞଙ୍କର ଅଙ୍କୁଶ ଫଳରେ ହିଁ ତମେମାନେ ଆଜି ଶୃଙ୍ଖଳିତ ରହି ପାରିଛ ଭୟରେ। ନ ହେଲେ ତ ଏ ଦେଶରେ ଏଇ ଶିକ୍ଷିତ ବ୍ୟକ୍ତିମାନେ ହିଁ ତ ଦେଶରେ ଭୀଷଣ ଅରାଜକତାର ସୃଷ୍ଟି କରି ଦେବେ ବିନା ରାଜନୀତିଜ୍ଞର ଅଙ୍କୁଶରେ।

ତମମାନଙ୍କ ଦିହରେ ନିଆଁ ଲାଗିଛି। ସର୍ବଗ୍ରାସୀ ଲୋଭର ନିଆଁ। ବିଳାସିତାର ଅଗ୍ନି, କଳେବଳେ କୌଶଳେ ଧନ କ୍ଷମତା ଆହରଣର ବହ୍ନି।

ତମେ ଯେତେ କହିଲେ ବି ଏ ସତ୍ୟକୁ ଅସ୍ୱୀକାର କରି ପାରିବ ନାହିଁ। କାରଣ ତା ନ ହେଲେ ମାତ୍ର ମୁଷ୍ଟିମେୟ କେତେଜଣ ଦୁର୍ନୀତିଗ୍ରସ୍ତ ରାଜନୀତିଜ୍ଞଙ୍କ ଭୟରେ ଏକଲକ୍ଷ ଶିକ୍ଷିତ ରାଜକର୍ମଚାରୀ ଏମିତି ଚୁପ୍ ହୋଇ ବସି ପାରି ନଥାନ୍ତେ। ତମେମାନେ ହିଁ ପରୋକ୍ଷରେ ତାଙ୍କୁ ସାହାଯ୍ୟ କରୁଛ। ଉପରେ ସେମାନଙ୍କର ସମାଲୋଚନା କରି ଭିତରେ ଭିତରେ ସେମାନଙ୍କୁ ସାହାଯ୍ୟ କରୁଛ। ସେମାନଙ୍କ ଉପରେ ଦୋଷ ଢ଼ାଳି ଦେଇ ନିଜେ ଖସି ଯାଉଛ ନିଜର ସ୍ୱାର୍ଥସାଧନ କରି, ନିଜର ଅର୍ଥ ଲାଗି ତମେମାନେ ନିଜର ବିବେକକୁ ବିକି ଦେଇଛ ସେମାନଙ୍କ ପାଖରେ।

ତମମାନଙ୍କୁ ଏକ 'ଭୟ' ଆଚ୍ଛନ୍ନ କରି ରଖିଛି। ସେ ଭୟ ପ୍ରାଣର ଭୟ ନୁହେଁ, ସମ୍ମାନ ହରାଇବାର ଭୟ ନୁହେଁ। ସେ ଭୟ କେବଳ ତୁଚ୍ଛ କେତେଟା ଟଙ୍କା ହରେଇବାର ଭୟ, କେତେଟା ସୁଖସ୍ୱାଚ୍ଛନ୍ଦ୍ୟ କିଣି ନ ପାରିବାର ସାମର୍ଥ୍ୟର ଭୟ—ତମରି ସ୍ୱାର୍ଥ, ତମରି ଲୋଭ ତମକୁ ଭୀରୁ କରି ଦେଇଛି, କାପୁରୁଷ କରି ଦେଇଛି।

ତମେମାନେ ଧପ୍ପାବାଜି କରୁଛ,ଠକୁଛ, ଲାଞ୍ଚ ନେଉଛ, ରାଜନୀତିଜ୍ଞମାନଙ୍କ ଭୟରେ ନୁହେଁ। ତମର ନିଜସ୍ୱ ତାଡ଼ନାରେ। କେହି ରାଜନୀତିଜ୍ଞ କହୁ ନାହିଁ ଶିକ୍ଷକମାନଙ୍କୁ ପାଠ ନ ପଢ଼ାଇ ଟ୍ୟୁସନ କର। ମାନେ ବହି ଲେଖି ପଇସା କମାଅ। ଡାକ୍ତର ମାନଙ୍କୁ କେହି ରାଜନୀତିଜ୍ଞ ନିର୍ଦ୍ଦେଶ ଦେଉନାହିଁ। ତମେମାନେ ତଣ୍ଟିଚିପି ଫିସ୍ ଆଦାୟ କର, ସରକାରୀ ଅନୁଦାନରେ ଆସୁଥିବା ଔଷଧକୁ ବିକ୍ରୟ କର। କୌଣସି ରାଜନୀତିଜ୍ଞ କହୁନାହିଁ ତହସିଲ୍‌ଦାରକୁ, ଆଇ. ଏ. ଏସ୍‌କୁ ତମେମାନେ ଦୁର୍ନୀତି କର। ଏ ସବୁ ତୁମମାନଙ୍କର ନିଜସ୍ୱ ପ୍ରବଞ୍ଚନା, ନିଜସ୍ୱ ଛଳନା।

କୋଉ ରାଜନୀତିଜ୍ଞ ଉପଦେଶ ଦେଇଛି ଯୌତୁକ ଲୋଭରେ ନବ ବଧୂକୁ ହତ୍ୟା କରିବାପାଇଁ ? ଆଜି ଯେତେ ବଧୂହତ୍ୟା ଦେଶରେ ଘଟିଛି ତାହାର ଶତକଡ଼ା ଶହେ ଭାଗ ଘଟିଛି ତମ ପରି ଶିକ୍ଷିତ-ଅର୍ଦ୍ଧଶିକ୍ଷିତ ମଧ୍ୟବିତ୍ତ ପରିବାରରେ। କୌଣସି ଦରିଦ୍ର

ନିରକ୍ଷର ବ୍ୟକ୍ତିଙ୍କ ଘରେ ଏ ଘଟଣା ଆଜିଯାଏଁ ଘଟିନାହିଁ। ତମେମାନେ ଏହାର କଣ ଉତ୍ତର ଦେବ ?

—ଚୁପ୍ କରନ୍ତୁ ମଉସା। ଆପଣଙ୍କ ଦେଶର ପରମ୍ପରା କଣ ? ସ୍ୱାମୀର ସାମାନ୍ୟ ଅବାଧତାରେ ପୁତ୍ରକୁ ଆଦେଶ ଦିଆଯାଏ ମାତୃହତ୍ୟା କରିବା ପାଇଁ। ବିନା କାରଣରେ ସୁକୁମାରୀ, ପତିପ୍ରାଣା, ରାଜବଧୂକୁ ନିର୍ବାସନ ଦିଆଯାଏ। ପ୍ରତାପଶାଳୀ, ରାଜଚକ୍ରବର୍ତ୍ତୀର ଜ୍ୟେଷ୍ଠ କୁଳବଧୂକୁ ଭରା ରାଜସଭାରେ ଉଲଗ୍ନ କରିବାକୁ ନିର୍ଦ୍ଦେଶ ଦିଆଯାଏ। ଏଇତ ଆପଣଙ୍କର ସମୃଦ୍ଧ ପରମ୍ପରା। ଆଉ ଆପଣଙ୍କ ପୂର୍ବବର୍ତ୍ତୀ ଯୁଗର ଉଦାହରଣ ? ବୃଦ୍ଧ ସ୍ୱାମୀର ମୃତ୍ୟୁରେ ବି ତାର ବାଳିକା ବଧୂକୁ ଚିତାର ଅଗ୍ନିରେ ନିକ୍ଷେପକରାଯାଏ 'ସତୀ'ର ମୋହର ମାରି। ନାରୀ ନିର୍ଯ୍ୟାତନାର ଆଉ କୋଉ ଉଦାହରଣ ବାକୀ ରଖିଛନ୍ତି ଯେ ଆଜି ଆପଣ କୋଉ ସାହସରେ ଆମମାନଙ୍କ ଉଦ୍ଦେଶ୍ୟରେ ଭର୍ତ୍ସନାର ତର୍ଜ୍ଜନୀ ନିର୍ଦ୍ଦେଶ କରୁଛନ୍ତି।

—ମୁଁ ମାନୁଛି, ସେ ସବୁ ଅନ୍ୟାୟ ହୋଇଥିଲା। କିନ୍ତୁ ତାର ପୃଷ୍ଠଭୂମିରେ ରହିଥିଲା ଏକ ମର୍ଯ୍ୟାଦାବନ୍ତ ପୁରୁଷର ଆତ୍ମସମ୍ମାନ। ଏକ ରାଜପୁରୁଷର ଉଚ୍ଚ ଆଦର୍ଶ। ଏକ ଆହତ ଅଭିମାନ ବୋଧ—ପ୍ରତିଶୋଧର ଅଗ୍ନି। 'ସତୀ' ପଛରେ ସେମିତି ରହିଥିଲା। ଏକ ସାର୍ବଜନୀନ ଅନ୍ଧବିଶ୍ୱାସ—ଏକ ମତାନ୍ଧତା—ଏକ ରିଲିଜିଅସ୍ ଫାନାଟିସିଜମ୍। କିନ୍ତୁ ତା ଭିତରେ କୌଣସିଥିରେ ସଂକୀର୍ଣ୍ଣ ସ୍ୱାର୍ଥସାଧନାର ଅଣୁମାତ୍ର 'ଉଦ୍ଦେଶ୍ୟ' ନଥିଲା। ତମେମାନେ ତାହା କରୁଛ ସାମାନ୍ୟ କେତେଟା ଟଙ୍କା ପାଇଁ। କୌଣସି ବିଶ୍ୱାସ ପାଇଁ ନୁହେଁ। କୌଣସି ଆଦର୍ଶ ପାଇଁ ନୁହେଁ। ତମେମାନେ ପଶୁ ସହିତ ବି ତୁଳନୀୟ ନୁହେଁ। ତମେମାନେ ସୟତାନର ଅବତାର ମାତ୍ର।

ମଉସାଙ୍କ କଣ୍ଠସ୍ୱର ଉତ୍ତେଜନାରେ ଥରି ଥରି ରୁଦ୍ଧ ହୋଇଗଲା। ପ୍ଲୁଟୁରା ବୋଲାଉଥିବା ବ୍ୟକ୍ତିଟିର କଣ୍ଠସ୍ୱର କିନ୍ତୁ ନିରୁତ୍ତାପ, ସହଜ।

—ଆପଣ ପୂର୍ବଜନ୍ମ ପରଜନ୍ମରେ ବିଶ୍ୱାସ କରନ୍ତି , ମଉସା ?

—ସବୁ ମଣିଷ ବିଶ୍ୱାସ କରନ୍ତି। ମୁଁ ହିନ୍ଦୁ। ମୁଁ ବିଶ୍ୱାସ କରେ ନାହିଁ ଏହା ମୋର ଦୃଢ଼ ନିଷ୍ଠିତସଂସ୍କାର।

—ତେବେ ଏଥର ମୋ କଥା ଶୁଣନ୍ତୁ। ଆପଣଙ୍କର ଧର୍ମଶାସ୍ତ୍ର କହେ କୋଟି ଜନ୍ମର ଫଳ ଏହି ମନୁଷ୍ୟ ଜନ୍ମ। ଚଉରାଅଶି ଲକ୍ଷ ଯୋନି ଭ୍ରମଣ କରି ସାରି ନିଜେ ନିଜର ପୁଣ୍ୟ ଫଳରେ ପ୍ରାଣୀ ମଣିଷ ଜନ୍ମ ପାଏ। ମୁଁ ଜାଣେନା ମଣିଷ ଥରେ ଜନ୍ମନେଲା ପରେ ଆଉଥରେ ସେ ପ୍ରାଣୀ ଜଗତକୁ ଫେରିଯାଏ କି ନାହିଁ। ଯଦିଓ ଆପଣଙ୍କର ଧର୍ମଶାସ୍ତ୍ରମାନେ ମଧ୍ୟ ସେ ସମ୍ବନ୍ଧରେ କହିଯାଇଛନ୍ତି ଯେ ତାହା ମଧ୍ୟ ସମ୍ଭବପର। କିନ୍ତୁ ସେ ସମ୍ବନ୍ଧରେ ପ୍ରମାଣ କିଛି ନାହିଁ।

ଆମେ ଆପଣଙ୍କର ପୂର୍ବପୁରୁଷ। ଏକ ଶହ କି ଦୁଇଶହ ବର୍ଷର ଆତ୍ମା। କିମ୍ୱା ମାତ୍ର ଷାଠିଏ କି ସତୁରି ତଳର ଆତ୍ମା, ମହାକାଶରେ ଘୁରି ଘୁରି ଉପଯୁକ୍ତ ସମୟରେ

ଆମର ଇଚ୍ଛା ପୂରଣ ପାଇଁ ପୁନର୍ଜନ୍ମ ନେଉଛୁ। ଆମକୁ ରୋକିବାକୁ କାହାରି ବଳ ନାହିଁ। କାହାରି ସାମର୍ଥ୍ୟ ନାହିଁ। ଆମେ ସେଇ ସୁଦୂର ଅତୀତର ଅତୃପ୍ତ ଆତ୍ମା। ଆଜିକାଲି ଭବିଷ୍ୟତର ଅବଶ୍ୟମ୍ଭାବୀ ପରିଣତ।

ମଉସା, ଅତୀତରେ ଆପଣ ମୋର ପୁତ୍ର ଥିଲେ କି ପୌତ୍ରଥିଲେ ମୋତେ ଜଣାନାହିଁ କିନ୍ତୁ ଏକଥା ନିର୍ଦ୍ଧାଯ୍ୟ ଓ ଦୁର୍ବାର ଭାବରେ ସତ୍ୟ ଯେ 'ମୁଁ' ଆପଣଙ୍କର ପୂର୍ବପୁରୁଷ।

ଆମେମାନେ ସମସ୍ତେ ସେଇ ଦୁଇଶହ ବର୍ଷ ଭିତରର ଅତୀତ ମଣିଷ। ଆମେ ସମସ୍ତେ ନଅଙ୍କ ଦୁର୍ଭିକ୍ଷରେ କ୍ଷୁଧା ତୃଷାରେ ଆକୁଳ ହୋଇ ଛଟପଟ ହୋଇ ମୃତ୍ୟୁବରଣ କରିଥିବା ଆପଣଙ୍କର ପୂର୍ବପୁରୁଷ। ଦେଖି ପାରୁଛନ୍ତି ମଉସା, ଇତିହାସର ପୃଷ୍ଠା ଖୋଲି ଦିଅନ୍ତୁ, ଅର୍କାଇଭ ଅଫିସର ପୁରୁଣା ଫାଇଲ ଘାଣ୍ଟି ଦେଖନ୍ତୁ—ସେଇଠି ଦେଖିବେ ଆମମାନଙ୍କର ଏକଦା ଜୀବିତ ରହିଥିବାର ପ୍ରମାଣ। ଆମେମାନେ ଦୁଇଶହ ବର୍ଷଧରି ଜନ୍ମ ନେଇଛୁ ଅନାହାର, ଅତ୍ୟାଚାରରେ ସନ୍ତାପିତ ହୋଇଛୁ, ଜମିଦାରର ଚାବୁକ୍‌ମାଡ଼ରେ ଜର୍ଜରିତ ହୋଇଛୁ, ଭୟରେ ପାଟି ଖୋଲି ନାହିଁ। ନିଜର ଝିଅବୋହୂ ମାନଙ୍କର ଇଜ୍ଜତ, ମାନ, ସମ୍ମାନ ନିଜ ଆଖି ଆଗରେ ଲୁଣ୍ଠିତ ହୋଇଯିବାର ଦେଖି ମଧ ଚୁପ୍‌ଚାପ୍ ସହ୍ୟ କରି ରହିଛୁ। ଆମେ ଦେଖିଛୁ କଳାପାହାଡ଼ର ଅତ୍ୟାଚାର, ମରହଟ୍ଟା ବର୍ଗୀମାନଙ୍କର ଅତ୍ୟାଚାର। ପରିଶେଷରେ ଇଂରେଜମାନଙ୍କର ଅତ୍ୟାଚାର। ଭିତରେ ଭିତରେ କୁହୁଳୁ ଥିଲେ ବି ଆମେମାନେ ଦାବାଗ୍ନି ରୂପରେ ଜଳି ପାରି ନଥିଲୁ। ମୁଷ୍ଟିମେୟ କର୍ମଚାରୀମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରଦେଶ ବାହାରର। ଇଂରେଜମାନଙ୍କୁ ଅନୁକରଣ କରିବାର ସାହସ, ସାମର୍ଥ୍ୟ ଆମର ନଥିଲା, ଭିନ୍ନ ପ୍ରଦେଶର ଅନୁଗତ ରାଜକର୍ମଚାରୀ ଇଂରାଜୀ ଅନୁକରଣର ଠାଣୀ ତାଙ୍କର ଆଚାର ବ୍ୟବହାର, ବିଳାସବ୍ୟସନକୁ ଆମେ ଦୂରରେ ଥାଇ ବୁଭୁକ୍ଷୁ ଆଖିରେ ଚାହିଁ ରହିଥିଲୁ। ଏମିତି ଆଶାରେ ଆଶାରେ ଆମର କେତେ ଜନ୍ମ ପାର ହୋଇ ଯାଇଛି। ଭିତରେ ସଂଗୁପ୍ତ ହୋଇ ରହିବା ଉପଭୋଗର ଇଚ୍ଛା ବିଭିନ୍ନ କାମନା, ଆତ୍ମାକୁ ଧୀରେ ଧୀରେ ତାର କାଳ ଫାସରେ ଜନ୍ମ ଜନ୍ମ ଧରି ଆବଦ୍ଧ କରି ରଖିଛି।

ଆମେ ସେଇ ବୁଭୁକ୍ଷିତ, କାମନାର ଅତୃପ୍ତ ଅଗ୍ନିରେ ଅହରହ ଜଳୁଥିବା ବ୍ୟସ୍ତ, ବିକଳିତ ଆତ୍ମା। ଆମେ ଜନ୍ମ ନେଇଛୁ ବିଂଶ ଶତାବ୍ଦୀର ଏହି ଉତ୍ତର ଭାଗରେ।

ମଉସା ବିଶ୍ୱର ପ୍ରାକୃତିକ ନିୟମାନୁସାରେ ସବୁଥିର ଗୋଟିଏ ସମୟ ଅଛି। ଗ୍ରୀଷ୍ମ ଋତୁରେ ଯୋଉ ଫଳ ଫଳେ, ଶୀତ ଋତୁରେ ଏହା ନଥାଏ। ଋତୁର ବିଭିନ୍ନତାରେ ପ୍ରକୃତିର ପ୍ରାଣୀ ଜଗତର ବିଭିନ୍ନ ପ୍ରକାଶ ଘଟିଥାଏ। ସେଇ ପ୍ରକାର ଜଳବାୟୁ; ସେଇ ପ୍ରକାର ଉଷ୍ଣତା, ଭିତରେ ଉଦ୍ଭିଦ ଓ ପ୍ରାଣୀ ଜଗତର ଆର୍ବିଭାବ ଘଟିଥାଏ। ମଣିଷର ବି ସେମିତି ସମୟ ଅଛି। ସତ୍ୱ, ରଜ ଓ ତମ ଗୁଣର ମଧ ଏହିପରି

ଏକ ପ୍ରାକୃତିକ ଋତୁଚକ୍ର ରହିଛି। କିନ୍ତୁ କେହି ଚିରସ୍ଥାୟୀ ନୁହେଁ। ସତ୍ୱ ଗୁଣକୁ, ରଜ ଗୁଣକୁ ଆଚ୍ଛନ୍ନ କରି ସମୟାନୁସାରେ ତମୋ ଗୁଣ ପ୍ରବଳ ହୁଏ। ପୁଣି ସମୟାନୁସାରେ ରଜ ଓ ସତ୍ତ୍ୱ ଗୁଣ ମଧ୍ୟ ସେମିତି ରାଜତ୍ୱ କରିଥାନ୍ତି କିଛି ସମୟ ଧରି।

ବିଂଶଶତାବ୍ଦୀର ଉତ୍ତର ଭାଗ ଆମର ଅନୁକୂଳ ସମୟ। ଏହି ସମୟରେ ଆମେ, ଆପଣମାନଙ୍କ ପୂର୍ବପୁରୁଷମାନେ, ଉତ୍ତର ଦାୟାଦ ଭାବରେ ଜନ୍ମ ନେଇଛୁ ଏହି ସମୟରେ। ଆପଣମାନେ ଆମକୁ ସହ୍ୟ କରିବାକୁ ବାଧ୍ୟ। ଆମେ ଆମର କାମନା ଚରିତାର୍ଥ କରିବାକୁ ବାଧ୍ୟ। ଆମେ ଆଜି ଅନ୍ୟାୟରେ ଟଙ୍କା ଉପାର୍ଜନ କରିବୁ। ହତ୍ୟା କରିବୁ, ବିଳାସବ୍ୟସନ ଭୋଗ କରିବୁ, ବର୍ଗୀପରି ଅତ୍ୟାଚାର କରି ଧନ ଅର୍ଜିବୁ, ମୁସଲମାନଙ୍କ ପରି ସ୍ତ୍ରୀ ହରଣ କରିବୁ, ଇଂରେଜମାନଙ୍କ ପରି ବ୍ୟାବସାୟିକ ଛଳନାରେ ରାଜ୍ୟ ଶାସନ କରିବୁ, ଆମେ ଉଚ୍ଛୃଙ୍ଖଳ ହେବୁ। ଆମେ ବ୍ୟଭିଚାର କରିବୁ।

ଏଇଟା ଆମ ସମୟ। ରଜ ଓ ତମର ସମୟ ଏଥିରେ ଆପଣମାନଙ୍କର ପ୍ରାର୍ଥନାର କିଛି ମୂଲ୍ୟ ନାହିଁ।

କିନ୍ତୁ ହତାଶ ହୁଅନ୍ତୁ ନାହିଁ। ମଉସା ଦୁଃଖ କରନ୍ତୁ ନାହିଁ। ପୁଣି ଆପଣ ମାନେ ଜନ୍ମ ନେବେ। ଆମର ଉତ୍ତର ଦାୟାଦ ରୂପରେ ଆପଣମାନଙ୍କର ଅନୁକୂଳ ସମୟରେ। ଅପେକ୍ଷା କରନ୍ତୁ। ଆମପରି କିଛିକାଳ ମହାଶୂନ୍ୟରେ ଅତୃପ୍ତ ଭାବରେ ଭଉଁରୀ ଖାଇ ବୁଲନ୍ତୁ।

ଯୋଉ ସତ୍ତ୍ୱ ଗୁଣର ବିଭୂତି ପାଇଁ ଯଥା ଦୟା, କ୍ଷମା, ନିରଭିମାନ, ଅଦାମ୍ଭିକତା, ଅହିଂସା, ନିର୍ଲୋଭତା, ପରୋପକାରିତାର ସନ୍ଧାନ ପାଇଁ ଆପଣମାନଙ୍କର ମନ ଓ ଆତ୍ମା ସନ୍ତୁଳିତ। ସେଇ ବିଭୂତିମାନଙ୍କ ପୂରଣ ପାଇଁ ଆପଣମାନେ ପୁଣି ଜନ୍ମ ନେବେ। ଉପଯୁକ୍ତ ସମୟରେ।

ସେଇ ବିରତିର ସମୟ ଟିକକ ଆମର। ଆମକୁ ପୂର୍ଣ୍ଣପ୍ରାଣରେ ଉପଭୋଗ କରିବା ପାଇଁ ଛାଡ଼ି ଦିଅନ୍ତୁ। ପର୍ବତ ଉପରେ କଇଁ ଫୁଟେନା, ମଉସା। ସେ ଆଶା ନିରର୍ଥକ।

-୦-

# ଆତ୍ମହତ୍ୟା

"ମୁଁ ଶପଥ କରି କହୁଛି ଯାହା କହିବି ସତ କହିବି।"

"ଗୀତା ଓ ତୁଳସୀ ଛୁଇଁ ଶପଥ କରନ୍ତୁ!" ପିଅନ ହାଙ୍କିଲା।

"ନା"

"ଆପଣଙ୍କୁ ଗୀତା ଓ ତୁଳସୀ ଛୁଇଁ ଶପଥ କରିବାକୁ ପଡ଼ିବ।" ଜଜ୍ ଆଦେଶ ଦେଲେ, "ଧର୍ମାବତାର ମୋର ପାଖରେ ଗୀତା ବା ତୁଳସୀର କିଛି ମୂଲ୍ୟ ନାହିଁ। ଅନ୍ୟ କୌଣସି ସାଧାରଣ ଜିନିଷ ପରି ସେଗୁଡ଼ା ନିହାତି ଅନାବଶ୍ୟକ ମୋ ପକ୍ଷରେ। ତେଣୁ ତାକୁ ଛୁଇଁବା ବା ନ ଛୁଇଁବା କିଛି ଯାଏ ଆସେ ନା। ମୁଁ ଧର୍ମାବତାରଙ୍କ ସାମନାରେ ଛିଡ଼ା ହୋଇ ଶପଥ କରୁଛି ସେଇ କ'ଣ ଯଥେଷ୍ଟ ନୁହେଁ।"

"ନା, କୋର୍ଟର ନିୟମ ପାଳନ କରିବାକୁ ହେବ।"

"ଧର୍ମାବତାର, ଆପଣଙ୍କର କହିବା ଅନୁଯାୟୀ ମୁଁ ଗୀତା ଛୁଇଁ ଶପଥ କରୁଛି ଯାହା କହିବି ସତ କହିବି।" ଜଜ୍ ଇଙ୍ଗିତ କଲେ ସରକାରୀ ଓକିଲଙ୍କ ଆଡ଼େ। ସରକାରୀ ଓକିଲ ଚାରିଆଡ଼କୁ ଥରେ ଚାହିଁ ନେଇ ଗଲା ଝାଡ଼ି ଆରମ୍ଭ କଲେ, ସାରା କୋର୍ଟ ରୁମ୍‌ରେ ଲୋକ ଖୁନ୍ଦି ହୋଇ ରହିଛନ୍ତି। ତଥାପି ଟିକିଏ ବି ଗୋଳମାଳ ନାହିଁ। କେବଳ ଶୁଣାଯାଉଛି ଭାରି ନିଃଶ୍ୱାସର ଆୱାଜ।

"ଆପଣଙ୍କ ନା ?"

"ବେଶ୍ୟା।"

ଗୋଟାଏ ଅସ୍ପଷ୍ଟ ଗୁଞ୍ଜରଣ ଖେଳିଗଲା କୋର୍ଟରୁମ୍ ଭିତରେ। ଅନେକ ରୁମାଲରେ ମୁହଁ ଚାପିଲେ। ସରକାରୀ ଓକିଲଙ୍କ ମୁହଁ କାଗଜ ପରି ଧଳା ହୋଇଗଲା।

"ଆପଣଙ୍କ ପ୍ରକୃତ ନାମ କ'ଣ ?" ଟିକିଏ ଅନିଶ୍ଚିତ ଗଳାରେ ମିଛ ଆତ୍ମବିଶ୍ୱାସ ଆଣି ପୁଣି ସେ ପଚାରିଲେ। "ମୋତେ ଅନେକ ଅନେକ ନାଁରେ ଡାକନ୍ତି। ତେଣୁ ମୋର ପ୍ରକୃତ ନାଁ କ'ଣ ? ମୁଁ ଏପର୍ଯ୍ୟନ୍ତ ଜାଣେ ନି। ତା' ଛଡ଼ା ଆପଣ ତ ଜାଣନ୍ତି ନାମ ପରିଚୟ ଆମର ଦରକାର ହୁଏ ନା। ତେବେ ଯଦି ନାଁ ଅଭାବରୁ ମକଦ୍ଦମା ଚଳିବାରେ ଅସୁବିଧା ହେବ ତେବେ କେତେଗୁଡ଼ିଏ ନାଁ କହିଯାଉଛି, ସେଇ ଭିତରୁ ଗୋଟେ ବାଛି ନେବେ। ଅନେକ କହନ୍ତି "ରାଣୀ", ଆଉ କେତେ କହନ୍ତି "ଦିଲ୍‌ୱାଲୀ", ଆଉ କେତେ କହନ୍ତି "ଗୁଲାବ" ଆଉ—"

କୋର୍ଟ ରୁମ୍ ହାସ୍ୟରୋଳରେ ଫାଟିପଡ଼ିଲା। ସରକାରୀ ଓକିଲଙ୍କ ମୁହଁରେ ଝାଳର ବନ୍ୟା ଛୁଟିଛି। ଦୁଇ ଚାରିଥର ଢୋକ ଗିଳି ସାରିଲେଣି। କାନମୁଣ୍ଡା ଗୁଡ଼ିକ କଅଁଳିଆ ପତ୍ରପରି ଲାଲ ହୋଇଗଲାଣି। ଜଜ୍‌ଙ୍କ ମୁହଁ ଗମ୍ଭୀରତର ହୋଇ ଉଠୁଛି।

ଲାଲ ପଡ଼ି ଆସୁଛି ଗୋରା ଡକ ଡକ ମୁହଁ। ଟେବୁଲ ବାଡ଼େଇ ଗର୍ଜନ କରି ସେ ଆଦେଶ ଦେଲେ ଏମିତି ଗଣ୍ଡଗୋଳ ହେଲେ ସେ କୋର୍ଟ ରୁମ୍‌ରୁ ସବୁ ଦର୍ଶକଙ୍କୁ ବାହାର କରିଦେଇ ବିଚାର ଆରମ୍ଭ କରିବେ। କ୍ଷଣକ ମଧ୍ୟରେ ସବୁ ଶାନ୍ତ ହୋଇଗଲା। ତା ପରେ ସେ ଶୁଷ୍କ କଠିନ ଗଳାରେ ଆସାମୀ ଆଡ଼କୁ ଚାହିଁ ପ୍ରଶ୍ନ କଲେ, ଆପଣଙ୍କ ନାଁ ଚାମେଲୀ ବାଈ ନୁହେଁ?''

''ଧର୍ମବତାର ଅନେକ ବି ମୋତେ ସେଇ ନାଁରେ ଜାଣନ୍ତି।''

ଗୋଟାଏ ଦୋହସ ଚିଁ କରି ଉଠି ପୁଣି ଚାପି ହୋଇଗଲା।

''ଆପଣଙ୍କର ପୂରା ନାଁ ? ଆପଣଙ୍କର ସଂଜ୍ଞା କଣ ?''

''ହଜୁର, ବାଈ।''

ମୁରୁକି ହସର ଗୋଟାଏ ତରଙ୍ଗାୟିତ ଢ଼େଉ ଏପଟ ସେପଟ ଖେଳିଗଲା କୋର୍ଟ ରୁମ୍ ଭିତରେ। ଜଜଙ୍କ ମୁହଁରେ ବି ବିନ୍ଦୁ ବିନ୍ଦୁ ଝାଳ। ଜଣେ ବିଖ୍ୟାତ ବିଚାର ପତି ଭାବରେ ତାଙ୍କର ବିଶେଷ ନାଁ ଅଛି। ଜୀବନରେ ଅନେକ କଠିନ ଓ ଜଟିଳ କେସ୍‌ର ସେ ବିଚାର କରିଛନ୍ତି। ବିଭିନ୍ନ ପ୍ରକାର ଲୋକ, ସାକ୍ଷୀ ଓ ଓକିଲ ସେ ତାଙ୍କ ବିଚାରପତି ଜୀବନ ଭିତରେ ଦେଖି ଆସିଛନ୍ତି। କେବେ ହେଲେ ତାଙ୍କୁ ଗୋଟିଏ ମୁହୂର୍ତ୍ତ ପାଇଁ ବିଚଳିତ ହେବାର ଦେଖା ଯାଇନାହିଁ। ଯେତେ ବଡ଼ ଚୋର, ଡକାୟତ ହେଉନା କାହିଁକି, ତାଙ୍କ ସାମନାରେ ଠିଆ ହେଲେ ଆପେ ଆପେ ସତକଥା ବାହାରି ପଡୁଥିଲା ତାଙ୍କର। ଅଥଚ ଏଭଳି ଏକ ବିଚାରପତି ଆଗରେ ଛିଡ଼ା ହୋଇ ଗୋଟାଏ ସାମାନ୍ୟ ବେଶ୍ୟା କେମିତି ଅବଜ୍ଞାସୂଚକ ଉତ୍ତର ଦେଇଯାଉଛି। ସମସ୍ତେ ତା ପ୍ରତି ଏକ ସପ୍ରଶଂସ ଦୃଷ୍ଟିରେ ଚାହିଁ ରହିଲେ। ଆଉ ବିଚଳିତ ବିଚାରପତିଙ୍କ ଆଡ଼େ ସମସ୍ତ ଓକିଲ ମହଲ ଓ ଦର୍ଶକ ଆଶ୍ଚର୍ଯ୍ୟ ଭାବରେ ବିସ୍ମିତ ହୋଇ ବାରମ୍ବାର ପରସ୍ପରର ମୁହଁ ଚାହାଁଚାହିଁ ହେବାକୁ ଲାଗିଲେ।

ପୂରା ଦୁଇ ମିନିଟ୍ ପରେ ମାଜିଷ୍ଟ୍ରେଟ୍ ତାଙ୍କ ପୂର୍ବ ଗାମ୍ଭୀର୍ଯ୍ୟ ଫେରାଇ ଆଣି ଦୃଢ଼ କଣ୍ଠରେ କହିଲେ ''ଚାମେଲି ବାଈ, ଆପଣଙ୍କୁ ଯେଉଁ ଯେଉଁ ପ୍ରଶ୍ନ କରାଯାଉଚି ତାର ଯଥାଯଥ ଉତ୍ତର ନ ଦେଲେ ମୁଁ କଠିନ ଶାସ୍ତି ଦେବାର ବ୍ୟବସ୍ଥା କରିବି।''

''ଧର୍ମାବତାର, ଯୋଉ ପ୍ରଶ୍ନର ଉତ୍ତର ମୁଁ ନିଜେ ଜାଣେ ନା ତାର ଉତ୍ତର ଦେବି କିପରି ? ମୁଁ ଜାଣେ ମୋର ନାଁ ବେଶ୍ୟା, ମୋର ଜାତି ବେଶ୍ୟା, ମୋର ଧର୍ମ ବେଶ୍ୟା, ମୋର କର୍ମ ବେଶ୍ୟାବୃତ୍ତି। ୟାଛଡ଼ା ମୋର ଆଉ କୌଣସି ପରିଚୟ ନାହିଁ।''

ସାରା କୋର୍ଟରେ ଏକ ଅଦ୍ଭୁତ ଧରଣର ନୀରବତା।

''ଆପଣଙ୍କ ଘର ?

"ବେଶ୍ୟାଖାନା।"

ପ୍ରଥମ ହସର ଝଡ଼ କଟିଯାଇଛି। କାହାରି ମୁହଁରେ ହସ ନାହିଁ।

"ଆପଣଙ୍କର ପିତା ମାତା ?"

"ଥିବେ ନିଶ୍ଚୟ! ତା ନ ହେଲେ ମୋର ଜନ୍ମ ହେଲା କେମିତି ? ତେବେ ମୁଁ ସେମାନଙ୍କୁ ଜାଣିନି କି ଜାଣିବାର ଚେଷ୍ଟା କରିନି।"

ଜଜ୍ ଭ୍ରୂକ୍ଷେପ କରୁନାହାନ୍ତି। ମୁହଁରେ କଠିନତାର ମୁଖୋସ ଭୟଙ୍କର ଦିଶୁଛି।

"ଏ ସହରକୁ ଆସିବା ଆଗରୁ କୋଉଠି ଥିଲେ ?"

"ଧର୍ମାବତାରଙ୍କୁ ନିଶ୍ଚୟ ଗୋଚର ଥିବ।"

ଜଜ୍‌ଙ୍କ ଗମ୍ଭୀର ମୁହଁରେ କିପରି ଗୋଟାଏ ଛାଇ ଖେଳିଗଲା କ୍ଷଣକ ପାଇଁ। ଅଚଞ୍ଚଳ ସ୍ଥିର ଆଖି ଡ଼ୋଳା ଦୁଇଟା କ୍ଷଣକ ପାଇଁ ଥରଥର ହୋଇ ଉଠିଲେ। ଝାଳବିନ୍ଦୁ ଗୁଡ଼ାକ ବଡ଼ ବଡ଼ ଟୋପା ହୋଇ ଗଡ଼ିବାକୁ ଆରମ୍ଭ କଲାଣି। ଦର୍ଶକମାନଙ୍କ ମୁହଁରେ ଉଦ୍‌ବିଗ୍ନତାର ଛାପ ପରିଷ୍କାର ଫୁଟି ଉଠିଛି। କି ସାହସ କି ଦମ୍ଭ ଏ ମାଇକିନିଆଟାର। ସମସ୍ତେ ଏକ ଦୃଷ୍ଟିରେ ଚାହିଁ ରହିଲେ ଜଜ୍‌ଙ୍କ ଆଡ଼େ।

"ମୁଁ ଆପଣଙ୍କୁ ଶେଷଥର ପାଇଁ ସାବଧାନ କରି ଦେଉଛି।" ଶୁଷ୍କକଣ୍ଠ ଶୁଷ୍କତର ହୋଇଛି କିନ୍ତୁ ଜଣାଗଲା କିମିତି ଗୋଟିଏ ଥରିଲା ଥରିଲା ଭାବ ସେ ଭିତରେ।

"ଧର୍ମାବତାର! ମୋର କହିବା କଥା ହେଲା ପୋଲିସ ରେକର୍ଡ଼ରୁ ନିଶ୍ଚୟ ମୋ ବିଷୟ ଆପଣ ଜାଣିଥିବେ। ମୋର ଆଉ ଅନ୍ୟ କିଛି ଉଦ୍ଦେଶ୍ୟ ନଥିଲା। ସେଥିରେ ମୋ ବିଷୟରେ ଯାହା ଲେଖା ଅଛି ମୁଁ ସେ ସବୁ ସ୍ୱୀକାର କରି ନେଇଛି।"

ଜଜ୍ ଫେରି ଚାହିଁଲେ ସରକାରୀ ଓକିଲଙ୍କ ଆଡ଼େ। ସରକାରୀ ଓକିଲ ଏତେ ପର୍ଯ୍ୟନ୍ତ ଜୋକ ମୁହଁରେ ଲୁଣ ଦେଲାପରି ଗୋଟାଏ କଣରେ ଲୁଚି ବସିଥିଲେ। ଆଉ ବାରମ୍ବାର ରୁମାଲରେ ମୁହଁ ପୋଛୁଥିଲେ। ରାଗ ଅପମାନ ଓ ଲଜ୍ଜାରେ ତାଙ୍କ ମୁହଁ ଗୋଟାଏ କିମ୍ଭୁତ କିମାକାର ରୂପ ଧାରଣ କରିଥାଏ। ହଠାତ୍ ଜଜ୍‌ଙ୍କ ଇଙ୍ଗିତ ପାଇ ସେ ତ୍ରସ୍ତବ୍ୟସ୍ତ ହୋଇ ଉଠି ପଡ଼ିଲେ। କିଛି ସମୟ ପର୍ଯ୍ୟନ୍ତ ସେ ତଳକୁ ମୁହଁ କରି କାଗଜପତ୍ର ଓଲଟାଇବା ବାହାନାରେ ସାହସ ସଞ୍ଚୟ କରୁଥିଲେ। ତା ପରେ ସେ ତାଙ୍କର ପୂର୍ଣ୍ଣ ଅଭିଯୋଗ ଆରମ୍ଭ କଲେ। ସାରାଂଶ ହେଲା ଏଇ ଯେ ଚାମେଲି ବାଈର ଗତ ସାତ ତାରିଖ ନଭେମ୍ବର ରାତିରେ ମେଡ଼ିକାଲ୍‌ରେ ଗୋଟିଏ ଝିଅ ଜନ୍ମ ହୁଏ। ତା ପରେ ଆଠ ତାରିଖ ଦିନ ସନ୍ଧ୍ୟା ବେଳେ ଯେତେବେଳେ ନର୍ସ ଛୁଆଟିକୁ ଆଣି ତା ପାଖରେ ଶୁଆଇ ଦେଇଯାଏ ସମସ୍ତଙ୍କ ଅଲକ୍ଷ୍ୟରେ ଚାମେଲି ବାଈ ତାର ତଣ୍ଟି ଚିପି ହତ୍ୟା କରେ। ପରେ ବାଥ୍‌ରୁମ୍‌ରେ ତାର ଶବ

ମିଳେ। ଡିଉଟି ନର୍ସ ତାକୁ ଦେଖି ଚିତ୍କାର କରେ। ତାର ଚିତ୍କାର ଶୁଣି ଷ୍ଟାଫ୍ ସର୍ଜନ ଘଟଣା ସ୍ଥଳରେ ଉପସ୍ଥିତ ହୁଅନ୍ତି ଓ ପୋଲିସ୍‌କୁ ଫୋନ୍ କରନ୍ତି। ନର୍ସ ଓ ସର୍ଜନଙ୍କ ଜମାନବନ୍ଦୀ ଅନୁଯାୟୀ ପୋଲିସ୍ ଚାମେଲି ବାଈକୁ ଗ୍ରେପ୍ତାର କରେ।

ସରକାରୀ ଓକିଲ ପ୍ରଥମେ ପ୍ରଥମେ ଟିକିଏ ବିବ୍ରତ ହୋଇ ଯାଇଥିଲେ କିନ୍ତୁ ପରେ ଆସ୍ତେ ଆସ୍ତେ ସାହସ ସଞ୍ଚୟ କରି ତାଙ୍କର ଯୁକ୍ତି ଦେଖାଇବାକୁ ଲାଗିଲେ। ତାଙ୍କର ବକ୍ତୃତା ଭିତରେ ଯୁକ୍ତି ଅବଶ୍ୟ କିଛି ନଥିଲା। ଥିଲା ଖାଲି ମା ଓ ଶିଶୁ ସମ୍ବନ୍ଧରେ ଏକ ଭାବପ୍ରବଣତାର ପ୍ରବନ୍ଧ। ଜର୍ଜ୍ ୱାଶିଂଟନଙ୍କ କୋଟେସନ୍ ଦେଇ ସେ କହିଲେ ଯେ ପୃଥିବୀରେ ଏ ପର୍ଯ୍ୟନ୍ତ ଗୋଟାଏ ଜିନିଷ ଅମଳିନ ରହିଛି। ସେଇଟା ଯୋଉ ଦିନ ଅପବିତ୍ର ହେବ ସେହି ଦିନ ହିଁ ପୃଥିବୀର ଶେଷ। ଏ ଜିନିଷଟା ହେଉଛି ମା ଓ ଶିଶୁ ଭିତରେ ପବିତ୍ର ସମ୍ବନ୍ଧ। ଯେଉଁ ନାରୀ ତାର ନିଜ ରକ୍ତ ମାଂସରେ ଗଢ଼ା ଶିଶୁକୁ, ନିଜ ବକ୍ଷ ଭିତରେ ବଢ଼ାଇ ଆଣି ନିଷ୍ପାପ ଜୀବନର କଳିକାକୁ ନିର୍ମମ ଭାବରେ ହତ୍ୟାକରେ ତାଠାରୁ ବଳି ଘୃଣ୍ୟ, ଜଘନ୍ୟ; ନୀଚ ପୃଥିବୀରେ ଆଉ କିଛି ନାହିଁ ଇତ୍ୟାଦି ଇତ୍ୟାଦି। ପୂର୍ବଦିନ ନର୍ସ ଓ ପୋଲିସ୍‌ଙ୍କ ଜବାବ ସୁଆଲ ସରିଥିଲା। ଏଣୁ ସବୁ ସାକ୍ଷୀଙ୍କ ଉକ୍ତି ଦେଇ ସେ ପ୍ରମାଣ କଲେ ଯେ ଚାମେଲି ବାଈ ହତ୍ୟାକାରିଣୀ। ଏଣୁ ତାଙ୍କୁ ଫାଶି ହେବା ଉଚିତ।

ଚାମେଲି ବାଈ ନୀରବରେ ସବୁ ଶୁଣୁଥିଲେ। ନିର୍ବିକାର, ନିର୍ଲିପ୍ତ ଭାବରେ ଅନୁତାପର ଲେଶମାତ୍ର ଛାୟା ତା ମୁହଁରେ ନଥିଲା। ମଝିରେ ମଝିରେ ମୁଚୁକି ମୁଚୁକି ହସୁଥାଏ ସେ। ଓକିଲଙ୍କ ଭାଷଣରେ ଦର୍ଶକମାନେ ବିତୃଷ୍ଣାରେ ଭରି ଉଠୁଥିଲେ। ଇସ୍ କି ଜଘନ୍ୟ ଏ ସ୍ତ୍ରୀ ଲୋକଟା। ବେଶ୍ୟା ହେଲେ ବି ସେ ତ ମା। ଛି—ଛି—ଛି ମାତୃତ୍ୱ ବୋଲି ତାର କିଛି ନାହିଁ, ମନୁଷ୍ୟତ୍ୱ ବି ନାହିଁ। ଏଗୁଡ଼ା ନିହାତି କଦର୍ଯ୍ୟ ମାଇକିନିଆ। ପଶୁଠାରୁ ବି ହୀନ।

ସରକାରୀ ଓକିଲ ଗଳା ଝାଡ଼ି ବକ୍ତୃତା ଶେଷ କଲାପରେ ଜଜ୍ ପଚାରିଲେ—

"ଚାମେଲି ବାଈ, ଆପଣଙ୍କର କିଛି କହିବାର ଅଛି ?"

"ନାଁ, ଧର୍ମାବତାର"

"ଆପଣ ତା ହେଲେ ସବୁ ଅଭିଯୋଗ ସ୍ୱୀକାର କରୁଛନ୍ତି ?"

"ଆଜ୍ଞା ଧର୍ମାବତାରର"

"ଆପଣଙ୍କର ଓକିଲ କିଏ ?"

"କେହି ନାହିଁ।"

ଆପଣ ଓକିଲ ଦେବାକୁ ଚାହାଁନ୍ତି ଯଦି ମୁଁ ସମୟ ଦେବାକୁ ରାଜି ଅଛି।"

"ଧର୍ମାବତାରଙ୍କ ଅସୀମଦୟା। ମୁଁ ଯେତେବେଳେ ସବୁ ଅଭିଯୋଗକୁ ସ୍ୱୀକାର କରି ଯାଉଛି, ଓକିଲ ଦେବାର ପ୍ରଶ୍ନ ଉଠୁନାହିଁ। ଯାହା ଦଣ୍ଡ ପାଇବାର ମୁଁ ଉପଯୁକ୍ତ ସେଇଆ ମୋତେ ଦିଆଯିବାକୁ ହୁକୁମ ହେଉ।"

"ଚାମେଲି ବାଈ ! ଆପଣ କାହିଁକି ଆପଣଙ୍କ ଝିଅକୁ ହତ୍ୟା କଲେ ? କାହାରିକୁ ରକ୍ଷା କରିବାକୁ ବା କାହାରି ପ୍ରରୋଚନାରେ ପଡ଼ି ଆପଣ ଏ କାମ କରିଛନ୍ତି କି ?

"ସେଇଟା ମୋ ଇଚ୍ଛା । ମୋ ଝିଅର ଭବିଷ୍ୟତ ମୁଁ ଦେଖିବାକୁ ସମର୍ଥ । ମୋତେ ଏଥିପାଇଁ କାହାରି ପ୍ରରୋଚନା ଦେବାର ଦରକାର ମଣେ ନାହିଁ ।"

"ନା, ଆପଣଙ୍କର ଇଚ୍ଛା ଅନିଚ୍ଛା ନୁହେଁ । ସେଥିପାଇଁ ନିୟମ କାନୁନ ରହିଛି । ଏହା ଆଗକୁ ଆପଣ କଣ ଭାବିଥିଲେ ପରିଣାମ କଣ ହେବ ?"

"ଆଜ୍ଞା, ଧର୍ମାବତାର ।"

"ତେବେ କାହିଁକି—

"ଧର୍ମାବତାର, ଏ ପ୍ରଶ୍ନର କେଶ୍ ସହିତ ସମ୍ପର୍କ ନାହିଁ ।"

"ସେଇଟା ମୁଁ ବୁଝିବି ।"

"ମୁଁ ଏ ପ୍ରଶ୍ନର ଉତ୍ତର ଦେବିନି ।"

"ମୁଁ ଆପଣଙ୍କୁ ଦୁଇଦିନ ସମୟ ଦେଉଛି, ଭାବିଚିନ୍ତି କହନ୍ତୁ ।"

"ମୋତେ ହଜାରେ ବର୍ଷ ସମୟ ଦେଲେ ବି ମୁଁ ତାର ଉତ୍ତର ଦେବିନି ।"

* * * * * *

ଚାମେଲି ବାଈର ଫାଶୀ ହୋଇ ଯିବାର ସପ୍ତମ ଦିନ ପ୍ରସିଦ୍ଧ ବିଚାରପତି ଶ୍ରୀ ହରିବନ୍ଧୁ ମିଶ୍ର ଆତ୍ମହତ୍ୟା କଲେ, ତାର କାରଣ ଏ ପର୍ଯ୍ୟନ୍ତ ଜଣା ପଡ଼ିନି ।

-୦-

# ଭୂତୁଣୀ ଉପାଖ୍ୟାନ

ଭୁବନେଶ୍ୱରର ସତ୍ୟନଗରର ମଶାଣିର ଗୋଟାଏ ଝଙ୍କାଳିଆ 'ଆକାସିଆ'ବା ତତ୍‌ନାମଧେୟ କୌଣସି ନୂଆ ପ୍ରକାର ବୃକ୍ଷରେ ଜଣେ ଭୂତୁଣୀ ବାସ କରୁଥିଲା ।

ଯଦିଓ ଏପରି ଆଲୋକଜ୍ଜ୍ୱଳ ଶ୍ମଶାନ ଭିତରେ କୌଣସି ଭୂତପ୍ରେତର ରହିବାର ଉପଯୁକ୍ତ ସ୍ଥାନ ନୁହେଁ ଏବଂ ଥୁଣ୍ଟା ଅଶ୍ୱତ୍‌ଥ ଗଛ, ଝଙ୍କାଳିଆ ବରଗଛ ଅଥବା ସାହାଡ଼ା ବା ଅର୍ଜ୍ଜୁନ ଗଛ ପ୍ରଭୃତି ଭୂତ ପ୍ରେତମାନଙ୍କର ରହିବା ପରି ଉପଯୁକ୍ତ ଗୃହ ନାହିଁ, ତଥାପି ବାଧ୍ୟହୋଇ ତାକୁ ସେଠାରେ ରହିବାକୁ ପଡୁଥିଲା । ତା ଛଡ଼ା ଭୁବନେଶ୍ୱର-କଟକ ମୁଖ୍ୟ ରାସ୍ତା କଡ଼ରେ ହୋଇଥିବାରୁ ସାରାରାତି ଯାନବାହନ ଚଳାଚଳ କରୁଥିବାରୁ ତାକୁ ନିର୍ଭୟରେ, ଏକୁଟିଆ ନିର୍ଜନରେ ବୁଲିବାକୁ ସୁବିଧା ମଧ୍ୟ ମିଳୁ ନଥିଲା । ଯୋଉ କେତେକ ଏକୁଟିଆ ବାଟୋଇ ସେ ରାସ୍ତାରେ ମଧ ରାତ୍ରିରେ ଯିବା ଆସିବା କରୁଥିଲେ ସେମାନେ ପ୍ରଚୁର ମଦ୍ୟପାନ ଦ୍ୱାରା ଏପରି ନିଶାଗ୍ରସ୍ତ ହୋଇପଡ଼ିଥାନ୍ତି ଯେ ତାକୁ ଭୟ ଦେଖାଇବାର ମଧ ଉପାୟ ନଥିଲା । ନିଶାଗ୍ରସ୍ତ ଲୋକଙ୍କୁ ଭୂତଗ୍ରସ୍ତ କରିବା ମଧ ଆଦୌ ସମ୍ଭବପର ନଥିଲା । ଏପରି ଅବସ୍ଥାରେ ଭୂତୁଣୀଟି ଏକୁଟିଆ ବହୁ ମନସ୍ତାପରେ କାଳଯାପନ କରୁଥାଏ କାରଣ ତାର କେହି ବନ୍ଧୁ ବାନ୍ଧବ ମଧ ନଥିଲେ । ସେ ମନେ ମନେ ଆଶ୍ଚର୍ଯ୍ୟ ହେଉଥିଲେ ଯେ ଏଠାରେ ଏତେ ଲୋକ ମୃତ୍ୟୁବରଣ କଲେ ସୁଦ୍ଧା ଜଣେ ସୁଦ୍ଧା କାହିଁକି ଭୂତ ହେଉ ନାହାନ୍ତି । ସେ ମନେ ମନେ ସ୍ଥିର କଲା ଯେ ଭୁବନେଶ୍ୱର ଏକ ଶିବକ୍ଷେତ୍ର ହୋଇଥିବାରୁ ଏଠାରେ ମୃତ୍ୟୁବରଣ କରୁଥିବା ଲୋକ ଚଟାପଟ୍ ସ୍ୱର୍ଗକୁ ଚାଲି ଯାଉଥିବାରୁ ଭୂତ ହେବାର ସୁଯୋଗ ଖୁବ୍ କମ୍ । ଅଥବା ଏଇଆ ହୋଇପାରେ ଯେ ଏଠିକାର ବାସିନ୍ଦାମାନଙ୍କର 'ଆତ୍ମା' ବୋଲି ଜିନିଷଟିଏ ନ ଥିବାରୁ ସେମାନେ ସ୍ଥୂଳ ଦେହରେହିଁ ବିନାଶପ୍ରାପ୍ତ ହେଉଥିଲେ ।

ଆମ ଭୂତୁଣୀଟି କିନ୍ତୁ ଭୁବନେଶ୍ୱରର ବାସିନ୍ଦା ନୁହଁ । ଜୀବିତ ଅବସ୍ଥାରେ ତାର ଗାଁ ଥିଲା ପିପିଲି ପାଖରେ । ସେ ଦାଣ୍ଡମୁକୁନ୍ଦପୁରରେ ବିଭା ହୋଇଥିଲା । ତା ବାପ ଲୁନାଟିଏ ଓ ଟି.ଭି.ଟିଏ ଯୌତୁକ ଦେବ ବୋଲି ବିବାହ ସମୟରେ କଣ୍ଟ କରିଥିବା ସତ୍ତ୍ୱେ ଠିକ ସମୟରେ ଦେଇପାରି ନଥିଲା । ତେଣୁ ବିଭାଘରର ଛମାସ ପରଠାରୁ ତା ଉପରେ ଶାଶୁ ନଣନ୍ଦଙ୍କ ଗାଳି ଓ ଅତ୍ୟାଚାର ଆରମ୍ଭ ହୋଇ ଯାଇଥିଲା । ତା ସ୍ୱାମୀ ଯେକି ଭୁବନେଶ୍ୱରର କୋଉ ଗୋଟାଏ ଅଫିସରେ ପିଅନ ଥିଲା, ସେ ମଧ ଦିନକୁ ଦିନ ତା ଉପରେ ବିରକ୍ତ ହେଉଥିଲା ଏବଂ ମଝିରେ ମଝିରେ ବିଧା ଗୋଇଠା ମାରିବାକୁ ଛାଡୁ ନଥିଲା । ଅବଶ୍ୟ ଏହାପଛରେ

ଶାଶୁ ନଣନ୍ଦଙ୍କ ହାତ ଥିଲା । ବିଚରା ଭୁବନେଶ୍ୱରରୁ କ୍ଳାନ୍ତହୋଇ ଘରକୁ ଫେରିଲା ବେଳକୁ ମା ଝିଅ ଦୁହେଁ ତା ନାଁରେ ନଗେଇ ତା ଆଗରେ ଗପୁଥିଲେ । ସେ କୁଆଡ଼େ ଅଣ୍ଡିରି ଚଣ୍ଡୀ, ବେହିଆଣୀ, ଅଲାଜୁକି, ବେସରମି । ସାଇ ଟୋକାକୁ ଅନେଇଥିବ । ପଡ଼ିଶା ଘର ଟୋକା ସାଙ୍ଗରେ ହିଁ ହିଁ ହେଉଥିଲା ଲୁଚେଇ ଲୁଚେଇ ଇତ୍ୟାଦି ଇତ୍ୟାଦି । ତା ଛଡ଼ା ତା ବୋପା ଯେ ତାକୁ ଠକିଦେଲା ଏକଥା ମଧ ସେମାନେ ତାକୁ ବାରମ୍ବାର ଚେତେଇ ଦେଉଥିଲେ । ଥରେ ମାର ଧର୍ କରି ତାକୁ ତା ବାପଘରେ ଛାଡ଼ିଦେଇ ଆସିଥିଲା । ତା ବାପା ବୋଉ ପୁଣି ବୁଝେଇ ସୁଝେଇ ଆଣି ଏଇଠି ଛାଡ଼ି ଦେଇଥିଲେ ଦୁଇଶହ ଟଙ୍କା ବେଭାର ଦେଇ । ତା ବାପା ପୁଣି ତିନିମାସ ସମୟ ନେଇଥିଲା ଜିନିଷ ଦେବାକୁ ।

ତା ବାପାଟା ବି ସେମିତି । ନ ଦେବୁ ଯଦି ହଁ କରୁଥିଲୁ କାହିଁକି ? ଜାଣିଥିଲୁ ତ ତୋ ସାମର୍ଥ୍ୟ । ହଁ ଭରିଲୁ କାହିଁକି ? ଖାଲି ଝିଅକୁ ଯେମିତି ପ୍ରକାରେ ବିଦା କରିଦେଲେ ଗଲା ମିଛ ସତ କହି । ତେଣିକି ସେ ମରୁ କି ବଞ୍ଚୁ ।

(ଭୂତୁଣୀ ମନେ ମନେ ତା ବାପକୁ ବହେ ଗାଳି ଦେଲା) ଏମିତି ଅବସ୍ଥାରେ ଦିନେ ଶାଶୁ ନଣନ୍ଦ ଦିଅର ସାଙ୍ଗରେ ମିଶି ତା ଦିହରେ କିରୋସିନି ଢ଼ାଳି ନିଆଁ ଲଗେଇ ଦେଲେ । ଶଶୁର କବାଟ କିଳିଦେଲେ । ମୁହଁତ ବନ୍ଧା ହୋଇଥାଏ । ପାଟି କରିବ କେମିତି ? ଏତିକିବେଳେ ଯୋଗକୁ କିଏ ଜଣେ ଧୂଆଁ ଦେଖି ପାଟି କରିବାରୁ ଗାଁ ଲୋକେ ଧାଇଁ ଆସିଲେ । ପୋଲିସ୍‌ରେ ଖବର ଦେଲେ । ପୋଲିସବାଲା ଗାଡ଼ିରେ ପକେଇ ତାକୁ ଭୁବନେଶ୍ୱର ଡାକ୍ତରଖାନା ନେଇ ଆସିଥିଲେ । ସେତେବେଳେ ଦିହମୁଣ୍ଡ ସବୁ ଜଳି ସିଝି ଯାଇଥାଏ । ଛାତି ଭିତରର କଲିଜା ବି ସିଝି ଯାଇଥାଏ । ବଞ୍ଚନ୍ତା କେମିତି ? ଛଅ ସାତଘଣ୍ଟା ବି ଡାକ୍ତରଖାନାରେ ରହିନି ପ୍ରାଣବାୟୁ ଉଡ଼ିଗଲା ।

ହେଲେ ସେତିକିରେ କ'ଣ ସରିଲା ? ନେଇଗଲେ ମଡ଼ାଘରକୁ । ସେଇଠି କାଟି କୁଟି ଡାକ୍ତର କଣ ଦେଖିଲେ କେଜାଣି । ସେତେବେଳକୁ ସେ ଭୂତୁଣୀ ହୋଇ ନଥାଏ । ତା ଦେହ ଚାରିକଡ଼େ ବୁଲୁଥାଏ ।

ତାପରେ ତା ବାପା ଭାଇ ସବୁ ଆସି ଏଇ ସତ୍ୟ ନଗର ମଶାଣିରେ ତା ଦେହଟାକୁ ପୋଡ଼ିଦେଲେ । ମଡ଼ା ପଚିଯାଇ ଗନ୍ଧଉଥିଲା । ତେଣୁ ଗାଁ ମଶାଣିକୁ ନେବାକୁ କେହି ମଙ୍ଗିଲେ ନାହିଁ ।

ଏଇଠି ସମସ୍ତେ ମୋକ୍ଷ ପାଆନ୍ତି ଅଥଚ ତାର ଆଉ ମୋକ୍ଷ ହେଲାନାହିଁ । ତା ଦେହଟିକୁ ଯେତେବେଳେ ଚିତା ନିଆଁରେ ଆଉଥରେ ପୋଡ଼ିଲେ ସେ ବାଧ୍ୟହୋଇ ଏଇ ଗଛରେ ଆଶ୍ରା ନେଲା । ରାଗ, ହିଂସା, ପ୍ରତିଶୋଧରେ ତା 'ଆତ୍ମା' ଟା ବି ଜଳୁଥାଏ ହୁତୁ ହୁତୁ ହୋଇ ଅଥଚ ତାର କିଛି ହେଉ ନ ଥାଏ । ଭୂତୁଣୀର ଆତ୍ମାର ଦେହ କାହିଁ ଯେ ଭସ୍ମହେବ ? ଆଖି ଆଗରେ ଦେଖିଲା ତା ଦେହଟା

ପୋଡ଼ି ପାଉଁଶ ମୁଠାଏ ହୋଇ ଯାଇଛି ଅଥଚ ସେ ଯେମିତିକୁ ସେମିତି ଅଛି। ସେମିତି ଜଳୁଛି। ସେ ପିଲାଦିନେ ଶୁଣିଥିଲା ଯେ ଭୂତମାନଙ୍କ 'ଦେହ' ସବୁ ଥଣ୍ଡା, ମାନେ ପବନ ପରି ଦେହତ ଖାଲି ହେମାଳ ପବନ ପରି ଭୂତମାନଙ୍କ ଦେହ।

ତା ଦିହରେ ନିଆଁ ଲାଗିଲା ବେଳଠୁଁ ତା ଆତ୍ମାରେ ବି ନିଆଁ ଚଗି ଯାଇଥିଲା। ସେଇଥିପାଇଁ ଭୂତୁଣୀ ହୋଇ ବି ତା ଦିହ ଥଣ୍ଡା ହେଉନାହିଁ। ସେ କଷ୍ଟରେ, ଦୁଃଖରେ, ଯନ୍ତ୍ରଣାରେ ଜଳି ଜଳି ଯାଉଛି। ରାଗରେ, ଅସହାୟତାରେ ପ୍ରତିହିଂସାର, ପ୍ରତିଶୋଧର, ଜ୍ୱାଳାରେ ପୋଡ଼ି ପୋଡ଼ି ଯାଉଛି ପ୍ରତି ମୁହୂର୍ତ୍ତରେ।

ଥରେ ଯଦି ସେ ଶାଶୁର ବେକ ମୋଡ଼ିଦେଇ ପାରନ୍ତା ତା ନଣନ୍ଦ ଦିହରେ ଉବୁଟୁବୁ ଫୁଟୁଥିବା ତେଲ ପାଣି ଢ଼ାଳି ଦେଇ ପାରନ୍ତା, ତା ଦିଅର ଲୁଗାରେ ନିଆଁ ଲଗେଇ ଦେଇ ପାରନ୍ତା, ତା ଶଶୁର ବେକରେ ଜଳନ୍ତା ଚାଦରଟିଏ ବେଢ଼େଇଦେଇ ପାରନ୍ତା, ସେ ଶାନ୍ତି ପାଆନ୍ତା।

କିନ୍ତୁ ସେ ଗାଁକୁ ଯାଇପାରୁଛି କେମିତି ? କାହା ଉପରେ 'ଭର' ହେଲେ ସିନା। ସେମିତି ଯଦି କେହି ମାଇପିଟିଏ ଆସନ୍ତା ତା ଉପରେ ବସିଯାଆନ୍ତା। ସେ ତାକୁ ଯୁଆଡ଼େ ନିଅନ୍ତା, ସିଆଡ଼େ ଯାଆନ୍ତା।

ମଶାଣିକୁ ଅବା କିଏ ସ୍ତ୍ରୀ ଲୋକ ଆସିବ ? ତା ଗାଁର କେହି ଲୋକ ଆସନ୍ତେ ନାହିଁ। ତା ନିଧିଭାଇ କି ହରି କକେଇ ? ଗୋଦରା ମାମୁଁ କି ଚନ୍ଦ୍ର ମଉସା ? ତାହେଲେ ଭଲମନ୍ଦ ବାଛ ବିଚାର ନ କରି ତାଙ୍କରି ଉପରେ ସବାର ହୋଇଯାଆନ୍ତା। ଥରେ ସେ ଗାଁକୁ ଫେରି ପାରନ୍ତା କି ? ଦେଖାନ୍ତା ମଜା ତା ଶାଶୁ ନଣନ୍ଦଙ୍କୁ ?

ଆଉ ସେଇଥିପାଇଁ ସେ ଅପେକ୍ଷା କରି ବସିଛି। ଯେତେଦିନ ଯାଉ ପଛେ ସେ ପ୍ରତୀକ୍ଷା କରିବ। ଦିନେନା ଦିନେ ତ କେହି ହେଲେ ଆସିବେ। ଏମିତି ବେଶ୍ କିଛି ଦିନ ଚାଲିଗଲା। ପ୍ରାୟ ଦୁଇବର୍ଷ ହେବ। କିନ୍ତୁ ଭୂତୁଣୀ କାହାରିକୁ ପାଇଲା ନାହିଁ। ଇତି ମଧ୍ୟରେ ତାର ଧୀରେ ଧୀରେ ସାହସ ବଢ଼ି ଯାଇଥାଏ। ଯେତେହେଲେ ଗାଉଁଲି ଭୂତୁଣୀ ତ। ସହରର ଭୟଟା ଯିବ କୁଆଡ଼େ ? ଯାହା ହେଉ ଦିନେ ସାହସ କରି ସେ ବାହାରିଲା। ସାରା ଭୁବନେଶ୍ୱର ବୁଲି ଆସିଲା। ସବୁ ମହିଳା କଲେଜ ହଷ୍ଟେଲ କର୍ମଜୀବୀ ମହିଳା ନିବାସ। ସବୁ ବଡ଼ ବଡ଼ ଘରର ସ୍ତ୍ରୀ ଲୋକମାନଙ୍କୁ ସମସ୍ତଙ୍କୁ ଦେଖି ଆସିଲା। ତାପରେ ଆଉ ଦିନେ ଗଲା ଟାଇପ୍ ୱାନ୍‌ଠୁ ଟାଇପ୍ ଫାଇଭ୍ ଘର। ଏକ ବଖୁରିଆଠୁ ତିନି ବଖୁରିଆ ଘର ଭିତରେ ଏ ଭୁବନେଶ୍ୱରରେ ଯେତେ ସ୍ତ୍ରୀ ଲୋକ ଅଛନ୍ତି ସମସ୍ତଙ୍କୁ ବୁଲି ବୁଲି ଦେଖିଲା।

ସେଇଠୁ ମନେ ମନେ ଭାବିଲା ''ମୁଁ ସିନା ଆମ ଗାଁକୁ ଯାଇ ପାରିବିନି ଦୂରବାଟ ବୋଲି। ଏଇଠି ଏତେ ମାଇକିନିଆ ଅଛନ୍ତି—କେତେ ପାଠ ପଢୁଆ

ଝିଅ—କେତେ ସ୍କୁଲ ମାଷ୍ଟରାଣୀ। କଲେଜ ମାଷ୍ଟରାଣୀ, ଓକିଲ, ମାଜିଷ୍ଟ୍ରେଟ, ମହିଳା, ଏମ୍.ଏଲ୍.ଏ ମହିଳା ଏମ୍.ପି. ଡାକ୍ତରାଣୀ, ନର୍ସ, ଧାଈ—କାହାରି ଉପରେ ସବାର ହୋଇଗଲେ ହୁଅନ୍ତା ତ। ସେମାନେ ମୋ କଥା କୁହନ୍ତେ। ମୋ ଶାଶୁ ନଣନ୍ଦଙ୍କ ପ୍ରତିଶୋଧ ନିଅନ୍ତେ। ମୁଁ ତାଙ୍କରି ଭିତରେ ରହି ତାଙ୍କୁ ବାଟ କଢ଼େଇ ନିଅନ୍ତି।''

ଏକଥା ଭାବି ସେ ମନେ ମନେ ଭାରି ଖୁସି ହୋଇଗଲା। ଭାବିଲା ଯାହାକୁ ଜଣଙ୍କୁ ଧରିଲେ ହେବ। ସେ ଭାବିଲା ଡାକ୍ତରାଣୀମାନେତ ଭାରି ସାହସୀ। ଜଣକ ଭିତରେ ପଶିଗଲେ ହେବ ସୁବିଧା ଦେଖି।

ଦିନେ ମଧ୍ୟରାତ୍ରିରେ ଭୂତୁଣୀଟି ଯାଇ ବଡ଼ ଡାକ୍ତରଖାନାରେ ପହଞ୍ଚିଲା। ବୁଲୁ ବୁଲୁ ଦେଖିଲା ଡାକ୍ତରଙ୍କ ରେଷ୍ଟ ରୁମ୍‌ରେ ଡାକ୍ତରାଣୀଟିଏ ବସିଛି ଆରାମ ଚେୟାରରେ। ଡେଙ୍ଗୀହୋଇ ବେଶ୍ ସ୍ୱାସ୍ଥ୍ୟବତୀ ଝିଅଟି। ଦେଖିଲେ ମନେ ହେଉଛି ଦେହରେ ପ୍ରଚୁର ଶକ୍ତି ଅଛି। ଡାକ୍ତରାଣୀ ପାଠ ପଢ଼ିଛି ପାଞ୍ଚବର୍ଷ ଧରି। ମନଟାବି ନିଶ୍ଚୟ ସେମିତି ଶକ୍ତିମାନ୍ ହୋଇଥିବ। ସେ ଫଟ୍ କରି ଆଲୁଅ ଲିଭେଇ ଦେଇ ତା ଉପରେ ମାଡ଼ି ବସିଲା। ବାସ୍ ଏବେ ନିଶ୍ଚିନ୍ତ।

କିନ୍ତୁ ହେଲା କଣ? ତା ଉପରକୁ ମାଡ଼ି ବସୁ ବସୁ ଝିଅଟା ହାଉଳି ପାଇ ''ଇଲେ ମୋ ବୋଉଲୋ।'' ବୋଲି ଏଡ଼େ ପାଟିଟାଏ କରି ଚଉକି ତଳକୁ ଗଡ଼ିପଡ଼ିଲା ଲଥିକରି। ପାଖରେ ଥିବା ଜଣେ ନର୍ସ ଦଉଡ଼ି ଆସିଲା। ଲାଇଟ୍ ଜାଳିଦେଇ ସାଙ୍ଗେ ସାଙ୍ଗେ ମୁହଁରେ ପାଣି ଛାଟି ସାଷ୍ଟାମ କରେଇ ତାକୁ ଧରା ଧରି କରି ନେଇ ଖଟ ଉପରେ ଶୁଆଇ ଦେଲା। ଭୂତୁଣୀ ବିଚରା କରେ କ'ଣ? ଚୁପ୍ ହୋଇ ତା ସାଙ୍ଗରେ କିଛି ସମୟ ସେମିତି ଚୁପ୍ ଚାପ୍ ପଡ଼ିରହି ସୁବିଧା ଦେଖି ଖସି ପଳାଇ ଆସିଲା।

ଛି ଛି ଏଡ଼ିକି ଡରକୁଳୀ ଝିଅଟା। ତା ଭିତରେ ସେ ଆଉ ଶକ୍ତି ସଞ୍ଚାର କରିବ କଣ? ମନ ଦୁଃଖରେ ସେ ଦିନ ସେ ଫେରି ଆସିଲା ମଶାଣିର ଗଛ ଉପରକୁ।

ପୁଣି କିଛିଦିନ ଗଲା। ଭାବିଲା ନାଇଁ ସେଇଟା ଝିଅଟା। ଡରକୁଳିଟା। ଏଥର ଗୋଟାଏ ବୟସ୍କା ପ୍ରବୀଣା ସ୍ତ୍ରୀଲୋକ ଉପରେ ସବାର ହେବ। ସେ ଆଉଦିନେ ରାତିରେ ଯାଇ ପହଞ୍ଚିଲା ରମାଦେବୀ ମହିଳା କଲେଜଜରେ—ମହିଳା ପ୍ରିନ୍‌ସ୍‌ପାଲଙ୍କ ଘରେ। ବେଶ୍ ବୟସ୍କା ଭଦ୍ର ମହିଳା। ତିରିଶି ବର୍ଷ ଚାକିରୀ କଲେଣି। ପିଲାଛୁଆ ବଡ଼ ହୋଇ ଗଲେଣି। ସେ ଭାବିଲା ଏଇ ବୋଧେ ଠିକ୍ ହେବ। ଏତେ ଝିଅଙ୍କୁ ସମ୍ଭାଳୁଛନ୍ତି, ଏତେ ପାଠ ପଢ଼ିଛନ୍ତି ସେ ବୋଧେ ତା ଶକ୍ତି ପାଇଲେ ତା ଶାଶୁଶଶୁର ଓ ସେଇପରି ଆଉ ସବୁ ଶାଶୁଶଶୁରଙ୍କୁ ଉଚିତ୍ ଜବାବ୍ ଦେବେ।

ଇଲୋ ମା ଲୋ। ସେ ଯେମିତି ତାର ହେମାଳ ଦେହ ନେଇ ତାଙ୍କ ଦେହ ଉପରେ ଛୁଇଁ ଦେଇଛି, ଏତେ ବଡ଼ ବଡ଼ ଉଚ୍ଚ ଶିକ୍ଷିତା, ବୟସ୍କା ସ୍ତ୍ରୀ

ଲୋକଟି ପିଲାଟି ପରି ହୁଡ଼ୁମୁଷ ହୋଇ ଉଠିବସି "ଇଲେ ବଉଲୋ" ବୋଲି ପାଟି କରି କାନ୍ଦି ଉଠିଲେ। ଭୂତୁଣୀର ବି ଛାନିଆ ପଶିଗଲା ସେ ମରିଗଲେ କି ବୋଲି।

ବିଚରା ଭୂତୁଣୀ ମନଦୁଃଖରେ ଫେରିଆସିଲା। ନା, ଇଏ ନୁହେଁ। ଉପରେ ସିନା ଟାଣ ଦେଖାଯାଉଛନ୍ତି, ଭିତରେ ଭିତରେ ସେ ତାଠୁ ବି ଭୟାଳୁ। କିଛି କହିପାରିବେ ନାହିଁ କି କରିପାରିବେ ନାହିଁ।

ସେଇଦିନଠୁ ସେ ଆଉ କଲେଜ କି ସ୍କୁଲ ଆଡ଼କୁ ମୁହାଁଏ ନାହିଁ। ଯୋଉଠି ଏତେବଡ଼ ଅଧ୍ୟକ୍ଷାର ଦଶା ଏମିତି, ସେ ବଳଟେନାଁକୁ ପିଲାଏ କଣ ତାକୁ ବୋହି ପାରିବେ ? ଛାଡ଼।

ଆହୁରି କିଛିଦିନ ଗଲା। ବିଚରା ଭୂତୁଣୀ ମନ ମାରି ବସିଥାଏ। ଭୋଟ ସମୟ ଆସିଲା। କାନ୍ଥରେ କାନ୍ଥରେ ସବୁ ପ୍ରାର୍ଥୀଙ୍କ ଛବି ସବୁ ମରାଗଲା। ଏମିତି କି ମଶାଣୀ ପାଚିରୀରେ ବି କେହି ଗୋଟାଏ ସେମିତି ଛବି ମାରିଦେଇ ଗଲା।

ଭୂତୁଣୀ ରାତିରେ ମଶାଣି ଚାରିପଟେ ବୁଲୁ ବୁଲୁ ସେଇ ଫଟୋଟା ଦେଖି ଅଟକି ଗଲା। ଆରେ ଇଏତ ଜଣେ ମାଇକିନିଆର ଫଟୋ। ଇଏ ତେବେ ଏମ.ଏଲ.ଏ ହେବେ ? ସେ ଭାବିଲା ଯାହାହେଉ ଏତେ ଦିନକେ ଠିକ୍ ସ୍ତ୍ରୀ ଲୋକଟିଏ ପାଇଲି। ଏ ଦେଶର ନେତ୍ରୀ, ନିଶ୍ଚେ ଭାରି ସାହସୀ ହୋଇଥିବେ। ଏତେ ପୁରୁଷ ସାଙ୍ଗରେ ଲଢୁଛନ୍ତି ଯେତେବେଳେ, ସେ ନିଶ୍ଚେ ତାକୁ ବୋହି ପାରିବେ। ତା ଜ୍ୱାଳାକୁ ଠିକ୍ ସହ୍ୟ କରି ପ୍ରତିଶୋଧ ନେଇ ପାରିବେ।

ସେ କିଛି ଦିନ ଅପେକ୍ଷା କଲା। ଭୋଟ ସରିଲା। ସ୍ତ୍ରୀ ଲୋକ ଜଣକ ଭୋଟରେ ଜିତି ଏମ୍.ଏଲ.ଏ. ହେଲେ। ତାପରେ ମନ୍ତ୍ରୀ ବି ହେଲେ।

ଭୂତୁଣୀ ଠିକ୍ ଖବର ରଖୁଥାଏ। ସେ ମନ୍ତ୍ରୀ ହେବା ପରେ ପରେ ସେ ଘର ଖୋଜି ଖୋଜି ଯାଇ ପହଞ୍ଚିଲା ତାଙ୍କ ପାଖରେ। ତାର ପୂର୍ବ ଅଭିଜ୍ଞତାରୁ ସେ ଜାଣିଥାଏ ହଠାତ୍ କରି ଛୁଇଁଦେଲେ ଜୀବିତ ଲୋକମାନେ ମୂର୍ଚ୍ଛା ହୋଇ ଯାଉଛନ୍ତି—ତାକୁ ଠିକ୍ ଧରିପାରୁ ନାହାନ୍ତି। ତେଣୁ ସେ ଏଥର ତାର ଟେକନିକ୍ ବଦଳେଇ ନେଲା।

ସେ ଘରଭିତରେ ପଶି ଆଗେ ଧୀରେ ଧୀରେ ଚାରିପଟେ ବୁଲିଲା। ତାପରେ କଇଁ କଇଁ ହୋଇ କାନ୍ଦିଲା। ପ୍ରଥମେ ତାଙ୍କ ଗୋଡ଼ ପଟେ ବସି କାନ୍ଦିଲା। ତାପରେ ତାଙ୍କ ମୁଣ୍ଡପଟେ ବସି ପୁଣି କାନ୍ଦିଲା। ମନ୍ତ୍ରୀ ମହୋଦୟା କର ଲେଉଟେଇଲେ। ଏତିକିବେଳେ ସେ ଧୀରେ କରି ତାକୁ ତା ହେମାଳ ହାତରେ ଛୁଇଁ ଦେଲା। ନିଦ ଭାଙ୍ଗିଗଲା ତାଙ୍କର। ହେଲେ ଚମକିଲେ ନାହିଁ। ସେ ପୁଣି କଇଁ କଇଁ ହେଲା। ସେ ଏଥର ଉଠିବସିଲେ ବିଛଣା ଉପରେ। ସାହସ ହୋଇଗଲା ଭୂତୁଣୀର। ସେ

କାନ୍ଧ ଉପରେ ବସି ଧୀର ଧୀର କରି କହିଲା "ମା ସାନ୍ତାଣୀ, କେତେଦିନୁ ତମକୁ ଖୋଜୁଛି ଦୁଃଖ କହିବି ବୋଲି। ଦେଖ, ଦେଖ ମୋ ଦିହରୁ କେମିତି ଚମ ଛାଡ଼ି ଯାଉଛି, ହାଡ଼ରୁ କେମିତି ମାଂସ ଖସି ଯାଉଛି। ଦେଖ ଦେଖ ମା ସାନ୍ତାଣୀ, ଦେହ ପୋଡ଼ି ପାଉଁଶ ହୋଇଗଲାଣି ହେଲେ ମୋ ଆତ୍ମା ଜଳୁଛି। ଦେଖୁନ ମୋ ଦିହ କେତେ ଥଣ୍ଡା। ହେଲେ ମୋ ଆତ୍ମା ଦେଖ କେମିତି ହୁତୁ ହୁତୁ ହୋଇ ଜଳୁଛି। ତମେ ପରା ମୋରି ପରି ସ୍ତ୍ରୀ ଲୋକଟିଏ। ମୋ କଥା ଟିକେ ବୁଝ। ମୁଁ ପ୍ରତିଶୋଧ ନେବାକୁ ଚାହେଁ। ପ୍ରତିଶୋଧ। ମୁଁ ତମ ଭିତରେ ପଶୁଛି। ହେଇ, ଭୟ କରନା, ମୁଁ ତମକୁ ଶକ୍ତି ଦେବି। ପ୍ରତିହିଂସାର ପ୍ରଚଣ୍ଡ ଶକ୍ତି। ଭୟାନକ ଧୂମାବତୀ କ୍ରୋଧର ଅଗ୍ନି ଦେବି ତମକୁ। ହେଇ ନିଅ।"

"ଆରେ ଭୂତ-ଭୂ-ଭୂ-ଭୂ-ଉଁ-ଉଁ" ପାଟି ଖନିମାରି ଶେଷକୁ ପଡ଼ିଗଲା। ମନ୍ତ୍ରୀ ମହୋଦୟା ବିଛଣାରୁ ତଳକୁ ଗଡ଼ିପଡ଼ି ମୂର୍ଚ୍ଛା ହୋଇଗଲେ।

ବିତୃଷ୍ଣାରେ ଉଠି ପଡ଼ିଲା ଭୂତୁଣୀ। ଛି ଛି ଛି। କାହା ପାଖରେ ଦୁଃଖ ଜଣାଇବାକୁ ଆସିଥିଲା ସେ? କାହାପାଖକୁ ଆସିଥିଲା ସେ ଶକ୍ତି ଯୋଗାଇ ଦେବାକୁ? ଏଡ଼ିକି ଦୁର୍ବଳିଆ ମାଇକିନିଆଟେ!

ସେ କଣ ତେବେ ଏଥର ପୁରୁଷଙ୍କ ପାଖକୁ ଯିବି? ତାଙ୍କ ଉପରେ ସବାର ହେବ? ଯଦି ତାରି ଭଉଣୀମାନେ ମାଉସୀମାନେ ତା ଦୁଃଖ ବୁଝି ପାରିଲେନି ତା ଜ୍ୱାଳାକୁ ଗ୍ରହଣ କରି ପାରିଲେ ନାହିଁ, ସେ କଣ ଯିବ ଯିଏ ତାକୁ ବଳି ଦେଇଛି ତାରି ପାଖକୁ?

କେଜାଣି, ବୋଧହୁଏ ସମୟ ହୋଇନି। ତାକୁ ବୋହିପାରିବା ପରି ଶକ୍ତିଥିବା ନାରୀଟିଏ ବୋଧହୁଏ ଜନ୍ମ ହୋଇନି। ତେବେ ତାର ବା କଣ ଏତେ ତର ତର ହେବାର ଅଛି ଯେ? ସେ ତ ଅଶରୀରୀ, ପିଶାଚିନୀ। ଭୂତୁଣୀଟିଏ। ସେ ଅପେକ୍ଷା କରିବ ସେଇ ନାରୀଟିଏ ଜନ୍ମ ନେବା ପର୍ଯ୍ୟନ୍ତ।

ସେଥିପାଇଁ ସତ୍ୟନଗର ମଶାଣୀର ଝଙ୍କାଳିଆ ଗଛ · କୋରଡ଼ ଭିତରେ ବସି ପ୍ରତୀକ୍ଷା କରି ବସିଥିଲା ଭୂତୁଣୀଟି—

ଏବେ ବି ବୋଧେ ସେ ସେମିତି ପ୍ରତୀକ୍ଷା କରି ବସିଛି।

-୦-

# ବାମନାବତାର

ପୁରୀ ସମୁଦ୍ର ବେଳାର ପଶ୍ଚିମ କୋଣରେ ଅପେକ୍ଷାକୃତ ନିର୍ଜନ ବେଳାଭୂମି ଉପରେ ମୁଣ୍ଡ ତଳକୁ ଝୁଙ୍କିପଡ଼ି ଯେଉଁ ଲୋକଟି ଅନିର୍ଦ୍ଦିଷ୍ଟ ଭାବରେ ଆଗକୁ ଆଗକୁ ମାଡ଼ି ଚାଲିଛି ସେଇ ଲୋକଟିର ନାମ ବାମନ ଚରଣ ଦାସ। ଅନୁମାନ ହୁଏ ଲୋକଟି ବୋଧହୁଏ ଟିକିଏ ନିର୍ଜନତା ଚାହୁଁଛି—ଅଥବା ଟିକିଏ ନିର୍ଜନ ଜାଗା ପାଇଲେ ସମୁଦ୍ର ଭିତରକୁ ଝାସ ଦେଇ ଆତ୍ମହତ୍ୟା କରିପାରେ। କାରଣ ଯଦିଓ ତାର ଗତିବିଧି ଚାଲି ଚଳଣର ଅତ୍ୟଧିକ ଅସହାୟତା ଫୁଟି ଉଠୁଥିଲା, ତାର ବଳିଷ୍ଠ ପଦକ୍ଷେପରେ ଗୋଟାଏ ସ୍ଥିର ନିଶ୍ଚିତ ଲକ୍ଷ୍ୟ ମଧ୍ୟ ବାରି ହୋଇପଡୁଥିଲା।

ଲୋକଟି ମନେ ମନେ ବୋଧହୁଏ ଏଇ କଥା କହୁଥିଲା "ଆରେ ବାମନ ଚରଣ—ତୁ ଗୋଟାଏ ବାମନ ହୋଇ ରହିଗଲୁ ସାରା ଜୀବନ। ତୋତେ ୫୫ ବର୍ଷ ହେଲାଣି। ଆଉ କେତେଟା ଦିନ ବଞ୍ଚିବୁ ତୁ? ହାର୍ଟ ଆଟେକ୍ ହୋଇପାରେ, କ୍ୟାନସର ହୋଇପାରେ ଅଥବା ଗାଡ଼ି ମଟର ତଳେ ଦୁର୍ଘଣାରେ ମରିଯାଇ ପାରୁ। ଏଇ ୫୫ ବର୍ଷ ଏହି ଜଗତରେ ରହି ପାଇଲୁ କଣ? ଦେଲୁ କଣ? ରହିଲା କଣ? ମରିଗଲା ପରେ ଏହି ବାଲୁକା ଶଯ୍ୟାରେ ଲକ୍ଷ ଲକ୍ଷ ପଦ ଚିହ୍ନ ଲିଭିଗଲା ପରି ତୁ ବି ଲିଭିଯିବୁ ଚିରଦିନ ପାଇଁ। ତୋର କିଛି ଚିହ୍ନ ବର୍ଣ୍ଣ ରହିବ ନାହିଁ। କିଛି ସ୍ମୃତି ବି ତୋର ରହିବ ନାହିଁ—ବଞ୍ଚି ରହିବାର ସମ୍ଭବ ଟିକକ ମଧ୍ୟ ରହିବ ନାହିଁ।

ଗୋଟାଏ ତୁଚ୍ଛାତିତୁଚ୍ଛ କ୍ଷୁଦ୍ର ଜୀବନ ତୋର। ଗୋଟିଏ ପିମ୍ପୁଡ଼ି କି ଗୋଟିଏ ଇନ୍ଦା ପରି। କ୍ଷୁଦ୍ରାତିକ୍ଷୁଦ୍ର। କଣ ମୂଲ୍ୟ ତୋର ଏତେ ଦିନ ଧରି ଏଇ ଦୁନିଆରେ ବଞ୍ଚିରହି? କାହିଁକି ତୁ ବଞ୍ଚିରହିଲୁ? ଖବର କାଗଜରେ କିଦିନେ ବି ତୋର ନାଁ ବାହାରି ନାହିଁ, ପାଞ୍ଚଟା ଲୋକ ତୋ ନାଁରେ କଥାବାର୍ତ୍ତା ବି କରିନାହାଁନ୍ତି। ନିନ୍ଦା କରି ନାହାଁନ୍ତି କି ପ୍ରଶଂସା କରି ନାହାଁନ୍ତି। ଗୋଟାଏ ପିମ୍ପୁଡ଼ି ପରି ଜନ୍ମ ନେଇଥିଲୁ। ପୁଣି ସେଇମିତି ମରିବି ଯିବୁ। ପିମ୍ପୁଡ଼ିର ତ ହେଲେ ମଲାବେଳକୁ ଗୋଟାଏ ଆଶା ଥାଏ। ସେଥିପାଇଁ ସେ ତାର ଡ଼େଣା ଗଜୁରାଏ। ଆକାଶକୁ ଉଡ଼ିବାର ଆକାଂକ୍ଷା କରେ। ଉର୍ଦ୍ଧତର ଜୀବନକୁ ଛୁଇଁ ଯିବା ପାଇଁ ଶେଷ ଚେଷ୍ଟା କରେ। ଅଥଚ ତୁ କଣ? ସେଇ ଏକ ସମତଳ ଭୂମି ଉପରେ ଜୀବନ ବିତେଇ ଦେଲୁ। ଉପରକୁ ଉଠିଲୁ ନାହିଁ କି ତଳକୁ ଖସିଲୁ ନାହିଁ। କିଛି ଦେଖିଲୁ ନାହିଁ? କିଛି ଜାଣିଲୁ ନାହିଁ। ଉଠିବାର କି ପଡ଼ିବାର ଇଚ୍ଛା ବି ତୋର ଏଯାଏଁ ହେଲା ନାହିଁ। ମଲେ କେତେ ଜୀଇଁଲେ କେତେ? ବଂର ତୁ ମରି ଯା। ଆଉ ଥରେ ଜନ୍ମ ନେବୁ ନୂତନ ଭାବରେ ଜାଇଁବା ପାଇଁ। ଜୀବନକୁ ଭଲ ଭାବରେ ଜାଣିବା ପାଇଁ, ଚିହ୍ନିବା ପାଇଁ?"

(ଦୁଇ)

ଶ୍ରୀଯୁକ୍ତ ବାମନ ଚରଣ ଦାସ ଏକଦା ରେଭେନ୍ସା କଲେଜରେ ମୋର ସହପାଠୀ ଥିଲେ। ପୁରୀ କଲେଜରୁ ବି.ଏ.ପାଶ୍ କରି ଇଂରାଜୀରେ ଏମ୍.ଏ. କରୁଥିଲେ। ବାମନ ଚରଣ ଖୁବ୍ ଭଦ୍ର ସଂସ୍କୃତିଆ ଭାଷାରେ କଥାବାର୍ତ୍ତା କରୁଥିଲେ। କୌଣସି ଅଶ୍ଳୀଳ ଶବ୍ଦ ତାଙ୍କ ମୁହଁରୁ କେବେ ବାହାରିବାର ଆମ୍ଭେମାନେ ଶୁଣି ନଥିଲୁ।

ଆଗରୁ ସେ କିପରି ଥିଲେ ସେ କଥା ମୁଁ ଜାଣିନାହିଁ। କିନ୍ତୁ ମୋର ସହପାଠୀ ଥିଲାବେଳେ ସେ ଥିଲେ ଜଣେ ପୁସ୍ତକ କୀଟ। ସବୁ କିଛିର ଶେଷ ଜାଣିବାର ପ୍ରବଳ ଆଗ୍ରହ। ତେଣୁ କ୍ଲାସ୍‌ରେ ସେକସ୍‌ପିଅରଙ୍କ ଗୋଟିଏ ନାଟକର ପ୍ରଥମ ଦୃଶ୍ୟ ପଢ଼ାହେଲାବେଳକୁ ବାମନ ଚରଣ କିଣି ନେଲେ ତାଙ୍କର ସମସ୍ତ ପୁସ୍ତକ ଓ ତାଙ୍କ ସାହିତ୍ୟ ସମ୍ବନ୍ଧରେ ଆଲୋଚିତ ପ୍ରାୟ ଅଧିକାଂଶ ପୁସ୍ତକ। ମୁଁ ତାଙ୍କୁ ମଝିରେ ମଝିରେ କହେ, ''ଆରେ, ବାମୁ, ତୁ ଏତେ ଚଷ୍ଟ କଟୁଛୁ କାହିଁକି? ପରୀକ୍ଷା ପାଇଁ ଯେତିକି ଦରକାର ସେତିକି ପଢ଼। ଆଉ ଯଦି ବେଶି ନମ୍ବର ପାଇବାକୁ ଇଚ୍ଛା ତ ଦି ଚାରିଟା ବହି ପଢ଼ି ପ୍ରଶ୍ନ ଅନୁସାର ନୋଟ୍ ଲେଖ୍। ତିନି ଘଣ୍ଟା ଭିତରେ ପାଞ୍ଚଟା ପ୍ରଶ୍ନର ଉତ୍ତର ଲେଖିବାକୁ ପଡ଼େ—ଏକଥା ତୋତେ ଜଣା ଅଛି ତ?''

ବାମନ ଚରଣ ମୋତେ ମନୁଷ୍ୟ ବୋଲି ଜ୍ଞାନ କରନ୍ତି ନାହିଁ। ମୋର ତାଙ୍କୁ 'ତୁ' ସମ୍ବୋଧନ ମଧ୍ୟ ସେ ପସନ୍ଦ କରନ୍ତି ନାହିଁ। ତଥାପି ସ୍ୱାଭାବିକ ଭଦ୍ରତା ଯୋଗୁ ସେ ମୋତେ ବାରଣ ମଧ୍ୟ କରିପାରନ୍ତି ନାହିଁ। ମୋର କଥା କଥାକେ 'ଶଳା' ତଥା ଅନ୍ୟାନ୍ୟ ଅଶ୍ଳୀଳ ଶବ୍ଦ ପ୍ରୟୋଗ ମଧ୍ୟ ସେ ଭୀଷଣ ଘୃଣା କରନ୍ତି ଓ ଅତି ମାତ୍ରାରେ ଚିଡ଼ି ଯାଆନ୍ତି। ସେ ଏଥିପାଇଁ ମୋତେ ବହୁବାର ତାଗିଦ୍ ମଧ୍ୟ କରିଥାନ୍ତି।

''ଦେଖ୍, ରାଘବେନ୍ଦ୍ର, (ମୋତେ ରଘୁଆ, ରଘୁ ଏମିତିକି ରାଘବ ଡାକିବାକୁ ମଧ୍ୟ ସେ ଉଚିତ୍ ମଣନ୍ତି ନାହିଁ) ତମର ସବୁବେଳେ ଏହିପରି ଉଚ୍ଛୃଙ୍ଖଳ କଥା ଓ ବ୍ୟବହାର ମୋତେ ଭୀଷଣ ଦୁଃଖ ଦିଏ ଏବଂ ଅନ୍ୟମାନଙ୍କୁ ମଧ୍ୟ ଦେଉଥିବ। ବାକ୍‌ସଂଯମ ଏକ ଅଧ୍ୟବସାୟ। ମୁଁ ତୁମକୁ ଆଗରୁ ସାବଧାନ କରିଦେଉଛି। ନହେଲେ ପଶ୍ଚାତ୍‌ରେ ତମେ ନିଶ୍ଚେ ପସ୍ତାଇବ। ଆଉ ତମପାଇଁ ଏମ.ଏ.ପଢ଼ିବା, ପରୀକ୍ଷା ଦେଇ ପାଶ୍ କରି ଚାକିରି ଆହରଣ କରିବାର ମାଧ୍ୟମ ମାତ୍ର। ମୋ କ୍ଷେତ୍ରରେ ତାହା ନୁହେଁ। ମୁଁ ଜ୍ଞାନ ଆହରଣ ନିମନ୍ତେ ଏହି ମହାବିଦ୍ୟାଳୟକୁ ଆସିଅଛି, ତମ ପରି ଫାଙ୍କି ଦେବାକୁ ନୁହେଁ।''

ବାମନ ଚରଣଙ୍କର ଏହିପରି କଥା ମୋତେ ଓ ମୋର ଅନ୍ୟାନ୍ୟ ବନ୍ଧୁମାନଙ୍କୁ ବେଶ୍ ମଜାର ଖୋରାକୀ ଯୋଗାଇଥାଏ। ପଛରେ ଆମେ ତାର 'କେରିକେଚାର' ମଧ୍ୟ କରିଥାଉ। କିନ୍ତୁ ବାମନ ଚରଣ ସେ ସବୁ ପ୍ରତି ନିର୍ବିକାର ଥାନ୍ତି।

ବାମନ ସତରେ ଏକ ପରିଶ୍ରମୀ, ଅଧ୍ୟବସାୟୀ ଛାତ୍ର ଥିଲେ। ଜ୍ଞାନ ଆହରଣର ଏପରି ତୀବ୍ର ଆଗ୍ରହ ଓ ପରିଶ୍ରମ କାହାରି ଠାରେ ଆଜିଯାଏଁ ଦେଖିନାହିଁ।

ଏହିପରି ଭାବରେ ଆମର ଏମ୍.ଏ. ପ୍ରଥମ ବର୍ଷ ଶେଷ ବେଳକୁ ବାମନ ଚରଣ ସେକ୍ସପିୟରଙ୍କ ବିଷୟରେ ଏକ 'ଅଥରିଟୀ' ବୋଲି ପରିଗଣିତ ହୋଇଯାଇଥିଲେ। ଏପରିକି ଆମର ପୂଜ୍ୟ। ଅଧ୍ୟାପକ ରିଡ଼ର ଅକସ୍‌ଫୋର୍ଡ଼ର ପି.ଏଚ୍.ଡ଼ି.ଧାରୀ ଡକ୍ଟର ହାଇମ୍ୟାନ୍ ମଧ୍ୟ ତାଙ୍କ ସହିତ ସ୍ନେହକରି କଥା ବାର୍ତ୍ତା କରୁଥିଲେ। ପ୍ରଥମ ଭାଗ ପରୀକ୍ଷା ଆସିଗଲା। ଆମେ ସବୁ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଉ। ବାମନ ଚରଣ କିନ୍ତୁ ନିର୍ବିକାର।

''ମୁଁ ଏଥରକ ପରୀକ୍ଷା ଦେବି ନାହିଁ।''

''କିରେ କାହିଁକି ?''

''ମୁଁ ତ ଏଇ ବର୍ଷକ ଭିତରେ ସେକ୍ସପିୟରଙ୍କ ବିଷୟରେ କିଞ୍ଚିତ ମାତ୍ର ଜ୍ଞାନ ଆହରଣରେ ସକ୍ଷମ ହୋଇଛି। ପୁଣି ବର୍ଣ୍ଣାଡ଼ଁ ଶ, ଇବ୍‌ସେନ୍, ଟେନେସି ଉଇଲିୟମ୍ ଇତ୍ୟାଦି ଅନେକ ନାଟ୍ୟକାର ବାକିଅଛନ୍ତି। ସେମାନଙ୍କୁ ପଢ଼ି ନସାରିଲା ପର୍ଯ୍ୟନ୍ତ ମୁଁ ତୁଳନାତ୍ମକ ଅଧ୍ୟୟନ କରିବି କିପରି ?''

ଆମେ ଯଥାତଥା ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀ ପାଇ ଉନ୍ନିତ ହେଲୁ ଷଷ୍ଠ ବର୍ଷକୁ। ବାମନ ଚରଣ ଇତ୍ୟବସରେ ନାଟକ ଶେଷକରି କବିତା ଧରିଥାନ୍ତି। ଷଷ୍ଠ ବର୍ଷକୁ ପୁଣି ପରୀକ୍ଷା। ବାମନ ଚରଣ ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ କହିଲେ ''ଦୁଇ ବର୍ଷର ନିରବଚ୍ଛିନ୍ନ ପରିଶ୍ରମ ପରେ ମଧ୍ୟ ମୁଁ ଇଂରାଜୀ ସାହିତ୍ୟର ଚର୍ମଭେଦ କରିପାରିଲି ନାହିଁ। ଆଉ ପରୀକ୍ଷା ଦେବି କଣ ?''

ଆମେ ସମସ୍ତେ ପୁଣି ପରୀକ୍ଷା ଦେଲୁ। କେତେଜଣ ଡ୍ରପ୍ କଲେ। ବୋଲିବା ବାହୁଲ୍ୟ ବାମନ ଚରଣ ସେମାନଙ୍କ ମଧ୍ୟରୁ ଅନ୍ୟତମ। ଶେଷକୁ ସେଇ ପରୀକ୍ଷାରେ ଆମେ ଦ୍ୱିତୀୟ ଶ୍ରେଣୀ ପାଇ କଲେଜ ପାଠ ଶେଷକଲୁ। ଆମ ଭିତରୁ ଅପେକ୍ଷାକୃତ ଭଲକରିଥିବା ପ୍ରଥମ ସାତଜଣ ଯାକ ଅଧ୍ୟାପକ ଚାକିରି ପାଇଗଲେ ମାତ୍ର ମାସେ ଦିମାସ ଭିତରେ। ଆମେ ଚାରି ପାଞ୍ଚଜଣ ଓ.ଏ.ଏସ୍. ପରୀକ୍ଷା ପାଇଁ ପ୍ରସ୍ତୁତି ଚଳାଇଥାଉ। ଶେଷକୁ ଆମ ଭିତରୁ ତିନି ଜଣ ମାତ୍ର ଓ.ଏ.ଏସ୍.ରେ ଉତ୍ତୀର୍ଣ୍ଣ ହେଲୁ। ବାକି ସବୁ ଯାଇ ନୂଆ ହୋଇଥିବା ପ୍ରାଇଭେଟ୍ କଲେଜମାନଙ୍କରେ ଯୋଗ ଦେଲେ ଅଧ୍ୟାପକ ଭାବରେ।

ସେହିଦିନ ଠାରୁ ବାମନ ଚରଣ ସହିତ ଦେଖା ହୋଇ ନଥିଲା। ମଝିରେ ମଝିରେ ବନ୍ଧୁମାନଙ୍କ ପାଖରୁ ଶୁଣେ—ଏବର୍ଷ ମଧ୍ୟ ବାମନ ଚରଣ ପରୀକ୍ଷା ଦେଇନାହାନ୍ତି। ତାଙ୍କର ପ୍ରସ୍ତୁତି ଶେଷ ହୋଇନାହିଁ। କ୍ରମାଗତ ଭାବରେ ଛଅ ଥର ଯାକ କେତେବେଳେ ପରୀକ୍ଷା ଦେଇ ଅଧାରୁ ଡ୍ରପ୍‌କରି, କେତେବେଳେ ମୂଳରୁ ପରୀକ୍ଷା ନଦେଇ ବାମନ

ଚରଣ କଟକ ଛାଡ଼ିଲେ। ତାପରେ କେହି ତାଙ୍କର ଖୋଜଖବର ରଖୁନଥିଲେ କି ଜାଣି ନଥିଲେ।

ମୁଁ ପୁରୀରୁ ଏ.ଡ଼ି.ଏମ୍. ହୋଇ ବଦଳି ହୋଇ ଆସିଲା ପରେ ବାମନ ଚରଣକୁ ମୋର ଜଣେ ଅଧସ୍ତନ କିରାଣୀ ଭାବରେ ଆବିଷ୍କାର କରି ଯେତିକି ଆଶ୍ଚର୍ଯ୍ୟ ହୋଇ ନଥିଲି ତାଠାରୁ ଦୁଃଖିତ ହୋଇଥିଲି ଯଥେଷ୍ଟ ବେଶି। ମାତ୍ରା—ଜ୍ଞାନହୀନ ବ୍ୟକ୍ତିର ଯେ ଏହିପରି ଦୁର୍ଦ୍ଦଶା ହୁଏ—ବାମନ ଚରଣ ହିଁ ତାର ଜ୍ୱଳନ୍ତ ଉଦାହରଣ, ଅଥଚ ଆଶ୍ଚର୍ଯ୍ୟ ଏହି ବାମନ ଚରଣ ହିଁ ମୋତେ ଏଇ ମାତ୍ରା ଜ୍ଞାନ ସମ୍ବନ୍ଧରେ ବାରମ୍ବାର ସୂଚାଇ ଦେଉଥିଲା ସବୁବେଳେ।

ମୁଁ ତାକୁ ଅଫିସ୍‌ରେ ଦେଖି ପୁରୁଣା ବନ୍ଧୁତ୍ୱ ଖାତିରିରେ (ସେତେବେଳକୁ ସେ ମୋ ଅଫିସରେ କିରାଣୀ ଅଛି ବୋଲି ଜାଣି ନଥିଲି) ଆନନ୍ଦର ସହିତ କରମର୍ଦ୍ଦନ କରି ମୋର ସ୍ୱଭାବ ସୁଲଭ ଉଚ୍ଛ୍ୱସିତ ଭଙ୍ଗିରେ କହିଥିଲି "କିରେ ବାମ୍ବୁ ଏଠି କେମିତି ? କଣ କରୁଛୁ ?" ଇତ୍ୟାଦି ? କିନ୍ତୁ ବାମନ ଚରଣ କିଛି ଉତ୍ତର ନଦେଇ କେବଳ ନମସ୍କାରଟିଏ କରି କହିଲା "ମୁଁ ଟିକିଏ ପରେ ତମ ସହିତ ସାକ୍ଷାତ କରିବି।" ମୁଁ ଟିକିଏ ବିସ୍ମିତ ହେଲି। ତାପରେ ମୋ ରୁମ୍‌ରେ କେହି ନଥିବା ଅବସ୍ଥାରେ ଆସି କହିଲା "ରାଘବେନ୍ଦ୍ର, ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ଭଗବାନଙ୍କ କୃପାରୁ ତମେ ଆଜି ଏତେବଡ଼ ଅଫିସର ପଦବୀରେ ଅଧିଷ୍ଠିତ ହୋଇଅଛ। କିନ୍ତୁ ବଡ଼ ଦୁଃଖର ସହିତ କହିବାକୁ ପଡୁଛି ଯେ ଆଜି ସୁଦ୍ଧା ବି ତମର ବାଲ୍ୟ ଚପଳତା ଯାଇନାହିଁ ଏବଂ ମାତ୍ରା ଜ୍ଞାନ ହେଲାନାହିଁ। ମୁଁ ତମର ଅଧସ୍ତନ କର୍ମଚାରୀ। ଅଫିସ୍ ମଧ୍ୟରେ ଏହିପରି ବନ୍ଧୁ ସୁଲଭ ଆଚରଣ ଶୋଭନୀୟ ନୁହେଁ।"

ମୁଁ ଆଶ୍ୱସ୍ତ ହେଲି। ଯାହାହେଉ ବାମନ ଚରଣଙ୍କ ତିଳାର୍ଦ୍ଧ ସୁଦ୍ଧା ପରିବର୍ତ୍ତନ ହୋଇନାହିଁ।

ତାପରେ ଅଫିସରେ କାର୍ଯ୍ୟ କଲାବେଳେ ମୁଁ ପ୍ରାୟ ବାମନ ଚରଣଙ୍କ ପରାମର୍ଶ ଗ୍ରହଣ କରିଥାଏ। କାରଣ ମୁଁ ସ୍ଥିର ନିଶ୍ଚିତ ଥିଲି ଯେ ବାମନ ମୋତେ କଦାପି ଭୁଲ୍ ପରାମର୍ଶ ଦେବେ ନାହିଁ କିମ୍ବା ପୁରୁଣା ବନ୍ଧୁତ୍ୱର ଦ୍ୱାହି ଦେଇ ମୋଠାରୁ ଅନ୍ୟାୟରେ କିଛି ସୁବିଧା ସୁଯୋଗ ହାସଲ କରିବେ ନାହିଁ।

କିନ୍ତୁ ତା ପରଠୁ ବାମନ ଚରଣ କେମିତି ଅସ୍ୱାଭାବିକ ବ୍ୟବହାର କରିବାକୁ ଆରମ୍ଭ କଲା। ସେ ମୋତେ ଲୁଚିବାକୁ ଲାଗିଲା। ମୋ ସାମନାକୁ ଆସିବାକୁ କୁଣ୍ଠୁକୁଣ୍ଠୁ ହେଲା। ଯେଉଁ ବାମନ ଚରଣ ୨୫ ବର୍ଷ ଚାକିରି କାଳ ମଧ୍ୟରେ ଦିନେ ଅଫିସ୍ ଆସିବା ବନ୍ଦ କରିନାହିଁ, ସେ ବାରମ୍ବାର ଛୁଟି ନେବାକୁ ଲାଗିଲା, କାରଣ ଅକାରଣରେ ଅଫିସ୍‌କୁ ଆସିବା ବନ୍ଦ କରିଦେଲା। ମୁଁ ମନେ ମନେ ଆଶ୍ଚର୍ଯ୍ୟ ହେଲି। ମୁଁ ତ ଘୁଣାକ୍ଷରରେ କେବେ ତାକୁ ଅସମ୍ମାନ କରିନାହିଁ ବରଂ ଉଚିତ୍

ଠାରୁ ବେଶି ସମ୍ମାନ ଦେଇଆସିଛି। କ'ଣ ତାର ଉଦ୍ଦେଶ୍ୟ ମୁଁ କିଛି ଧରି ପାରିଲି ନାହିଁ। ଦିନେ ତାକୁ ଯୋର୍ ଜବରଦସ୍ତ ମୋ କୋଠରୀକୁ ନେଇ ଆସି ତାକୁ ପଚାରିଲି "କିରେ, ତୁ ମତେ ଏମିତି ଲୁଚି ଲୁଚି ବୁଲୁଛୁ କାହିଁକି? କ'ଣ ମୋର ଦୋଷ? ତୁ ତ ସ୍ପଷ୍ଟବାଦୀ, କହ।" ସେ କିଛି ସମୟ ଚୁପ୍ ରହିଲା।

ରାଘବେନ୍ଦ୍ର ତମେ ମନେ ମନେ ଯାହା ଭାବିଅଛ ତାହା ଭୁଲ୍ ଅଟେ। ଏକଥା ସତ୍ୟ ଯେ ତୁମେ ମୋତେ ଯେଉଁ ସମ୍ମାନ ଦେଇଛ ତାହା ତମର ସ୍ୱଭାବ ସୁଲଭ ଏବଂ ସେଥିରେ କପଟତା ନାହିଁ। ସେଥିପାଇଁ ମୁଁ ତୁମ ନିକଟରେ ଋଣି । କିନ୍ତୁ ମୁଁ ଗୋଟାଏ ସର୍ତ୍ତରେ ଅଫିସ୍ ଯିବି। ତମେ ଆଉ ସମସ୍ତଙ୍କ ଆଗରେ ମୋଠାରୁ ପରାମର୍ଶ ଗ୍ରହଣ କରିବ ନାହିଁ କି ମୋ ଚୌକି ନିକଟକୁ ଆସିବ ନାହିଁ!

—କିନ୍ତୁ କାହିଁକି ?

—ରାଘବେନ୍ଦ୍ର ମୁଁ ଜଣେ କ୍ଷୁଦ୍ରାତିକ୍ଷୁଦ୍ର ମଣିଷ। ମୋ ନାଁ ଯେମିତି ବାମନ ମୁଁ ସେମିତି ବାମନଟିଏ। ମୋତେ ଯେତେ ଦୂଷ୍ପ୍ରାନ୍ନ ପରିବେଷଣ କଲେ ମଧ୍ୟ ମୁଁ ସାଧାରଣ ମଣିଷଙ୍କ ପରି ଉଚ୍ଚତା ଲାଭ କରିପାରିବି ନାହିଁ। ତମେ ଏଚେଷ୍ଟାରୁ ବିରତ ରୁହ। ତମର ଏ ଅଯାଚିତ ପ୍ରଚେଷ୍ଟା ମୋତେ ଆହୁରି କ୍ଷୁଦ୍ରତର କରିଦେଉଛି।"

—ସେହି ଦିନ ପରଠାରୁ ମୁଁ ଆଉ ତାକୁ ମୋ ରୁମ୍‌କୁ ଡାକେ ନାହିଁ। ଯାହା ପରାମର୍ଶ ମାଗିବାର କଥା ଫାଇଲରେ ଲେଖି ତା ପାଖକୁ ପଠାଇ ଦିଏ। କିନ୍ତୁ ତାପ୍ରତି ମୋର କୌତୁହଳ ବଢ଼ିବାକୁ ଲାଗିଥାଏ। ତାର ଅଜାଣତରେ ମୁଁ ତାକୁ ନିରୀକ୍ଷଣ କରେ। ତାର ଗତିବିଧିକୁ ପର୍ଯ୍ୟବେକ୍ଷଣ କରେ। ତାର ଗୃହ ସମ୍ବନ୍ଧୀୟ ସମସ୍ତ ଖବରାଖବର ରଖେ।

କାହିଁକି ଲୋକଟା ଏମିତି ହୋଇଗଲା।

ଜ୍ଞାନର ସୁଉଚ୍ଚ ହିମଗିରି ଶିଖରକୁ ଆରୋହଣ କରିବାର ଅଭିପ୍ସା ରଖିଥିବା ଏକ ଦୁଃସାହସିକ ପର୍ବତ ଚଢ଼ାଳୀଟିଏ ହଠାତ୍ କାହିଁକି ନିଜକୁ ଏମିତି ସଙ୍କୁଚିତ କରି ନେଇଛି। ସମସ୍ତଙ୍କ ଠାରୁ ନିଜକୁ ଛୋଟ ମଣୁଛି। ଏମ୍. ଏ. ପାଶ୍ କରି ନ ପାରିବାର ପରାଜୟର ଗ୍ଲାନି କ'ଣ ତାକୁ ଏମିତି ନିର୍ବୀର୍ଯ୍ୟ ଉଦ୍ଦେଶ୍ୟହୀନ, ନିରୁଦ୍ୟମୀ, କାପୁରୁଷ କରିଦେଇଛି।

## (ତିନି)

ସନ୍ଧ୍ୟାର ଅନ୍ଧକାର ଗାଢ଼ ହୋଇଗଲାଣି। ହାତେ ଦୂରରୁ ମଧ୍ୟ କିଛି ବାରି ହେଉନାହିଁ। ସମୁଦ୍ରର ଗର୍ଜନ କ୍ରମଶଃ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠୁଛି। ଭୟଙ୍କର ଶବ୍ଦରେ ପ୍ରତିଧ୍ୱନିତ ହୋଇଉଠିଛି ବେଳାଭୂମିର ବାୟୁ ମଣ୍ଡଳ।

ଲୋକଟି ଏଥର ଉଠିଲା ଧୀରେ ଧୀରେ।କାହାର ଉଦ୍ଦେଶ୍ୟରେ କେଜାଣି ହାତଯୋଡ଼ି ନମସ୍କାର ହେଲା। ତାପରେ ଧୀରେ ନିଶ୍ଚିତ ପଦକ୍ଷେପରେ ଆଗେଇ ଯାଇ ଓହ୍ଲାଇଗଲା ସମୁଦ୍ର ଭିତରକୁ। ହଠାତ୍ ସ୍ତବ୍ଧ ହୋଇ ଛିଡ଼ାହୋଇଗଲା ଲୋକଟି। କିଏ ଜଣେ ଯେମିତି ଉଚ୍ଚ ସ୍ୱରରେ ତାର ନାମ ଧରି ଡାକୁଛି। ସମୁଦ୍ରର ନିର୍ଘୋଷରେ ସେଇ ନାମ ଘୋଷିତ ହେଉଛି 'ବାମନ' 'ବାମନ' 'ବାମନ'।

ସମୁଦ୍ର କହୁଛି।

—ଆରେ ବାମନ ଚରଣ ତୁ ପ୍ରକୃତରେ ବାମନ ନୁହଁ— ବାମନର ଛଦ୍ମବେଶୀ ମାତ୍ର। ନିଜ ଛଳନାରେ ନିଜେ ମୁଗ୍ଧ— ନିଜେ ବିମୋହିତ। ତୁ ମୋତେ ଭୌଗୋଳିକ ଏକ କାଳ୍ପନିକ ସୀମା ରେଖାରେ ଆବଦ୍ଧ କରି କହୁଛୁ 'ପୁରୀର ସମୁଦ୍ର'। କିନ୍ତୁ ତୁ ଜାଣୁନା ତୁ ଯେଉଁ ମୁହୂର୍ତ୍ତରେ ମୋତେ ଛୁଉଁ ସେତେବେଳେ ଏକାଧାରରେ ସପ୍ତ ସମୁଦ୍ରକୁ ଛୁଇଁ ଦେଉ। ମୁଁ ତ ବିଭକ୍ତ ନୁହେଁ, ଖଣ୍ଡ ନୁହେଁ— ମୁଁ ଅନନ୍ତ, ଅଖଣ୍ଡ, ପାତାଳ ପରି ଗଭୀର।

ଲୋକଟି ଚମକି ପଡ଼ି ଏଥର ଚାରି ଆଡ଼କୁ ଚାହିଁଲା ବିହ୍ୱଳ ହୋଇ। ସାଇଁ ସାଇଁ ପବନ ବହୁଛି। ସମୁଦ୍ରର ବେଳାଭୂମି, ଝାଉଁବଣ ଉପର ଦେଇ ସୁ ସୁ ପବନ କଥା କହୁଛି।

—ଆରେ —ବାମନ ଚରଣ, ତୂ ନିଜକୁ ଛୋଟ ବୋଲି ଭାବୁଛୁ ବୋଲି ମୋତେ ବି ସୀମିତ କରିଦେଉଛୁ ପୁରୀ ସମୁଦ୍ର କୂଳର ବାୟୁ ତରଙ୍ଗ ଭାବରେ କିନ୍ତୁ ଏଇ ଦେଖ, ମୋତେ ଛୁଇଁଲା ମାତ୍ରେ ହିଁ ଏହି ପୃଥିବୀର ସମସ୍ତ ବାୟୁମଣ୍ଡଳକୁ ସ୍ପର୍ଶ କରିଦେଲୁ। କାରଣ ମୁଁ ତ ଖଣ୍ଡିତ ନୁହେଁ, ଏକକ ନୁହେଁ। ମୁଁ ଅଖଣ୍ଡ ଅବିଭାଜ୍ୟ ବାୟୁମଣ୍ଡଳ।

ଲୋକଟି ଭୟରେ ଆକାଶକୁ ଚାହିଁଲା। ନିର୍ମେଘ ଆକାଶରେ ଲକ୍ଷ ଲକ୍ଷ ତାରକା ମଣ୍ଡଳର ବିଚ୍ଛୁରିତ ଅସ୍ପଷ୍ଟ ଆଲୋକ। ମହାଶୂନ୍ୟରୁ ଭାସିଆସୁଛି ଅନାହତ ନାଦ।

—ବାମନ, ତୁ କ'ଣ ଭାବିଛୁ ତୋ ଆଖିର ମନିଧି ଭିତରେ ରହିଥିବା ଆକାଶ ହିଁ କେବଳ ଆକାଶ? ମୁଁ ତ ଏକ ଅଚିନ୍ତ୍ୟନୀୟ, ଅନନ୍ତ, ଅବିଚ୍ଛିନ୍ନ ମହାଶୂନ୍ୟତା। କେବଳ ଏହି ମହାଶୂନ୍ୟତା ହିଁ ତ ଏକ ମାତ୍ର ବାସ୍ତବତା। ତୋ ଭିତରେ ଯେଉଁ ସ୍ପେସ୍, ଯେଉଁ ଶୂନ୍ୟତା ବାହାରେ ମଧ୍ୟ ସେହି ଶୂନ୍ୟତା। ମୋରି ଭିତରେ ଲକ୍ଷ, କୋଟି, ଅସଂଖ୍ୟ ଗ୍ରହ ତାରକା ମଣ୍ଡଳ, କୋଟି କୋଟି ଗ୍ରହ ମଣ୍ଡଳ, ତାରକା ମଣ୍ଡଳ — ତଥାପି ଏହି ଶୂନ୍ୟତାର ସାମାନ୍ୟତମ ଅଂଶ ହିଁ ପୂର୍ଣ୍ଣ ହୋଇ ପାରିନାହିଁ। ତୁ ଯୋଉ ମୁହୂର୍ତ୍ତରେ ମୋତେ ଚାହୁଁ ମୋତେ ଅନୁଭବ କରୁ, ସମଗ୍ର ବିଶ୍ୱର ଅନନ୍ତ ଶୂନ୍ୟତାକୁ ହିଁ ତୋ ଭିତରେ ତୁ ଅନୁଭବ କରୁ।

ଲୋକଟି ନିଜକୁ ଚାହିଁଲା ନିଜକୁ ଅନୁଭବ କରିବାକୁ ଚେଷ୍ଟାକଲା । ତା ଭିତରୁ ବାମନଟିଏ ବାହାରି ଆସିଲା ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାବରେ ।

ବାମନ କହୁଛି ବାମନକୁ ।

—ଆରେ ମୂର୍ଖ, ଦେହରେ ସୀମିତ ଗଣ୍ଡି ଭିତରେ ତୁ ନିଜକୁ ବାମନଟିଏ ବୋଲି ଭାବୁଛୁ । ତୁତ ପାଞ୍ଚ ଫୁଟ ଚାରି ଇଞ୍ଚର ସୀମିତ, ଆବଦ୍ଧ ଦେହଟିଏ ନୁହେଁ । ତୁ ମହାଜୀବନ, ମହାବାପ୍ତିର 'ଅସ୍ତି' ଯେ ଏହି ସମୁଦ୍ର ପରି ପାତାଳସ୍ପର୍ଶୀ, ବାୟୁ ପରି ସର୍ବବ୍ୟାପୀ ମହାଶୂନ୍ୟପରି ଅନନ୍ତ । ସେହି ଚେତନା ଅବୋରି ରଖିଛି ସ୍ୱର୍ଗ, ମର୍ତ୍ତ୍ୟ ପାତାଳକୁ ତାର ତିନୋଟି ପାଦରେ । ତୁ ତୋ ଭିତରେ ଏହି ବାମନଟିକୁ ଛୁଇଁଦେ, ଦେଖିବୁ ତତ୍‌କ୍ଷଣାତ, ସପ୍ତସମୁଦ୍ରକୁ ଛୁଇଁଲାପରି, ବିଶ୍ୱବ୍ୟାପି ବାୟୁତରଙ୍ଗକୁ ଛୁଇଁଲାପରି, ଅନ୍ତତଃ ସୀମାହୀନ ଶୂନ୍ୟତାକୁ ସ୍ପର୍ଶ କଲାପରି, ଅଚିରାତ୍ ଛୁଇଁଯିବୁ । ପୃଥିବୀର ସବୁ ମଣିଷମାନଙ୍କର ଅନ୍ତରାତ୍ମାକୁ । ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ଆଧାରଭୂତ, ପରିବ୍ୟାପ୍ତ, ସଦାଜାଗ୍ରତ ମହାଚୈତନ୍ୟ ଟିକକୁ । ପରିବ୍ୟାପ୍ତ ହୋଇଯିବୁ ବିଶ୍ୱବ୍ରହ୍ମାଣ୍ଡରେ ପ୍ରତ୍ୟେକଟି ଅଣୁପରମାଣୁରେ । ବୁଝିପାରିବୁ ତୁ ଏକକ ନୁହେଁ ବିଚ୍ଛିନ୍ନ, ନୁହେଁ କ୍ଷୁଦ୍ର ନୁହେଁ, — ତୁ ବିରାଟ । ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ହିଁ ତୋର ଏକ ବର୍ଣ୍ଣାଢ଼୍ୟ ପ୍ରକାଶ ମାତ୍ର ।'' ଲୋକଟିର ଉଚ୍ଚତା ଯେମିତି ଧୀରେ ଧୀରେ ବଢ଼ିବାକୁ ଆରମ୍ଭକଲା । ସେ ହଠାତ୍ ସମୁଦ୍ରକୁ ପଛ କରି ଦୃପ୍ତ ପଦକ୍ଷେପରେ ଆଗେଇବାକୁ ଲାଗିଲା ।

ସହର ଆଡ଼କୁ ମୁହଁ କରି ବଳିକୁ ତୃତୀୟ ପାଦରେ ପାତାଳକୁ ଚାପିସାରିଲା ପରେ ଭଗବାନ ଯେମିତି ଫେରି ଯାଇଥିବେ ନିଶ୍ଚିନ୍ତ ପଦପାତରେ ।

-୦-

# ଆଧୁନିକ ବିକ୍ରମାଦିତ୍ୟ ଓ ଅଭ୍ୟାସଗତ ଲାଞ୍ଚଦାତା

ଶେଷକୁ କୋର୍ଟକୁ ଚାଲାଣ ହୋଇଗଲେ ପନ୍ଦରଜଣ କିଛି ବୁଝି ନଥିବା ଭାରତୀୟ ପିଙ୍ଗଳ କୋଡ୍‌ର ବିଭିନ୍ନ ଦଫାରେ ଅଭିଯୁକ୍ତ ହୋଇ।

ହାଟୁଆ ସାହିରୁ ନଅ ଜଣ। କୋହ୍ଲ ସାହିରୁ ଜଣେ। ସାନ୍ତାଳ ସାହିରୁ ତିନି ଜଣ ଓ ହରିଜନ ସାହିରୁ ଜଣେ।

ଶିମିଳିପାଳ ସଂରକ୍ଷିତ ଅରଣ୍ୟ ନିକଟରେ ଗୋଟିଏ ଛୋଟ ଗାଁ। ମୁଖ୍ୟ ଟାଉନ ଜଶୀପୁରଠାରୁ ପ୍ରାୟ ଏଗାର କିଲୋମିଟର ଦୂର। ଗାଁକୁ ସବୁଦିନିଆ ରାସ୍ତା ନାହିଁ। ଜିପ୍ ଚାଲିଯାଏ ସାତ କିଲୋମିଟର ପର୍ଯ୍ୟନ୍ତ। ବାକୀ ଚାରି କିଲୋମିଟର ବିଲ ହିଡ଼ ଓ ମୁଣ୍ଡିଆ ପାହାଡ଼ ଭିତର ଦେଇ ଯିବାକୁ ପଡ଼ିଥାଏ।

ଗାଁଟିରେ ପ୍ରାୟ ଅଶୀ ଘର। ଗୋଟାଏ ପାଖକୁ ହାଟୁଆ ସାହି। ସେଥିରେ ରହନ୍ତି ପ୍ରାୟ ଦଶ ଘର ଗଉଡ଼। ଦଶ ଘର ମହାନ୍ତ। ଦୁଇଘର ଭଣ୍ଡାରୀ। ଦୁଇ ଘର କୁମ୍ଭାର। ଗୋଟିଏ ଘର ଧୋବା ଓ ବାକୀ କେତେଘର ରାଜୁଆଳ ଓ ବାଗ୍‌ଦି ଜାତି ଲୋକେ। ଏହାଠୁ ପ୍ରାୟ ଦେଢ଼ ଫର୍ଲଙ୍ଗ ଛାଡ଼ି ଆଦିବାସୀ ସାହି। ସେଇଠି ପ୍ରାୟ ଦଶ ଘର ସାନ୍ତାଳ ଓ ସାତ ଆଠ ଘର କୋହ୍ଲ। ଏଇ ଦୁଇ ସାହି ମଝିରେ ତିନି ଚାରି ଘର ହରିଜନ ବସ୍ତି। ଏମାନେ ପର୍ବପର୍ବାଣୀରେ ବାଜା ବଜାନ୍ତି ଓ ବାକୀ ସମୟରେ ତାଡ଼ି ବ୍ୟବସାୟ କରନ୍ତି।

ଗାଁର ସମସ୍ତେ ପ୍ରାୟ ଊଣାଅଧିକେ ଚାଷୀ। କାହାର ମାଣେ ତ କାହାର ଦଶମାଣ ଏତିକି ଯାହା ପ୍ରଭେଦ।

କେତେପୁରୁଷ ଧରି ଏମାନେ ଏଇଠି ବସବାସ କରି ଆସୁଛନ୍ତି କାହାରିକି ସଠିକ ଜଣାନାହିଁ। କେହି ସେ ବିଷୟରେ ମୁଣ୍ଡ ବି ଖେଳାନ୍ତି ନାହିଁ। ଏଇଟା ତାଙ୍କର ସପ୍ତପୁରୁଷର ଭିଟାମାଟି। ତା' ଆଗରୁ କିଏ ଆସିଥିଲା। କିଏ ରହିଥିଲା ତାର ଖବରରେ ବା କଣ ଦରକାର।

ଗାଁରେ ଆଦିବାସୀ ଅଣଆଦିବାସୀ, ସବର୍ଣ୍ଣ ହରିଜନ ସଂଘର୍ଷ କେବେହେଲେ ଘଟିନାହିଁ ବା ଘଟିବାର ସାମାନ୍ୟତମ ଲକ୍ଷଣ ବି ନାହିଁ। ହଁ, ମଝିରେ ମଝିରେ ଜମିବାଡ଼ି ନେଇ ଯେ ସଂଘର୍ଷ କଳି ତକରାଳ ନ ହୁଏ ତା' ନୁହେଁ, ତେବେ ସେଗୁଡ଼ା ସାମୟିକ ଓ ଗ୍ରାମ୍ୟସ୍ତରରେ ହିଁ ତାର ବୁଝାମଣା ଓ ଫଇସଲା ହୋଇଯାଏ। ତାଙ୍କର ଜୀବନକାଳ ଭିତରେ ଏ ପର୍ଯ୍ୟନ୍ତ କେହି କଚିରୀ ବାରଣ୍ଡା ମାଡ଼ିଥିବାର ଜଣାନାହିଁ।

ଏହିପରି ଏକ ଶାନ୍ତ, ନିରୁପଦ୍ରବ ଗାଁଟିରୁ ଏକାବେଳକେ ପନ୍ଦର ଜଣ ବ୍ୟକ୍ତି କଚିରୀକୁ ଚାଲାଣ ହୋଇଯିବା ଏକ ପ୍ରକାର ଅଭିନବ ଓ ଗ୍ରାମ ଇତିହାସରେ ଏକ ଅଭାବିତ, ଉଲ୍ଲେଖଯୋଗ୍ୟ ଘଟଣା।

ଗାଁର କୋଡ଼ିଏ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ସମସ୍ତ ଗ୍ରାମବାସୀ ନିରକ୍ଷର। ଦଶବର୍ଷରୁ କୋଡ଼ିଏ ବର୍ଷ ବୟସ ଭିତରେ ଥିବା ପ୍ରାୟ ଶହେ ଜଣ ବାଳକ ବାଳିକା ଭିତରୁ ମାତ୍ର ତିନି ଜଣ ନିମ୍ନ ପ୍ରାଇମେରୀ ପାଶ୍ ଓ ବାକି କୋଡ଼ିଏ କି ତିରିଶ ଜଣ ମାତ୍ର ସାକ୍ଷର ତାଲିକାରେ ଯିବାର ଯୋଗ୍ୟତା ହାସଲ କରିଛନ୍ତି। ଗତ ବର୍ଷ ଏହି ଗାଁରୁ ଦୁଇଜଣ ପିଲା ନିକଟସ୍ଥ ଜଶୀପୁର ହାଇସ୍କୁଲରୁ ମାଟ୍ରିକ ପାଶ୍ କରି ଏହି ଗ୍ରାମର ପ୍ରଥମ ମାଟ୍ରିକ୍ୟୁଲେଟ୍ ଭାବରେ ଇତିହାସରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଛନ୍ତି।

ଏବଂ ସେହିମାନଙ୍କ ଯୋଗୁ ହିଁ ଆଜିର ଏହି ବିପର୍ଯ୍ୟୟ। ଗତ ଶତାବ୍ଦୀ ଧରି ଯାହା କେବେ ଘଟି ନଥିଲା। ତାହା ହଠାତ୍ ଘଟିଗଲା ଅଚାନକ ଭାବରେ ସମସ୍ତ ଗ୍ରାମବାସୀଙ୍କୁ ହତବାକ୍ ଓ ସ୍ତମ୍ଭୀତ କରିଦେଇ।

ଏମିତି ଚଳି ଆସୁଥିଲା ବର୍ଷକୁ ବର୍ଷ। ତାକୁ କେହି ଅନ୍ୟାୟ ମନେ କରି ନାହିଁ। ଗୋଟାଏ ଧର୍ତ୍ତବ୍ୟ ଅପରାଧ ବୋଲି ଗଣ୍ୟ କରି ନାହିଁ। ସବୁ ଯେମିତି ଏଇ ଆକାଶ, ପବନ, ଅରଣ୍ୟ ପରି ଋତୁ ପରିବର୍ତ୍ତନ ପରି ସ୍ୱାଭାବିକ।

ବର୍ଷକୁ ବର୍ଷ ଫାଲଗୁନ ଚୈତ୍ର ବେଳକୁ ପାଖ ଗାଁର ପ୍ରଧାନ ଆସୁଥିଲା। ଖଜଣା ନେଇ ପାଉତି ଦେଉଥିଲା। ପ୍ରଧାନର ସମସ୍ତ ଖାଇବାଖର୍ଚ୍ଚ ବାଦ୍ କିଛି ଚାଉଳ, କିଛି ଟଙ୍କା ନେଇ ବିଦାୟ ହେଉଥିଲା। ତାପରେ ରେଭିନ୍ୟୁ ଇନିସ୍‌ପେକ୍ଟର ଆସିଲେ ପ୍ରଧାନ ବଦଳରେ। ସେମାନଙ୍କ ବେଳକୁ କୁକୁଡ଼ାଟିଏ, ପଣସ କଠା ଇତ୍ୟାଦି କିଛି ବେଶୀ ଦେବାକୁ ପଡ଼ିଥିଲା। କିନ୍ତୁ ସମୟକୁ ଦେଖି କେହି ଆପତ୍ତି କରି ନଥିଲେ।

ଫରେଷ୍ଟ ଗାର୍ଡ଼ ବି ସେମିତି। ପ୍ରତି ହାଟ ପାଳିକୁ ହାଟ ପାଳି ସେ ଆସେ। କିଛି ଚାଉଳ, ଦି ଚାରିଟା କୁକୁଡ଼ା ନେଇ ବି ସେ ବିଦାୟ ହୁଏ। ପ୍ରତି ବଦଳରେ ଲଙ୍ଗଳ କଣ୍ଟି କି ଜୁଆଳିଟିଏ ବା ଶଗଡ଼ଚକ ପାଇଁ ଜଙ୍ଗଲର ଗଛ କାଟିଲାବେଳେ ସେ ପ୍ରତିବାଦ କରେ ନାହିଁ। ପୁଣି ଘର ଛପରବେଳେ ରୁଅ ବାଉଁଶ ତ ଅଛି। ସେଥିପାଇଁ ସେମାନଙ୍କୁ ଆଉ ଫରେଷ୍ଟର ଅଫିସରୁ 'ଛାଡ଼' ଆଣିବାକୁ ପଡ଼େନାହିଁ। ସେମାନେ ବି ଖୁସି, ଫରେଷ୍ଟ ଗାର୍ଡ଼ ବି ଖୁସି। କୌଣସି ଥର କିଛି ଗଣ୍ଡଗୋଳ ହେବାର ଶୁଣାଯାଇ ନାହିଁ। ଯାହା ହୁଏ ସେ ସାମାନ୍ୟ। ହାଟପାଳି ଦିନ ଫରେଷ୍ଟଗାର୍ଡ଼ର ମଦ ଖର୍ଚ୍ଚା ପାଇଁ ପଇସା ଦେବାବେଳେ ଯାହା ଟିକିଏ ଯୁକ୍ତିତର୍କ ହୋଇଥାଏ।

ବଡ଼ ଧରଣର ଗଣ୍ଡଗୋଳ ଘଟିଥାଏ କେବଳ ଭାଇଭାଗ ଜମି ଚିହ୍ନଟ କରିବାକୁ ଯେତେବେଳେ ଅମିନ ଓ ଚେନ୍‌ମେନ୍ ଆସନ୍ତି। ସେତେବେଳେ ଚେନ୍ ଟିକିଏ ହାତେ ଏପଟ ସେପଟ କରିବାକୁ ସେ କିଛି ଅସୁଲ କରିଥାଏ॥ ତଥାପି ଗାଁର ପାଞ୍ଚଟା ବୁଢ଼ା ସେ କଥାକୁ ରଫାନାମା କରି ଦିଅନ୍ତି ଓ କଥାଟାକୁ ବଢ଼ିବାକୁ ଦିଅନ୍ତି ନାହିଁ।

ଜଙ୍ଗଲ ଗାର୍ଡ଼୍କୁ ଯେତେ ଭୟ ନାହିଁ ତାଠାରୁ ବେଶୀ ଭୟ ଏଇ ଅମିନଙ୍କୁ। ଅକାଳେ ସକାଳେ ଥରେ ଆସିବ। କିନ୍ତୁ ଗୋଟାଏ ଭୟାନକ କାଣ୍ଡ ଘଟାଇ ଦେଇଯିବ। ଭାଇ ଭାଇ ହଣାକଟା ପର୍ଯ୍ୟନ୍ତ ଯିବେ। ଯେତେହେଲେ ପୈତୃକ ଜମି। ହାତେ କାହିଁକି ଆଙ୍ଗୁଳିଏ ବି କିଏ କାହିଁକି ଛାଡ଼ିବ ଯେ ?

ଏଇସବୁ କେଶ୍‌ଗୁଡ଼ିକରେ ସେମାନଙ୍କୁ ଟିକିଏ ବେଶୀ ପଇସା ଖର୍ଚ୍ଚ କରିବାକୁ ପଡ଼େ। ଅମିନଗୁଡ଼ା ଚାଉଳ, କୁକୁଡ଼ାରେ ସନ୍ତୁଷ୍ଟ ହୁଅନ୍ତି ନାହିଁ। ତାଙ୍କ ଉପରେ ରେଭିନ୍ୟୁ ଇନିସ୍‌ପେକ୍ଟର ଅଛି। ତା' ଉପରେ ପୁଣି ସୁପରଭାଇଜର। ସବାଶେଷକୁ ତହସିଲଦାର। ସେତକ ସରିଲା ପରେ ପୁଣି ରେଜିଷ୍ଟ୍ରି ଖର୍ଚ୍ଚା ଅଛି। ଓକିଲ, ମୋହରିର, ରେଜିଷ୍ଟ୍ରି ଅଫିସର କିରାଣୀ, ମାଜିଷ୍ଟ୍ରେଟ୍। ଅନେକ ବର୍ଷ ତଳେ ଏମିତି ଗୋଟାଏ କେଶରେ ଦୁଇ ଭାଇ ଜମି ପାଇଲା ବେଳକୁ ସେ ଭିତରୁ ଅଧିକାଂଶ ବନ୍ଧକ ପଡ଼ି ଯାଇଥିଲା। ତେଣୁ ତା' ପରଠୁ ଆଉ କେହି ସେ ବିଷୟରେ କୋର୍ଟ କଚିରୀ ଯାଇ ରେଜିଷ୍ଟ୍ରି କରିବାକୁ ମନ ବଳେଇ ନାହାନ୍ତି ଓ ଗାଁ ପଞ୍ଚୁଆତିରେ ଭାଗ ଓ ଚିହ୍ନଟକୁ ମାନି ନେଇଥାନ୍ତି ନିର୍ବିବାଦରେ।

ତଥାପି ଏ ସମ୍ବନ୍ଧରେ କେହି ପ୍ରତିବାଦ ଜଣାଇ ନାହାନ୍ତି ଆଜିଯାଏ। ଅମିନ ଆସିବେ, କୁକୁଡ଼ା ଖାଇବେ— ପଇସା ନେବେ। ସ୍ୱାଭାବିକ କଥା। ସେ ବି ଏକ ପ୍ରକାର ଖଜଣା ବୋଲି ସମସ୍ତେ ଧରି ନେଇଥାନ୍ତି।

ଦି ତିନି ବର୍ଷକୁ ଥରେ ପୋଲିସ ଆସିଥାଏ। କିନ୍ତୁ ସେଥିରେ କିଛି ବୈଚିତ୍ର୍ୟ ନ ଥାଏ କି ଗ୍ରାମବାସୀମାନଙ୍କୁ ହଇରାଣ ହେବାକୁ ପଡ଼ି ନଥାଏ। ଏଇ ସବୁ ଘଟଣା ବେଶିଭାଗରେ ଘଟିଥାଏ ଆଦିବାସୀ ସାହିରେ। କିଏ କାହାର ମାଇକିନାକୁ ନେଇଗଲା ତ ଦିଅ ହାଣିଦିଅ। ତାପରେ କଟା ମୁଣ୍ଡକୁ ନେଇ ଥାନାରେ ହାଜର ହୋଇଯାଅ। ସିଧା ସଳଖ କାରବାର। ମାରପେଞ୍ଚ ନାହିଁ। ଲୁଚି ବୁଲିବା ନାହିଁ। ସାକ୍ଷୀ ପ୍ରମାଣର ଦରକାର ନାହିଁ ନିଜକୁ ନିର୍ଦ୍ଦୋଶ ବୋଲି ପ୍ରମାଣ କରିବାର।

ତେଣୁ ଏ କ୍ଷେତ୍ରରେ ପୋଲିସର ବି ବିଶେଷ କିଛି କରିବାର ଦରକାର ପଡ଼ି ନଥାଏ। ସାକ୍ଷୀମାନେ ବି ବିନା ପ୍ରତିବାଦରେ କହିଯାଆନ୍ତି ଯାହା ଦେଖିଛନ୍ତି ବା ଯାହା ଶୁଣିଛନ୍ତି। ତେଣୁ ଗାଁରେ ପୋଲିସର ଭୟ ବିଶେଷ କିଛି ନଥାଏ।

ଗାଁ ବାଲାଙ୍କର ଦୁଇଟି ବନ୍ଧୁ—ଦୁଇଟି ଶତ୍ରୁ।

ଫରେଷ୍ଟ ଗାର୍ଡ଼ ଓ ଅମିନ— ରେଭିନ୍ୟୁ ଇନିସ୍‌ପେକ୍ଟର। ତଥାପି ସେମାନଙ୍କୁ ସେମାନେ ବିକନା ପ୍ରତିବାଦରେ ସହିଯାଆନ୍ତି ଅରଣ୍ୟର ଗଛଟିଏ ପରାଙ୍ଗପୁଷ୍ଟ ନିର୍ମୁଳି ଲତାଟିକୁ ସହ୍ୟ କରିଗଲା ପରି।

କିନ୍ତୁ ଏମିତି ଘଟଣା କେବେ ଘଟି ନଥିଲା। ଘଟିଲା ସେଇ ଦୁଇଟି ପିଲା ଯୋଗୁଁ। ଗଉଡ଼ ସାହିର ଗୋବର୍ଦ୍ଧନ ଗିରି ଓ ମହାନ୍ତ ସାହିର ଭୁବନ ମହାନ୍ତ।

ପାଠପଢ଼ି ସେମାନଙ୍କ ମୁହଁ ଟିକିଏ ଉପରକୁ ହୋଇଯାଇଛି କି ନା ସେଇଥିପାଇଁ ସେମାନେ ରେଭିନ୍ୟୁ ସୁପରଭାଇଜର ସାଙ୍ଗରେ ଯୁକ୍ତିତର୍କ କଲେ। ଶେଷକୁ ପାଟିତୁଣ୍ଡ ହୋଇ ମାଡ଼ପିଟ୍ ପର୍ଯ୍ୟନ୍ତ କଥାଗଲା।

ଅବଶ୍ୟ ଘଟଣାର ସୂତ୍ରପାତ ହୋଇଥିଲା ପ୍ରାୟ ବର୍ଷକ ତଳେ। ସେଇଥର ହରିଜନ ସାହିର ଜଣେ ଓ ଆଦିବାସୀ ସାହିର ଦୁଇଜଣ ପିଲା ପ୍ରଥମଥର ପାଇଁ ମାଇନର ପାଶ୍ କରିଥିଲେ। ସେମାନେ ଷ୍ଟାଇପେଣ୍ଡ ପାଇବା ପାଇଁ ଅନୁସୂଚିତ ଜାତିର ସାର୍ଟିଫିକେଟ୍ ପାଇଁ ଯାଇଥିଲେ ସୁପରଭାଇଜରଙ୍କ ପାଖକୁ ଏବଂ ସେତିକିବେଳେ ସେ ଜଣକୁ ଶହେଟଙ୍କା ଲେଖାଏଁ ଘୁଷ୍ ଦାବୀ କରିଥିଲା। ଯଦିଓ ବହୁତ ଧରାଧରି ପରେ ଶେଷକୁ ଷାଠିଏ ଟଙ୍କାରେ ଦର ଛିଣ୍ଡି ଥିଲା । ସେ କଥାଟା ସେମାନଙ୍କ ମନ ଭିତରୁ ଯାଇ ନ ଥିଲା। ତା ପରେ ପରେ ସେମିତି ଆଉ ଦୁଇ ତିନୋଟି ଘଟଣା ଘଟିଥିଲା ଯେତେବେଳେ ଅନ୍ୟ ସାହିର ଦି'ଜଣ ଆଦିବାସୀ ପିଲା କରଞ୍ଜିଆକୁ ଯାଇଥିଲେ ଚାକିରିରେ ସାକ୍ଷାତ୍କାର କରିବାକୁ। ସେମାନଙ୍କୁ ମଧ ସେମାନଙ୍କର ଆଦିବାସୀତ୍ୱ ପ୍ରମାଣ କରିବାକୁ ପ୍ରମାଣପତ୍ର ସଂଗ୍ରହ ପାଇଁ ଶହେଟଙ୍କା ଲେଖାଏଁ ଘୁଷ୍ ଦେବାକୁ ପଡ଼ିଥିଲା।

ମନେ ମନେ ରାଗଟା ରହିଥିଲା। କିନ୍ତୁ ଭୁଲି ହୋଇଯାଉଥିଲା। ହୁଏତ ବର୍ଷକ ପରେ ସେଇଟା ବି ଏକପ୍ରକାର ଦିହସୁହା ହୋଇଯାଇଥାନ୍ତା।

କିନ୍ତୁ ସେତିକିବେଳେ ସେ ମାଗିଲା ହଜାରେ ଟଙ୍କା। ଆରେ ତା ବାପର ଜମି। ଗୋଟିଏ ବୋଲି ପୁଅ। ଜମି ଚିହ୍ନଟ ପାଇଁ ହଜାରେ ଟଙ୍କା କାହିଁକି? ଅମିନ ଖର୍ଚ୍ଚପାଇଁ ତହସିଲଦାର ଅଫିସରେ ସରକାରୀ ଟଙ୍କା ଦାଖଲସତ୍ତ୍ୱେ ଆଉ ଏତେ ପଇସା କାହିଁକି?

—ଆରେ, ଏତେ ଯୁକ୍ତିତର୍କରୁ କଣ ମିଳିବ। ପଇସା ଦେ, ନହେଲେ କେହି ଯିବେ ନାହିଁ।

ଏତିକିବେଳେ ଗୋବର୍ଦ୍ଧନ କହିଲା— "ଆପଣ ସରକାରୀ ଅଫିସର୍ ହୋଇ ଘୁଷ୍ ମାଗୁଛନ୍ତି।" ରେଭିନ୍ୟୁ ସୁପରଭାଇଜର ଜଗବନ୍ଧୁ ମହାନ୍ତି ଏହି ଅପୋଗଣ୍ଡ କିଶୋର ଆଡ଼କୁ ଟିକିଏ ତେରେଛେଇ ଚାହିଁ, ଅବଜ୍ଞାସୂଚକ ସ୍ୱରରେ କହିଲେ — "କ'ଣ ହେଲା ସେଇଠୁ? ଆମେ କ'ଣ ତୋ ବୋପାର ଚାକର ଯେ ଯେତେବେଳେ କହିବୁ ସେତିକିବେଳେ ବସିଲାଠଉଁ ଉଠିଯିବୁ। ଆମର ଖର୍ଚ୍ଚବାର୍ଚ୍ଚ ନାହିଁ। ଭାରି ଆସିଲା ମୋତେ ଶିଖେଇବାକୁ। କହିଲା କଣ ନା 'ଘୁଷ୍'? ଶଳା, ପଳା ବେ ନଇଲେ ଯା ଏଇଠୁ।"

ଗ୍ରାମର ପ୍ରଥମ ମାଟ୍ରିକ୍ୟୁଲେଟ୍ ଏ ଅପମାନରେ ଉତ୍ୟକ୍ତ ହୋଇ ଉଠିଲା। ଏତେ ଲୋକ ପାଖରେ ତାର ଏତେବଡ଼ ଅପମାନ। ପାଖରେ ଛିଡ଼ାହୋଇଥିଲା ଭୁବନ।

ସେ ରାଗରେ ଉତ୍ୟକ୍ତ ହୋଇ ପଡ଼ି କହିଲା— "ମୁହଁ ସମ୍ଭାଳି କଥା କହନ୍ତୁ ଆଜ୍ଞା। ଏକେ ତ ଘୁଷ୍ ମାଗୁଛନ୍ତି। କହିଲାବେଳକୁ ଆହୁରି ଫୁଟାଣି କାଢୁଛନ୍ତି। ଆପଣ ଏଇଠୁ ବିନା ପଇସାରେ କାମ କରିଯିବେ। ନ ହେଲେ ଆପଣଙ୍କୁ ଆପଣଙ୍କ ଇନିସ୍‌ପେକ୍ଟର, ଅମିନ ଓ ଚେନ୍‌ମେନ୍‌କୁ ଏଇଘରେ ତାଲା ପକେଇ ରଖିଦେବୁ। ଦେଖିବା କିଏ କଣ କରୁଛି।"

ଅମିନ ଖିଙ୍କାରି ଉଠିଲା—"ଶଳା, କାଲିକା ଟୋକା ପାଠ ଦି'ଅକ୍ଷର ପଢ଼ିଛୁ କି ନାଇଁ ଜବାବ୍ ଦେବାକୁ ଆରମ୍ଭ କଲୁଣି। ଶଳା, ମାରିବି ଗୋଟାଏ ଚାପୁଡ଼ା ଯେ ତୋ ମୁଣ୍ଡଗଣ୍ଡି ଅଲଗା କରିଦେବି। ଶଳା, ତୁ ତ ତୁ, ତୋ ବୋପା ମା'ଙ୍କୁ ଡାକି ଆଣିଲୁ। ଦେଖିବି କିଏ ଆମ ଦିହରେ ଟିପ ମାରିବ? ଶଳା, ବନ୍ଦ କରିବୁ ଆମକୁ। ଦେଖି, କେତେ ସାହସ।"

ଚେନ୍‌ମେନ୍ ସାହସ ପାଇ ଆଉ ଟିକିଏ ଆଗେଇଯାଇ ଠୁକି ଦେଲା ଗୋଟାଏ ଚାପୁଡ଼ା ଭୁବନ ଗାଲରେ।

ଠୁଳହୋଇଥିବା ଗ୍ରାମବାସୀ ହଠାତ୍ ମୁହୂର୍ତ୍ତକ ପାଇଁ ଭୟ ଆଶଙ୍କାରେ ସ୍ତବ୍ଧ ହୋଇ ରହିଗଲେ। କାହାରି ମୁହଁରୁ କଥା ବାହାରୁ ନାହିଁ। କେତେଜଣ ହାତଯୋଡ଼ି ସାରିଲେଣି। ବୁଢ଼ା ବୁଢ଼ାମାନେ ହତବାକ୍ ହୋଇ, କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ପଥର ପରି ଠିଆହୋଇ ରହିଛନ୍ତି।

ଯେତେହେଲେ ସେମାନେ ସର୍କାରୀ ଲୋକ। କାଗଜ କଲମରେ କ'ଣ କରିଦେବେ ଗାଁର ସବୁ ଜମି ଚାଲିଯିବ କାହା ହାତକୁ। ସର୍କାର ଜମିବାଡ଼ି କୋରଖ କରିନେଇ ଯାଇପାରନ୍ତି। କଣ ହେବ? କଣ ହେବ? ଆଶଙ୍କାର ଛାୟା ଧୀରେ ଧୀରେ ଘନୀଭୂତ ହେଉଛି।

ଏତିକିବେଳେ କିଏ ଜଣେ ପଛରୁ ପାଟିକଲା— "ମାର ଶଳାଙ୍କୁ।"

ବୁଢ଼ା ବୁଢ଼ାମାନଙ୍କୁ ଆଡ଼େଇଦେଇ ମାଡ଼ିଆସିଲେ ଚାରି ଛଅଟା ଟୋକା। କିଛି ବୁଝିବା ଆଗରୁ ଆରମ୍ଭ ହୋଇଗଲା ମାଡ଼। ବିଧା ଗୋଇଠା ଚଟକଣି।

କାଗଜପତ୍ର ଛାଡ଼ି ଦଉଡ଼ିଲେ ରେଭିନ୍ୟୁ ସୁପରଭାଇଜର, ଇନିସ୍‌ପେକ୍ଟର, ଅମିନ, ଚେନ୍‌ମେନ୍ ବିଲମାଳ ଭିତରେ ଦିଗବିଦିଗ ନ ମାନି। ବୁଢ଼ାମାନେ ଗୋଟାଏ ଦି'ଟାକୁ ଅଟକେଇ ନ ଥିଲେ ଦି'ଟା ଲାସ୍ ପଡ଼ିଯାଇଥାନ୍ତା ସେଦିନ।

ତା ପରଦିନ ସକାଳୁ ଆରେଷ୍ଟ ହୋଇ କୋର୍ଟକୁ ଚାଲାଣ ହୋଇଗଲେ ପନ୍ଦରଜଣ ବିଭିନ୍ନ ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହୋଇ।

ବିଚାରର ଶେଷଦିନର ବିବରଣୀ ଏହିପ୍ରକାର ହୋଇଥିଲା।

ଓକିଲ— ଦେଖ, ଗୀତା ଛୁଇଁ ଶପଥ କରିଛ, ଯାହା କହିବ ସତ କହିବ।

ଗ୍ରାମବାସୀ— ଆଜ୍ଞା, ହଜୁର୍।

ଓକିଲ – ତମେ ସୁପରଭାଇଜରକୁ ମାଡ଼ ମାରିଛ ?

ଗ୍ରାମବାସୀ – ଆଜ୍ଞା, ହଜୁର ।

ଓକିଲ – କାହିଁକି ?

ଗ୍ରାମବାସୀ – ଆଜ୍ଞା, ଚେନ୍‌ମେନ୍‌ବାବୁ ପ୍ରଥମେ ଆମର ଭୁବନକୁ ପିଟିଲେ । ସେଇଠୁ ପିଲାମାନେ ରାଗିଗଲେ । ସେମାନଙ୍କ ଭିତରେ ପିଟାପିଟି ହେଲେ ।

ଓକିଲ – ତମେ କ'ଣ କରୁଥିଲ ।

ଗ୍ରାମବାସୀ – ଆମେ ସବୁ ବୁଢ଼ାମାନେ ସେମାନଙ୍କୁ ଛଡ଼ାଛଡ଼ି କରିଦେଲୁଁ ।

ଓକିଲ – ଚେନ୍‌ମେନ୍ କାହିଁକି ପିଟିଲେ ?

ଗ୍ରାମବାସୀ – ସୁପରଭାଇଜରବାବୁ ଜମି ଚିହ୍ନଟ ପାଇଁ ହଜାରେ ଟଙ୍କା ଘୁଷ୍ ମାଗୁଥିଲେ । ଗୋଦ୍ରା ତାଙ୍କୁ ପଚାରିଲା କାହିଁକି ଘୁଷ୍ ମାଗୁଛ ବୋଲି । ସେଇଠୁ କଥା କଟାକଟି ହେଲା । ଚେନ୍‌ମେନ୍‌ବାବୁ ଉଠିଆସି ଭୁବନକୁ ରାଗରେ ଚାପଡ଼ ମାରିଲେ ।

ଓକିଲ – ସେ ଘୁଷ୍ ମାଗୁଥିଲା ବୋଲି ପ୍ରମାଣ କ'ଣ ?

ଗ୍ରାମବାସୀ – ଆଜ୍ଞା, ସତକଥା କହୁଛି । ସମସ୍ତେ ଥିଲେ । ସମସ୍ତେ ମିଛ କଥା କହିବେ କେନେ ?

ଓକିଲ କିଛି ସମୟ ଚୁପ୍ ରହିଲେ । ତା'ପରେ ଟିକିଏ ସ୍ୱର ବଦଳାଇ ପଚାରିଲେ—

ଓକିଲ – ଫରେଷ୍ଟଗାର୍ଡ଼ ତମ ଗାଁକୁ ଯାଏ ?

ଗ୍ରାମବାସୀ – ଆଜ୍ଞା ।

ଓକିଲ – ତାକୁ କିଛି ଖର୍ଚ୍ଚବାର୍ଚ୍ଚ ଦିଅନାହିଁ ।

ଗ୍ରାମବାସୀ – ଦେଉଁ ଆଜ୍ଞା । ଚାଉଳଟା, କୁକୁଡ଼ାଟା—

ଓକିଲ – କେବେ ଦିଅ ?

ଗ୍ରାମବାସୀ – ପ୍ରତି ହାଟପାଳି ।

ଓକିଲ – ଆଚ୍ଛା, ଅମିନ ତମ ଗାଁକୁ କେବେ ଯାଇଛି ।

ଗ୍ରାମବାସୀ – ହଁ, ଆଜ୍ଞା ।

ଓକିଲ – ତାଙ୍କୁ କିଛି ଦିଅ ?

ଗ୍ରାମବାସୀ – ହଁ ଆଜ୍ଞା, ସୁପଭାଇଜରବାବୁ, ଇନିସ୍‌ପେକ୍ଟରବାବୁ, ଅମିନବାବୁ ଗଲେ ଆମେ ଖର୍ଚ୍ଚବାର୍ଚ୍ଚ ଦେଉଁ ।

ଓକିଲ – ଆଚ୍ଛା, ଏଇ ଯେ ଫରେଷ୍ଟଗାର୍ଡ଼, ସୁପରଭାଇଜରବାବୁ, ଅମିନବାବୁ ସେମାନେ କ'ଣ ସବୁବେଳେ ମାଗନ୍ତି ?

ଗ୍ରାମବାସୀ – ନାଇଁ ଆଜ୍ଞା, ସେମାନେ ଗଲେ ଆମେ ଦେଉଁ । ଏଟା ତ ଆମ

ବାପ ଜେଜେବାପା ଅମଳରୁ ଚଳି ଆସୁଛି। ବେଶୀ ଟଙ୍କା ମାଗିଲେ ଦେଇପାରୁ ନାହୁଁ। ନ ହେଲେ ଏମିତି କିଛି ଟଙ୍କା ଦେଇଥାଉଁ।

ଓକିଲ – ଏଗୁଡ଼ା କ'ଣ ଘୁଷ୍ ନୁହେଁ ?

ଗ୍ରାମବାସୀ – କେଜାଣି ଆଜ୍ଞା—ଆମେ ତ ପୁରୁଷ ପୁରୁଷ ଧରି ଏମିତି ଦେଇ ଆସୁଛୁ—କହିପାରିବିନି।

ଓକିଲ ମୁରୁକି ହସି ବନ୍ଦକଲେ। ମାଜିଷ୍ଟ୍ରେଟ୍ ମଧ୍ୟ ମୁରୁକି ହସି ଜେରା ବନ୍ଦ କଲେ। ତାର ଦୁଇଦିନ ପରେ ଦିନ ଚାରିଟା ବେଳକୁ ରାୟ ବାହାରିଲା।

"ଏହି କେଶ୍‌ର ସମସ୍ତ ସାକ୍ଷ୍ୟ ପ୍ରମାଣ ତଥା ବିବରଣୀକୁ ବିଚାରକୁ ନେଇ ମୁଁ ଦେଖିଲି ଏହି ଗ୍ରାମବାସୀମାନେ ଅଭ୍ୟାସଗତ ଘୁଷ୍ ଦାନକାରୀ ବ୍ୟକ୍ତି। ସେମାନେ ସ୍ୱୀକାର କରିଛନ୍ତି ଯେ ପୁରୁଷ ଧରି ସେମାନେ ସରକାରୀ କର୍ମଚାରୀମାନଙ୍କୁ କିଳାପୋତେଇ ଦେଇ ଆସୁଛନ୍ତି। ଏହା ଏକ ଅତୀବ ଗର୍ହିତ ବ୍ୟାପାର। ସରକାରୀ କର୍ମଚାରୀମାନଙ୍କୁ ଏହିପରି ନିୟମିତ ଭାବରେ ପ୍ରଲୋଭନ ଦେଇ ସେମାନେ ସେମାନଙ୍କୁ ଦୁର୍ନୀତିଗ୍ରସ୍ତ କରିଛନ୍ତି। ସରକାରୀ କର୍ମଚାରୀମାନେ ଏ ସଂକ୍ରାନ୍ତ ଘଟଣାରେ ନିର୍ଦ୍ଦୋଷ। ତେଣୁ ସେମାନଙ୍କୁ ଏ ଅଭିଯୋଗରୁ ମୁକ୍ତ କରାଗଲା।

ଆଉ ଯୋଉମାନେ ଏହିପ୍ରକାର ହୀନକର୍ମରେ ଲିପ୍ତ ସେମାନେ କଠିନତମ ଶାସ୍ତି ପାଇବାର ଯୋଗ୍ୟ। କିନ୍ତୁ ଯେହେତୁ ଏହା ସେମାନଙ୍କର ପ୍ରଥମ ଅପରାଧ। ତେଣୁ ଅଭିଯୁକ୍ତ ପନ୍ଦରଜଣ ଗ୍ରାମବାସୀଙ୍କୁ ତିନିମାସ ପର୍ଯ୍ୟନ୍ତ ସଶ୍ରମ କାରାଦଣ୍ଡ ଦେବାର ଆଦେଶ ଦେଲି।"

ଭାରତୀୟ ପିଙ୍ଗଳ କୋଡ଼ର ପଞ୍ଚସହସ୍ରାଧିକ ପିତୁଳା ସନ୍ନିହିତ ସିଂହାସନ ଉପରେ ଅଧିଷ୍ଠିତ ଆଧୁନିକ ବିକ୍ରମାଦିତ୍ୟଙ୍କର ଏହିପ୍ରକାର ଚମତ୍କାର ନିଷ୍ପତ୍ତି ଶୁଣି ଉପସ୍ଥିତ ସମସ୍ତ ସର୍କାରୀ କର୍ମଚାରୀମାନେ ଆନନ୍ଦରେ ବିହ୍ୱଳ ହୋଇ ସମସ୍ୱରରେ ଜୟ ଜୟକାର ଧ୍ୱନି ଦେଇ କହିଲେ—"ସାଧୁ, ସାଧୁ।"

-୦-

# ଦୁର୍ଗନ୍ଧ

ଆଜିକୁ ପ୍ରାୟ ଚାଳିଶ ବର୍ଷ ତଳେ ଯେତେବେଳେ ସୂର୍ଯ୍ୟକାନ୍ତ ପ୍ରଥମ ଥର ପାଇଁ କଟକ ଷ୍ଟେସନରେ ଓହ୍ଲାଇଥିଲା, ସେତେବେଳେ ଗୋଟାଏ ବିଚିକିଚିଆ ଦୁର୍ଗନ୍ଧରେ ତାର ନିଶ୍ୱାସ ରୁନ୍ଧି ହୋଇଯାଇଥିଲା। ସେ ଭକ୍ ଭକ୍ କରି ବାନ୍ତି କରି ପକେଇଥିଲା ଷ୍ଟେସନର ପ୍ଲାଟଫର୍ମ ଉପରେ।

ସୂର୍ଯ୍ୟକାନ୍ତ ମୟୁରଭଞ୍ଜ ଗଡ଼ଜାତର ଗୋଟାଏ ଛୋଟ ମଫସଲ ଟାଉନ ରାଇରଙ୍ଗପୁରର ବାସିନ୍ଦା। ରାଇରଙ୍ଗପୁରରୁ ବସରେ ଚଢ଼ି ବାଙ୍ଗିରିପୋଷି, ସେଇଠି ନେରୋଗେଜ ଟ୍ରେନରେ ରୂପସା, ପୁଣି ରୂପସାରୁ ପୁରୀ-ଆସାନସୋଲ ପେସେଞ୍ଜର ଧରି କଟକକୁ ପହଞ୍ଚିବାକୁ ସେତେବେଳେ ପ୍ରାୟ ଅଢ଼େଇଦିନ ସମୟ ଲାଗୁଥିଲା। ସେ ପ୍ରଥମେ ଭାବିଥିଲା ଯେ ଦୁଇଦିନର ଯାତ୍ରା ଓ ଅନିଦ୍ରାଜନିତ କ୍ଲାନ୍ତି ଯୋଗୁଁ ବୋଧ ହୁଏ ତାକୁ ଦୁର୍ଗନ୍ଧଟା ବେଶି ବେଶି ଜଣାପଡୁଛି। କେମିତି ଗୋଟାଏ ବିଚିତ୍ର ପ୍ରକାରର ଦୁର୍ଗନ୍ଧ। ମଣିଷର ପରିଶ୍ରା, ଝାଡ଼ା, ବାନ୍ତି ଓ କୁକୁର, ଘୋଡ଼ାର ମଳମୂତ୍ରର ଗନ୍ଧ ମିଶି ଗୋଟାଏ ତୀବ୍ର ବିଚିକାଟିଆ ଦୁର୍ଗନ୍ଧ।

ଷ୍ଟେସନରୁ ବାହାରକୁ ଆସିଲା ପରେ ସେ ଭାବିଥିଲା ବୋଧହୁଏ ଦୁଗର୍ନ୍ଧଟା କମିଯିବ। ଅବଶ୍ୟ ରିକ୍ସାରେ ବସି ରେଭେନ୍ସା କଲେଜ ଇଷ୍ଟ ହଷ୍ଟେଲ ଆଡ଼କୁ ଆସିଲାବେଳେ ଦୁର୍ଗନ୍ଧଟା ସ୍ୱାଭାବିକ ଭାବରେ ଟିକିଏ କମିଯାଇଥିଲା। କିନ୍ତୁ ପରିସ୍ରାର ଦୁର୍ଗନ୍ଧଟା ସେମିତି ସାରା ବାୟୁମଣ୍ଡଳକୁ ଆଚ୍ଛନ୍ନ କରି ରଖିଥାଏ।

ସୂର୍ଯ୍ୟକାନ୍ତର ଟାଉନଟି ଗୋଟାଏ ବଡ଼ ଗାଁ କହିଲେ ଚଳେ। ହେଲେ ଉପକୂଳ ଅଞ୍ଚଳର ଗାଁ ପରି ଲଗାଲଗି ଘର ନାହିଁ। ସବୁ ଛଡ଼ା ଛଡ଼ା ଘର। ଚାରିଆଡ଼ ଖୋଲା ମେଲା। ପରିଷ୍କାର ପରିଚ୍ଛନ୍ନ। ଲୋକବାକର ଭିଡ଼ ନାହିଁ। କୁନ୍ଦି କୁନ୍ଦି ଗଳି ରାସ୍ତାନାହିଁ। ରିକ୍ସା, ସାଇକେଲ, ଗାଡ଼ି ମଟରର ଶବ୍ଦ, ବ୍ୟସ୍ତତା ନାହିଁ। ନାଳ ନାହିଁ ନର୍ଦ୍ଦମା ନାହିଁ। ଅଣଓସାରିଆ, ନାଲି ମୋରମ ବିଛା ରାସ୍ତା। ରାସ୍ତା କଡ଼ରେ ଦୁଇ ଧାରରେ ବଡ଼ ବଡ଼ ବର, ଅଶ୍ୱତ୍ଥ, ନିଦ୍ରାବତୀ, ଆମ୍ବ ଗଛ ଧାଡ଼ିକି ଧାଡ଼ି। ମଝିରେ ମଝିରେ ବିସ୍ତୀର୍ଣ୍ଣ ଖୋଲା ପଡ଼ିଆ। ବିରାଟ ପଡ଼ିଆ ମଝିରେ ଗୋଟାଏ ଛୋଟ ସ୍କୁଲ। ଦୁଇ ଧାଡ଼ିଘର। ଗୋଟାଏ ଟିଣ ଛପର—ଅନ୍ୟଟି ଚାଳ ଛପର। ସ୍ୱଚ୍ଛ, ନିର୍ମଳ ପବନ—ଅନନ୍ତ, ଉଦାର ଆକାଶ।

ସାତ ଦିନ ଭିତରେ ସୂର୍ଯ୍ୟକାନ୍ତ ଅଣ ନିଃଶ୍ୱାସୀ ହୋଇ ଉଠିଲା। ସେ ଭାବିଲା ଯଦି ସେ ଏଇଠି ରହେ ଦୁର୍ଗନ୍ଧ ଯୋଗୁଁ ତାର ବୋଧହୁଏ ଶ୍ୱାସରୁଦ୍ଧ ହୋଇ ମୃତ୍ୟୁ ହୋଇଯିବ। ପାଠପଢ଼ା ଛାଡ଼ି ସେ ଘରକୁ ଫେରି ଯିବାକୁ ମନସ୍ଥ କରି ନେଇଥିଲା।

ଝାଡ଼ା, ପରିସ୍ରା, ନାଳ ନର୍ଦ୍ଦମାର ପୂତିଗନ୍ଧମୟ ସହର। ଏଇ ତାହେଲେ ତାର ସ୍ୱପ୍ନର ସହର କଟକର ସ୍ୱରୂପ। ତାର ସ୍ୱପ୍ନ ଭାଙ୍ଗି ଚିକ୍ ଚିକ୍ ହୋଇ ଯାଇଥିଲା ଦିନ ସାତଟାରେ।

ହଷ୍ଟେଲ ଭିତରୁ ପଦାକୁ ବାହାରିଲେହିଁ ପରିସ୍ରାର ଗନ୍ଧରେ ତାର ନାକ ଫାଟିଯାଏ।

ସେ ଛାଟିପିଟି ହୋଇ ପଳେଇଯାଏ ଜୋବ୍ରା। ସେଠିବି ସେମିତି ବିଷ୍ଠାର ଗନ୍ଧ। ପାଞ୍ଚ ମିନିଟ୍ ପରେ ସେଇଠୁ ସାଇକେଲ ମାରି ପଳେଇ ଯାଏ। କିନ୍ତୁ ଇଞ୍ଜିନିଅରିଙ୍ଗ ସ୍କୁଲରେ ସେଇ ଗନ୍ଧ। ପୁଣି ମେଡ଼ିକାଲରେ ସେଇ ଗନ୍ଧ, ଝାଡ଼ାବାନ୍ତି, ରକ୍ତ, ପୂଜ, ପରିସ୍ରାର ଆହୁରି ତୀବ୍ରତର ହୋଇଉଠେ। ସେ ପାଗଳ ପରି ଫେରି ଆସେ। ରାଣୀହାଟ ଛକ, ହିନ୍ଦ ସିନେମା, ପ୍ରଫେସରପଡ଼ା ତାଳଦଣ୍ଡା କେନାଲ କୂଳ ଛତ୍ର ବଜାର, ହରିପୁର ରୋଡ଼, ପ୍ରଭାତ ସିନେମା, କେପିଟାଲ ସିନେମା, କାଠଯୋଡ଼ି, ଖାନନଗର, କୋଉଠି ଆଉ ରକ୍ଷା ନାହିଁ। ଝାଡ଼ା, ପରିସ୍ରା, ନର୍ଦ୍ଦମାର ଗନ୍ଧ ଯେମିତି ସାରା ସହରକୁ ଚାପି ରଖିଛି ତାର ବିଷାକ୍ତ ବନ୍ଧନରେ।

ତାର ମନେ ହୁଏ ସାରା କଟକ ସହରବାସୀଙ୍କର ଯେମିତି ଗୋଟାଏ ମୁଖ୍ୟ ଉଦ୍ଦେଶ୍ୟ କେବଳ ଝାଡ଼ା ଫେରିବା ଓ ପରିସ୍ରା କରିବା। ତାଙ୍କର ଖାଇବା, ପିଇବା, କାମ କରିବା, ବ୍ୟବସାୟ କରିବା, ପାଠ ପଢ଼ିବା ପ୍ରଭୃତିର ମୂଳ ଉଦ୍ଦେଶ୍ୟ ଯେମିତି ଏଇ ଦୁଇଟି କାମର ଲକ୍ଷ୍ୟରେ।

ପ୍ରଫେସର ପଡ଼ାର ନାଳକୂଳରେ ଧାଡ଼ି ହୋଇ ଅଧନଙ୍ଗୁଳି ହୋଇ ବସିଥିବା ପିଲା ମରଦ ମାଇପଙ୍କ ଝାଡ଼ା ଫେରିବାର ଦୃଶ୍ୟ ପୃଥିବୀର ସବୁଠାରୁ କଦର୍ଯ୍ୟତମ ଚିତ୍ର ଓ ନର୍କ ବୋଧହୁଏ ଏଇ ପ୍ରକାରର ହୋଇଥିବ।

ସ୍କୁଲ, କଲେଜ, ହସପିଟାଲ, ଥାନା, ମ୍ୟୁନିସିପାଲିଟି, କଚିରୀ, ଅଫିସ ଦପ୍ତର; ବଜାର, ରାସ୍ତା ଘାଟ, ନଈକୂଳ, ପାର୍କ ଷ୍ଟେସନ ସିନେମାଘର ସବୁଠି ଏଇ ଖାଲି ପରିସ୍ରାର ଉତ୍କଟ ଗନ୍ଧ। ସମସ୍ତେ ଯେମିତି ଏଇ ସହରଟାକୁ ପରିସ୍ରାରେ ଭସେଇ ଦେବାକୁ ଚାହାଁନ୍ତି। ଗାଁ ଗହଳିରୁ ଯେଉଁ ଲୋକମାନେ ବଜାର ହାଟ କଚିରୀ କରିବାକୁ ଆସନ୍ତି ସେମାନେ ବି ଯେମିତି ଏଇ ସ୍ରୋତରେ ସାମିଲ ହୋଇ ଯାଆନ୍ତି। ସେମାନେ ବି ଭାବନ୍ତି ବୋଧହୁଏ କଟକହିଁ ପରିସ୍ରାକରିବା, ଝାଡ଼ା ଯିବାର ଏକମାତ୍ର ଜାଗା। ସବୁ ନିର୍ବିବାଦରେ ଛିଡ଼ାହୋଇ, ବସି ପରିସ୍ରା କରନ୍ତି। ରାସ୍ତାରେ, ଘାଟରେ, ପାଚିରୀକଡ଼ରେ ପଡ଼ିଆରେ, ଗଳିରେ, ପାର୍କରେ, ବଗିଚାରେ, ନଈକୂଳରେ, କଚିରୀ ବାରଣ୍ଡାରେ। ଗଳିର ଛୋଟ ନର୍ଦ୍ଦମାକଡ଼ରେ ମା ମାନେ ବସେଇ ଦିଅନ୍ତି ଛୁଆମାନଙ୍କୁ ନିର୍ବିବାଦରେ ମଳତ୍ୟାଗ କରିବାକୁ। ଯୋଉଠି ପରିସ୍ରା କରିବାକୁ ନିଷେଧ କରି ବିଜ୍ଞାପନମାନ ମରା ଯାଇଥାଏ ସେଇଠି ହିଁ ବେଶୀ ପରିସ୍ରା କରନ୍ତି ଲୋକେ। ଜଣକ ପରେ ଜଣେ। ସ୍ରୋତ୍ ବହିଆସେ ରାସ୍ତା ଉପରକୁ। ସାମାନ୍ୟତମ ଲଜ୍ଜାନାହିଁ, ସାମାନ୍ୟତମ

ଘୃଣା ନାହିଁ—ଅଦ୍ଭୁତ ଭାବରେ ନିର୍ଲିପ୍ତ, ନିର୍ବିକାର ଏଇ ସହରବାସୀ। ପଳେଇ ଯିବାକୁ ମନସ୍ଥ କରିଥିବା ସୂର୍ଯ୍ୟକାନ୍ତ କିନ୍ତୁ ପଳେଇଯାଇ ପାରିଲା ନାହିଁ।

ରେଭେନ୍‌ସା କଲେଜରେ ପଢ଼ିବା ସେଇ ପିଲାଦିନର ଏକ ସ୍ୱପ୍ନ। ଏଇ ବିଚିକିଚିଆ ଦୁର୍ଗନ୍ଧ ଯୋଗୁଁ ସେ କଣ ସେଇ ସ୍ୱପ୍ନକୁ ସାର୍ଥକ ହେବାକୁ ଦେବ ନାହିଁ। ଗୋଟାଏ ସ୍ୱପ୍ନ ତ ଚୁରମାର୍ ହୋଇ ଯାଇଛି। ସେ ଆଖିବୁଜି ପ୍ରାଣପଣେ ଚେଷ୍ଟା କରି ରହିବାକୁ ଚେଷ୍ଟା କଲା। ହଷ୍ଟେଲ୍‌ରୁ ବେଶୀ ବାହାରେ ନାହିଁ। ସନ୍ଧ୍ୟାବେଳେ କଲେଜ ପଡ଼ିଆ ଭିତରେ ବୁଲେ। ସିନେମା ଯିବା ବନ୍ଦ କରିଦେଲା। ଅନ୍ୟ ସବୁ ବାହାରୁ ଆସିଥିବା ଛାତ୍ରଙ୍କ ପରି ପଢ଼ାପଢ଼ିରେ ହିଁ ମନୋନିବେଶ କଲା ଅନ୍ୟ କିଛି ଚିନ୍ତା ନ କରି।

ମାତ୍ର ଛଅଟାମାସ ଭିତରେ ତାର ମଧ୍ୟ ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ ହୋଇଗଲା। ସବୁ ସହ୍ୟ ହୋଇଗଲା ଧୀରେ ଧୀରେ। ପରିସ୍ରାର ଗନ୍ଧ ତାକୁ ଆଉ ଅଣନିଶ୍ୱାସୀ କରେ ନାହିଁ। ରାସ୍ତାକଡ଼ରେ ଝାଡ଼ାଫେରି ବସିଥିବା ମହିଳାଙ୍କୁ ଦେଖିଲେ ତାକୁ ଆଉ ଲଜ୍ଜା ଲାଗେ ନାହିଁ କି ବିକାର ଆସେ ନାହିଁ। ସେ ମଧ୍ୟ ଅନ୍ୟାନ୍ୟମାନଙ୍କ ପରି ଯୋଉଠି ପାରେ ସେଇଠି ଯେତେବେଳେ ଇଚ୍ଛା ପରିସ୍ରା କରିବାରେ କୁଣ୍ଠା ଅନୁଭବ କଲାନାହିଁ। ସବୁକିଛି ସହ୍ୟ ହୋଇଗଲା, ସବୁକିଛି ଆରେଇ ଗଲା। ଗଡ଼ଜାତର ଅମଣିଆ ବଣୁଆ ଟୋକାଟିଏ ଧୀରେ ଧୀରେ ମଣ ହୋଇଗଲା ଏକ ବିଷାକ୍ତ ବାୟୁ ମଣ୍ଡଳରେ।

କଟକ ସହର। ହଜାର ବର୍ଷର ସହର। ଗଙ୍ଗବଂଶର ସହର। ନବତଳ ପ୍ରସାଦର ସହର। ମୁକୁନ୍ଦଦେବର ସହର। ମଧୁବାବୁ, ଗୋପବନ୍ଧୁ, ରାଧାନାଥ, ଗୌରୀଶଙ୍କରର ସହର। ରେଭେନ୍‌ସା କଲେଜର ସହର। ହାଇକୋର୍ଟର ସହର। ସମ୍ବାଦ ପତ୍ରର ସହର। ବୁଦ୍ଧିଜୀବୀର ସହର। ଲେଖକ କବି ଶିଳ୍ପୀର ସହର। ସଂସ୍କୃତିର ରାଜଧାନୀ।

ଏହିପରି ଏକ ସହରର ଉତ୍କଟ, ବିଚିକିଚିଆ, ବିସ୍ୱାଦକର, ଅଣନିଶ୍ୱାସୀ, ପଚମାନ ବାୟୁମଣ୍ଡଳରେ ଯଦି ଏହିପରି ଜନନାୟକ ବୁଦ୍ଧିଜୀବୀ, ଲେଖକ କବି ଶିଳ୍ପୀ, ବ୍ୟବସାୟୀ, ଶିକ୍ଷିତ ବ୍ୟକ୍ତିମାନେ ସ୍ୱଚ୍ଛନ୍ଦରେ ନିଶ୍ୱାସ ପ୍ରଶ୍ୱାସ ଗ୍ରହଣକରି ଆନନ୍ଦରେ କାଳାତିପାତ କରୁଛନ୍ତି, ସୂର୍ଯ୍ୟକାନ୍ତ ଏମିତି ଗୋଟାଏ କଣ କି? ଗୋଟାଏ ଅନାମଧେୟ ଛୋଟ, ଅନ୍ଧକାରାଚ୍ଛନ୍ନ, ଆଦିବାସୀ ଅଞ୍ଚଳର ଗୋଟାଏ କ୍ଷୁଦ୍ରାତିକ୍ଷୁଦ୍ର ମଣିଷଟିଏ ମାତ୍ର। ସେ କଣ ଏସବୁକୁ ସହ୍ୟ କରିଯାଇ ପାରିବ ନାହିଁ?

ସବୁ ବି ସହି ହୋଇଯାଇଥିଲା। ଛଅବର୍ଷର ରହଣି ଭିତରେ ସୂର୍ଯ୍ୟକାନ୍ତ ଏଇ ସହରଟିକୁ ତାର ଯାବତୀୟ ଦୁର୍ଗନ୍ଧ ଓ ଆବର୍ଜନା ସତ୍ତ୍ୱେ ବି ଭଲପାଇ ବସିଥିଲା ନିବିଡ଼ ଭାବରେ। ମଣିଷ ଯେ ସବୁ ସହ୍ୟ କରିପାରେ ଏବଂ ତା ସତ୍ତ୍ୱେ ବି ଭଲପାଇ ପାରେ ସୂର୍ଯ୍ୟକାନ୍ତ ତାର ପ୍ରକୃଷ୍ଟ ଉଦାହରଣ।

ଏହାପରେ ସୂର୍ଯ୍ୟକାନ୍ତର ଜୀବନଧାରା ପଲଟି ଯାଇଥିଲା । ସେ ସରକାରୀ ଚାକିରୀରେ ଯୋଗଦେଇ ବୁଲିଲା ସାରା ଓଡ଼ିଶା । ବାରିପଦାଠାରୁ ବରଗଡ଼, ସମ୍ବଲପୁରଠାରୁ, ଭବାନୀପାଟଣା, ପୁଣି ବଲାଙ୍ଗୀର, ସୋନ୍‌ପୁର ବାଟ ଦେଇ ଏଇ ବର୍ଷକ ତଳେ ଫେରି ଆସିଛି ଭୁବନେଶ୍ୱର ।

ଚାକିରୀ ମାତ୍ର ଆଉ ପାଞ୍ଚୋଟି ବର୍ଷ ରହିଲା । ଏ ଭିତରେ କୌଣସି ନା କୌଣସିଠାରେ ସେଟ୍‌ଲ କରିବାକୁ ପଡ଼ିବ ।

ଭୁବନେଶ୍ୱରକୁ ଦେଖି ପ୍ରଥମ ଦେଖାରେ ହିଁ ଭଲପାଇ ଯାଇଥିଲା ସୂର୍ଯ୍ୟକାନ୍ତ । ତାର ପିଲାଦିନର ଟାଉନ୍ ପରି ଲାଗିଲା ତାକୁ । ଚାରିଆଡ଼ ପରିଷ୍କାର ପରିଚ୍ଛନ୍ନ । ନର୍ଦ୍ଦମା ନାହିଁ, ନାଳ ନାହିଁ । ଯେତେ ଜୋର ବର୍ଷା ହେଉ, ଘଣ୍ଟାଏ ପରେ ସବୁ ସାଫ୍ । ପାଣି ପଚ ପଚ ନାହିଁ—କାଦୁଅ ଚିକିଟା ନାହିଁ । ରାସ୍ତା ମଝିରେ ପାଣି ଜମେ ନାହିଁ । ଚାରିଆଡ଼େ ମୁକ୍ତ ବାୟୁ । ସେ ସାଙ୍ଗେ ସାଙ୍ଗେ ନିଷ୍ପତ୍ତି ନେଇଥିଲା, ଭୁବନେଶ୍ୱରରେ ହିଁ ସେ ସେଟ୍‌ଲ୍ କରିବ । ଆଉ କୁଆଡ଼େ ଯିବାର ନାହିଁ । ଏକେ ତ ଏକ ଶାନ୍ତ, ସୁନ୍ଦର ସହର । ତାପରେ ପୁଣି ରାଜ୍ୟର ରାଜଧାନୀ । ଅଥଚ ଅନ୍ୟାନ୍ୟ ପ୍ରଦେଶର ରାଜଧାନୀ ପରି ଭିଡ଼ ନାହିଁ । ପ୍ରଦୂଷଣ ନାହିଁ, ବ୍ୟସ୍ତତର ନାହିଁ । ସବୁ ଶାନ୍ତ, ଧୀର ଅଥଚ କର୍ମଚଞ୍ଚଳ ।

ସୂର୍ଯ୍ୟକାନ୍ତ ଥରେ ନିଷ୍ପତ୍ତି ଗ୍ରହଣ କରି ନେଲାପରେ ସେ ଦିଗରେ ତତ୍‌କ୍ଷଣାତ୍ କାର୍ଯ୍ୟ ଆରମ୍ଭ କରିଦେଲେ । ସେକ୍ରେଟାରିଆଟରେ ଡ଼େପୁଟି ସେକ୍ରେଟାରୀ । ତେଣୁ ସୁବିଧା ଅଛି । ପ୍ରଥମେ ସରକାରୀ ଜାଗାଖଣ୍ଡେ ପାଇଁ ସେ ଚେଷ୍ଟା କଲେ । କିନ୍ତୁ ମାସକର ଚେଷ୍ଟା ପରେ ସେ ବୁଝିପାରିଲେ ଯେ ଏଇଠି ସେ ଯେତେ ସହଜରେ ସବୁ କାମ ହୋଇଯିବ ବୋଲି ଭାବୁଥିଲେ ତାହା ହେବାର ନୁହେଁ । ଛୋଟ ଜିଲା ସଦର ମହକୁମା ବା ସବ୍‌ଡ଼ିଭିଜନ୍ ମହକୁମାରେ ଯାହା ତାଙ୍କପରି ଜଣେ ପଦସ୍ଥ ସରକାରୀ କର୍ମଚାରୀ ପକ୍ଷରେ ଥିଲା ଅତି ସହଜ ଏଇଠି ତାହା ଅତି କଷ୍ଟକର କଥା । ସେ ତ ଅଧିକାଂଶ ଜୀବନ ବାହାରେ ବାହାରେ କଟା ଆସିଛନ୍ତି, ରାଜଧାନୀ ପୁଣି ଖୋଦ୍ ସେକ୍ରେଟାରିଆଟ୍‌ର କଥା ତାକୁ କଣ ଜଣା । ଛଅମାସ ପର୍ଯ୍ୟନ୍ତ ସେ ବୁଲିଗଲେ ଏପଟ ସେପଟ କିନ୍ତୁ କିଛି ହେଲା ନାହିଁ । ତାଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ତାଙ୍କର ଦରଖାସ୍ତଟି ଚିଫ୍ ସେକ୍ରେଟାରୀଙ୍କ ଦପ୍ତର ପର୍ଯ୍ୟନ୍ତ ଯାଇ ସେଇଠି ସ୍ଥାଣୁ ହୋଇ ରହିଗଲା । ଏମିତି ମିଳିବ ନାହିଁ । ଜନସାଧାରଣଙ୍କଠାରୁ ଦରଖାସ୍ତ ଆହ୍ୱାନ କରାଯିବ ପନ୍ଦରଟଙ୍କା ଫର୍ମରେ ବିଧିବଦ୍ଧ ଭାବରେ ଦରଖାସ୍ତ କରିବାକୁ ପଡ଼ିବ । କମିଟି ବସିବ । ତାପରେ ପୁଣି ଲଟାରି ଉଠାଣ ହେବ । ସେଥିରେ ଯଦି ଭାଗ୍ୟରେ ଥିବ ଉଠିବ ନ ହେଲେ ସେତେବେଳେ ଚେଷ୍ଟା ଚରିତ୍ର କରି ହେରଫେର କରି ଭାଗ୍ୟ ବଦଳେଇବାକୁ ପଡ଼ିବ ।

ଭୁବନେଶ୍ୱରରେ ବର୍ଷକ ରହଣି ଭିତରେ ସୂର୍ଯ୍ୟକାନ୍ତଙ୍କ ପ୍ରଥମ ଆରମ୍ଭର 'ଇଉଫୋରିଆ' କଟିଗଲା। ସେ ଧୀରେ ଧୀରେ ରାଜଧାନୀର ବାସ୍ତବତାକୁ ଅନୁଭବ କରିବାକୁ ଲାଗିଲେ। ଏବଂ ଠିକ୍ ସେତିକିବେଳେ ତାଙ୍କୁ ସେଇ ଚାଳିଶ ବର୍ଷ ତଳେ କଟକ ଷ୍ଟେସନରେ ପ୍ରଥମଥର ପାଇଁ ଯୋଉ ବିଚିକିଚିଆ ଗନ୍ଧ ସେ ଅନୁଭବ କରିଥିଲେ ସେ ଦୁର୍ଗନ୍ଧର ଝଲକ ସେ ଆଉଥରେ ଅନୁଭବ କଲେ ଆକସ୍ମିକ ଭାବରେ।

ଦୁର୍ଗନ୍ଧର ପ୍ରଥମ ଧକ୍କାରେ ସେ ହତ୍‌ବାକ୍ ହୋଇ ସ୍ତବ୍ଧ ହୋଇ ବସି ରହିଲେ କିଛି ସମୟ। ଏଇଟା ଠିକ୍ ପରିସ୍ରାର ଗନ୍ଧ ନୁହେଁ। ମଡ଼ା ପଚିଯିବାର ଉତ୍କଟ ଦୁର୍ଗନ୍ଧ। ବହୁଦିନ ତଳେ ସେ ଯେତେବେଳେ ବାଲେଶ୍ୱର ସହରର ଏସ୍.ଡ଼ି.ଓ ଥିଲେ, ସେତିକି ବେଳର ଘଟଣା। ଜଣେ ଲୋକ ତା ସ୍ତ୍ରୀର ତଣ୍ଟିଚିପି ତା ଘରବାଡ଼ି ଭିତରେ ପୋତି ପକାଇଥିଲା। ଦୁଇଦିନପରେ ସେଇ ଶବକୁ ଗଳିତ ଅବସ୍ଥାରେ ପୋଲିସ ଖୋଳି ବାହାର କରିଥିଲା। ମଣିଷର ଶବ ପଚିଗଲେ ଏତେ ଦୁର୍ଗନ୍ଧ ହୋଇପାରେ ତାଙ୍କର କଳ୍ପନାରେ ନଥିଲା। ସେଇ ଦୁର୍ଗନ୍ଧର ତୀବ୍ରତାରେ ସେ ତିନିଦିନ ପର୍ଯ୍ୟନ୍ତ ଭାତ ଖାଇ ପାରି ନଥିଲେ ଏବଂ ବର୍ଷେ ପର୍ଯ୍ୟନ୍ତ ମାଛମାଂସ ଛାଡ଼ି ଦେଇଥିଲେ। ଦୁର୍ଗନ୍ଧଟା ଯେମିତି ତାଙ୍କ ନାକ ଭିତରେ ଲାଖି କରି ରହିଯାଇଥିଲା!

ହଠାତ୍ ସେଇ ପ୍ରକାର ଏ ଦୁର୍ଗନ୍ଧ ପବନରେ ପୁଣି ଥରେ ଉଡ଼୍ କରି ଭାସିଗଲା ତାଙ୍କ ନାକ ପୁଡ଼ା ଭିତର ଦେଇ। ଏମିତି ଦୁର୍ଗନ୍ଧ ଆସିଲା କେଉଁଠୁ? କୋଉଠି ମୂଷା ଫୂଷା ମରି ପଡ଼ି ନାହାନ୍ତି ତ? ସେ ଘର ଦ୍ୱାର ଭଲ କରି ସଫାସଫି କରେଇଲେ। ଦାଣ୍ଡପାଖ, ବାଡ଼ିପାଖ ସବୁ ଭଲ କରି ପରିଷ୍କାର କରେଇଲେ। ନା, କୌଣସିଠି କିଛି ନାହିଁ। ତାଙ୍କ କ୍ୱାଟର ସାମ୍ନାରେ ଧାଡ଼ିଏ ସର୍କାରୀ କ୍ୱାଟର ପୁଣି ପଛ ପଟକୁ ଆଉ ଧାଡ଼ିଏ। ସକାଳୁ ଦିନେ ଚାଲଚାଲ ହୋଇ କଲୋନୀ ସାରା ଘୂରି ଆସିଲେ। କୁକୁରଟିଏ ମରି ପଡ଼ିନି ତ। ଆଜି କାଲି ତ ଦୈନିକ ପଚାଶଟା କୁକୁର ଗାଡ଼ି ଧକ୍କାରେ ମରି ରାସ୍ତା ଉପରେ ପଡ଼ି ପଚୁଛନ୍ତି ଦିନ ଦିନ ଧରି। ସେ ପ୍ରତି ନା ପୋଲିସ, ମ୍ୟୁନିସିପାଲିଟି ନା ବାସିନ୍ଦା କାହାରି ହେଲେ ନଜର ଅଛି?

ଯଦି ସେମିତି କିଛି ଘଟିଥାଏ। ଦି ତିନିଥର ବୁଲି ଆସିଲାପରେ ବି ସେ କୌଣସି ସନ୍ଧାନ ପାଇଲେ ନାହିଁ। ତା ଛଡ଼ା ଗନ୍ଧଟା ଅଚାନକ ଆସି ଅଚାନକ ପୁଣି ଥରେ ଚାଲିଯାଉଥାଏ। ସେମିତି ମରି ପଡ଼ି ଥିଲେ ତ ସବୁବେଳେ ଗନ୍ଧଉଥାନ୍ତା।

ନା, ଏଇଟା ବୋଧହୁଏ ତାଙ୍କର ମନର ଭ୍ରମ। କିନ୍ତୁ ସେଇ ଦିନଠୁ ଗନ୍ଧଟା ଯେମିତି ତାଙ୍କ ପାଖ ଛାଡ଼ିଲା ନାହିଁ। ଥିବ ଥିବ, ହଠାତ୍ କରି ସେଇ ବିଚିକିଚିଆ ଗନ୍ଧଟା ତାଙ୍କୁ ଚହଲେଇ ଦେଇ ତାଙ୍କୁ ଅଣନିଃଶ୍ୱାସୀ କରିଦେଇ ଯିବ କ୍ଷଣିକ ପାଇଁ।

ମଝିରେ ମଝିରେ ଥରେ ବାନ୍ତି ବି ହୋଇ ଯାଏ।

ସେ ଘରେ ପଚାରନ୍ତି । ସ୍ତ୍ରୀ କହନ୍ତି—କାହିଁ ଦୁର୍ଗନ୍ଧ ? କିଛି ନାହିଁ ତ । ତମକୁ ଖାଲି ଗନ୍ଧେଇ ଯାଉଛି ।

ପୁଅ, ଝିଅ, ଚାକର ବାକର ସମସ୍ତଙ୍କୁ ପଚାରନ୍ତି । ନା, କାହାକୁ ଦୁର୍ଗନ୍ଧ ଜଣାଯାଉ ନାହିଁ ।

ପାଖ ପଡ଼ିଶାଙ୍କ ମଧ୍ୟ ସେଇ ଏକା ଉତ୍ତର । ତେବେ ଗନ୍ଧଟା ଆସୁଛି କୋଉଠୁ । ଆଉ କେବଳ ତାଙ୍କୁ ବି ଏକୁଟିଆ ଏମିତି ଗନ୍ଧଉଛି କେମିତି ?

ସେ କିଛି ବୁଝି ପାରନ୍ତି ନାହିଁ । ମନେ ମନେ ଭାବନ୍ତି, ବୟସ ହେଲା ତ ଏବେ ବୋଧହୁଏ ସବୁ ଇନ୍ଦ୍ରିୟ ଶିଥୀଳ ହୋଇ ଆସିଲେଣି । ତଥାପି ମନ ବୁଝେଇବାକୁ ଥରେ ଡାକ୍ତରଙ୍କ ପାଖକୁ ଗଲେ ।

ଡାକ୍ତର ସବୁକିଛି ପରୀକ୍ଷା କରି କହିଲେ—ଆପଣଙ୍କର ତ କିଛି ହୋଇନାହିଁ । ସବୁ ଠିକ୍ । ମୁଁ ଭାବିଥିଲି ବୋଧହୁଏ ପୁରୁଣା ଓଇନୋସାଇଟିସ୍ ଥିବ । କିନ୍ତୁ ତା ବି ନାହିଁ । ଏଇଟା ସାମୟିକ ଭ୍ରମ । ସେ ବାଲେଶ୍ୱର ଘଟଣାଟା ବୋଧହୁଏ ଆପଣଙ୍କ ଅବଚେତନ ମନରେ ରହିଯାଇଛି । ସେଇଟା ଦୁର୍ବଳ ମୁହୂର୍ତ୍ତରେ ଥରେ ଥରେ ବାହାରି ଆସୁଛି । ଏଇଟା କିଛି ଅସ୍ୱାଭାବିକ ନୁହେଁ । ଆପଣ ନିଶ୍ଚିନ୍ତ ରୁହନ୍ତୁ ।

ସୂର୍ଯ୍ୟକାନ୍ତ ନିଶ୍ଚିନ୍ତ ହେଲେ । ଯା ହେଉ, ଦେହଫେହ ଖରାପ ହୋଇନାହିଁ । ନ ହେଲେ ଅଯଥା ଝଞ୍ଜଟ ।

ତାପରେ କିଛି ଦିନପାଇଁ ଭୁଲି ହୋଇଗଲା । ହଠାତ୍ ଦିମାସ ତଳେ ତାଙ୍କ ସେକ୍ରେଟାରୀଆଟ୍ କୋଠରୀ ଭିତରେ ପୁଣି ସେଇ ଦୁର୍ଗନ୍ଧ ଚହଟି ଗଲା । ସେ ପିଅନକୁ ଡାକି ପୁରୁଣା ଆଲମାରୀ, ଫାଇଲଗଦା ସଫା କରେଇଲେ । ନା କିଛି ନାହିଁ, କେବଳ ଧୂଳି ଓ କେତେଟା ଅସରପା ଛଡ଼ା । ସେ କିଛି ବୁଝିପାରିଲେ ନାହିଁ ଗନ୍ଧଟା ଆସିଲା କେଉଁଠୁ ?

ତା ପରଠୁ ଧୀରେ ଧୀରେ ଯେମିତି ସେଇଟା ବଢ଼ିବାକୁ ଆରମ୍ଭ କଲା । ସେକ୍ରେଟାରୀଆଟ୍‌ର ଯୋଉ କୋଠରୀକୁ ଗଲେ ସେଇ ଦୁର୍ଗନ୍ଧ ସେ ଶୁଙ୍ଘିଲେ । ବିଶେଷତଃ ମନ୍ତ୍ରୀଙ୍କ ଦପ୍ତରମାନଙ୍କରେ । ହେଇତ ସେଦିନ କଥା । ଗୋଟାଏ ଫାଇଲ୍ ନେଇ ଯାଇଥିଲେ ମନ୍ତ୍ରୀଙ୍କ ପାଖକୁ । ଏମିତି ଦୁର୍ଗନ୍ଧ ହେଲା ଯେ ସେ ସିଧା ଫାଇଲ ଛାଡ଼ି ଆସି ବାଥ୍ ରୁମରେ । ପ୍ରାୟ ପାଞ୍ଚ ମିନିଟ୍ କାଳ ବାନ୍ତି କରି, ମୁହଁ ଧୋଇ ସାରିଲା ପରେ ଶାନ୍ତି ପାଇଲେ ।

ତାଙ୍କୁ କାହିଁକି ଏମିତି ଗନ୍ଧଉଛି ? ସେକ୍ରେଟେରିଆଟ୍‌ରେ ହଜାର ହଜାର କର୍ମଚାରୀ । ଦୈନିକ କେତେ ହଜାର ଲୋକ ଆସୁଚନ୍ତି, ଯାଉଛନ୍ତି ଅଥଚ କାହାକୁ କିଛି ଗନ୍ଧଉ ନାହିଁ—ତାଙ୍କୁ ଏକୁଟିଆ କାହିଁକି ?

ତାଙ୍କୁ କଣ କିଛି ରୋଗ ହେଲାଣି ? ଡାକ୍ତରମାନେ ତ କିଛି ଧରିପାରୁ ନାହାନ୍ତି । କାହାକୁ କହିବେ ? ଯିଏ ଶୁଣିବ ଥଟ୍ଟା କରିବ । ସୂର୍ଯ୍ୟକାନ୍ତ ଆଉ କାହାକୁ

ଲାଜରେ କିଛି କହି ପାରିଲେ ନାହିଁ। ବୋଧହୁଏ ସେକ୍ରେଟାରିଆଟ୍‌ର ବାୟୁମଣ୍ଡଳ ତାଙ୍କୁ ସୁଟ୍ କରୁନାହିଁ।

କିନ୍ତୁ ସବୁଠି ସେଇ ଏକା କଥା। ସେଦିନ ଯାଇଥିଲେ ବିଜେବି କଲେଜ୍ ପୁଅର ଆଡ୍‌ମିଶନ୍ ପାଇଁ। ସେଠି ବି ସେମିତି ଦୁର୍ଗନ୍ଧ। ବିଡ଼ିଏ ଅଫିସ, ହାଉସିଂ ବୋର୍ଡ଼ ଅଫିସ୍, ଯେତେକ କର୍ପୋରେସନ୍ ଅଫିସ, ହେଡ୍ ଅଫ ଦି ଡ଼ିର୍ପାମେଣ୍ଟ ବିଲିଡ଼ିଂ, ଥାନା, କଚିରୀ ସରକାରୀ ଦପ୍ତର ସବୁଠି ସେମିତି ମଡ଼ା ପଚିବାର ଦୁର୍ଗନ୍ଧ।

ସେ ଆଉ ସହ୍ୟ କରି ପାରିଲେନି। କାହାରିକୁ ନ କହିଲେ ସେ ପାଗଳ ହୋଇଯିବେ। ସେ ବହୁତ ଭାବିଚିନ୍ତି ଦିନେ ଏକାନ୍ତରେ ସବୁକଥା ସ୍ତ୍ରୀକୁ କହିଲେ।

ସ୍ତ୍ରୀ ସବୁ ଶୁଣିସାରି କହିଲେ 'ବୁଝିଲ, କିଏ ତମକୁ ଗୁଣି କରିଛି। ବାଲେଶ୍ୱରର ସେଇ ଖୁନୀ ଲୋକଟାକୁ ତମେ ଯାବଜ୍ଜୀବନ କାରାଦଣ୍ଡ ଦିଆଇଥିଲ ମନେ ନାହିଁ। ସେଇ ବୋଧହୁଏ ଜେଲ୍‌ରୁ ଖଲାସ ହୋଇ ଆସି ଏମିତି ଗୁଣି କରିଛି। ନହେଲେ ତମକୁ ଏମିତି ଦୁର୍ଗନ୍ଧ ଲାଗନ୍ତା କାହିଁକି ?

ସୂର୍ଯ୍ୟକାନ୍ତ ଭାବିଲେ ବୋଧହୁଏ ସତ କଥା। ନହେଲେ ଭୁବନେଶ୍ୱର ପରି ଏତେ ସୁନ୍ଦର ପରିଷ୍କାର ପରିଚ୍ଛନ୍ନ ସହର। ଗଳି କନ୍ଦି ନାହିଁ। କଟକ ପରି ପଚା ନର୍ଦ୍ଦମା ନାହିଁ। ପରିସ୍ରା ନାହିଁ ଝାଡ଼ା ନାହିଁ। ସର୍ଭିସ ଲେଟ୍ରିନ ନାହିଁ। ପୁଣି ଏଇଠି ଟାଙ୍ଗରା ଭୂଇଁରେ ମଡ଼ା ପଡ଼ିଲେ ଖରା ଦାଉରେ ଦିଦିନରେ ଶୁଖି ଖଡ଼ ଖଡ଼ ହୋଇଯିବ। ଏଇଠି ଏତେ ଗନ୍ଧ ବା ହେବ କେମିତି ? ତା ଛଡ଼ା ଏଇଠି ଲକ୍ଷେ ଦିଲକ୍ଷ ଲୋକ କାହାରିକୁ ତ ଗନ୍ଧଉନାହିଁ ତାଙ୍କୁ ବା ଏକୁଟିଆ କାହିଁକି।

ବହୁତ ଖୋଜାଖୋଜି ପରେ ଖବର ମିଳିଲା କାକଟପୁର ମଙ୍ଗଳାଙ୍କ ନିକଟରେ ଜଣେ ତାନ୍ତ୍ରିକ ବାବାଜୀ ଆସିଛନ୍ତି। ସେ କୁଆଡ଼େ ସାଙ୍ଗେ ସାଙ୍ଗେ ଯେତେ ଭୂତପ୍ରେତ ଗୁଣି ଗାରିଡ଼ିକୁ ଗୋଟିଏ ଫୁଙ୍କାରେ ଝାଡ଼ି ଉଡ଼େଇ ଦେଉଛନ୍ତି। ମଙ୍ଗଳବାର ଦିନ ଯିବାକୁ ପଡ଼ିବ। ସକାଳୁ ଗାଧୋଇ ପାଧୋଇ, ଓପାସ ରହି ସାତଟି ମନ୍ଦାର ଫୁଲ ଧରି ବାବାଙ୍କ ପାଖକୁ ଯିବାକୁ ପଡ଼ିବ। ମନେ ମନେ ଯେତେ ଟଙ୍କା ମାନସିକ କରିଥିବ ସେଇଟା ବାବାଙ୍କ ପାଖରେ ସେଇଠି ଥୋଇ ଦେବାକୁ ପଡ଼ିବ। କେତେ ଦେବାକୁ ପଡ଼ିବ ସେମିତି କିଛି ଠିକ୍ ନାହିଁ ମନ ଅନୁସାରେ ଯିଏ ଯେତେ ଦେଇପାରେ। ତାପରେ ତାନ୍ତ୍ରିକ କବଚ ଧାରଣ କରିବାକୁ ପଡ଼ିବ।

ସବୁ କଥା ବୁଝାବୁଝି କରି ଦିନେ ଭୋର ସକାଳୁ ସ୍ୱାମୀ ସ୍ତ୍ରୀ ଦିଜଣ ଗାଡ଼ି କରି ବାହାରିଗଲେ କାକଟପୁର।

ଭୁବନେଶ୍ୱରର ଠିକ ଉପକଣ୍ଠରେ ସେଇ ଦୁର୍ଗନ୍ଧଟା ଆପେ ଆପେ ଚାଲିଗଲା। ବହୁଦିନ ପରେ ସେ ପୁଣିଥରେ ସୁସ୍ଥ ଭାବରେ, ସ୍ୱଚ୍ଛ ବାୟୁ ଗ୍ରହଣ କରି ବଞ୍ଚିବାର ଏକ ନୂତନ ଆନନ୍ଦରେ ପୁଲକିତ ହୋଇ ଉଠିଲେ। ବୋଧହୁଏ ତାନ୍ତ୍ରିକ ବାବାଙ୍କର ଆର୍ଶୀବାଦ।

ଭୁବନେଶ୍ୱର ଛାଡ଼ିଲା ବେଳକୁ ସୂର୍ଯ୍ୟୋଦୟ ହୋଇ ନ ଥାଏ। ଚାରିଆଡ଼େ ଏକ ଶୁଭ୍ର ଆଲୋକର ବନ୍ୟାରେ ଆକାଶ ଉଦ୍‌ଭାସିତ ହୋଇ ଉଠିଥାଏ। ଚାରିଆଡ଼ ଶାନ୍ତ, ନିର୍ଜନ। ରାସ୍ତାରେ କାଁ ଭାଁ କେଉଁଠି ଗୋଟାଏ ଦୁଇଟା ଲୋକ। ରାସ୍ତାର ଦୁଇ ପାଖରେ ଦିଗନ୍ତ ବିସ୍ତୃତ ଶ୍ୟାମଳ କ୍ଷେତ ସକାଳର ସୁଲୁସୁଲିଆ ପବନରେ ସବୁଜ ରଙ୍ଗର ଲହଡ଼ି ଭାଙ୍ଗୁଛି। ପୂର୍ବ ଦିଗ୍‌ବଳୟର ଦିଗନ୍ତରେ ଗୋଲାପି ଆଲୋକର ଆଭା। ଅଳସ ଗାଁର ଆମ୍ବଗଛ, ଚାଳ ଉପରେ ବସି କାଉ ରାବୁଛି କା କା।

ସୂର୍ଯ୍ୟକାନ୍ତ ଏକ ଅଜଣା ପରିତୃପ୍ତିରେ ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ିଲେ। କାକଟପୁରରେ ମଙ୍ଗଳାଙ୍କ ମନ୍ଦିର ପାଖରେ ପହଞ୍ଚିଲା ବେଳେକୁ ବେଳ ପ୍ରାୟ ସାଢ଼େ ଆଠଟା। ସେତେବେଳେକୁ ମଧ୍ୟ ମନ୍ଦିରରେ ବେଶ୍ ଭିଡ଼ ଜମି ଆସିଥାଏ। ମନ୍ଦିର ଭିତରେ ପଶି ଯାହା ଶୁଣିଲେ ସେଥିରେ ସେ ଗଭୀର ହତାଶାରେ ଭାଙ୍ଗି ପଡ଼ିଲେ। 'ବାବା' ଗତ କାଲିଠାରୁ କୁଆଡ଼େ ଚାଲିଯାଇଛନ୍ତି। କେହି କହିପାରୁ ନାହାନ୍ତି କୁଆଡ଼େ ଗଲେ।

ଏତେ ବାଟ ଆସିବା ବୃଥା ହୋଇ ଗଲା। ତାଛଡ଼ା ସବୁଠୁ ବଡ଼ କଥା ହେଲା ସେ ଏବେ ପୁଣି କୋଉ ଗୁଣିଆ ଖୋଜିବାକୁ ଯିବେ?

ସ୍ତ୍ରୀ ସାନ୍ତ୍ୱନା ଦେଇ କହିଲେ "ଯାହା ହେବାର ହେଲା, ଏମିତି ଆଉ ଭାଙ୍ଗି ପଡ଼ିଲେ କଣ ହେବ? ଯାହା ହେଉ, ତାଙ୍କରି ଦୟାରୁ ଠାକୁରାଣୀଙ୍କ ଦର୍ଶନ ତ ହୋଇଯିବ। ମଙ୍ଗଳାଙ୍କ ପାଖକୁ ଆସିବି ଆସିବି ହୋଇ ବର୍ଷେ ହୋଇଗଲା ଆସି ପାରୁ ନଥିଲି। ଚାଲ, ତାଙ୍କୁ ଦର୍ଶନ କରି ପୂଜା ଦେଇଯିବା। ଠାକୁରାଣୀଙ୍କ କୃପାରୁ ଅବା ଭଲ ହୋଇଯାଇ ପାରେ? କିଏ କହିବ?" ଜୀବନରେ ପ୍ରଥମ ଥର ପାଇଁ ସେ ନିଜକୁ ଏକାନ୍ତ ଅସହାୟ ମନେ କଲେ। ଏକ ତୀବ୍ର ହତାଶାବୋଧ ତାଙ୍କୁ ଜର୍ଜରିତ କରି ଦେଇଗଲା। ତାଙ୍କର ମନେ ହେଲା ସେ ସତେ ଯେମିତି ଗୋଟିଏ ନିଃସ୍ୱ, ଦୀନ, ହୀନ, ଦୁର୍ବଳ, ଅସହାୟ ପଙ୍ଗୁ ବ୍ୟକ୍ତିଟିଏ। ତାଙ୍କର ସମସ୍ତ ଦମ୍ଭ, ସାହାସ, ନିଜ ଉପରେ ଅଖଣ୍ଡ ବିଶ୍ୱାସ, ନିଜର ପୌରୁଷତ୍ୱର ଅହଙ୍କାର ସବୁ ଗୋଟାଏ ମୁହୂର୍ତ୍ତରେ ଧୂଳିସାତ୍ ହୋଇଗଲା।

ପ୍ରଥମ ଥର ପାଇଁ ସେ ବ୍ୟାକୁଳ ହୋଇ ଆଣ୍ଠୁମାଡ଼ି ପ୍ରଣାମ କଲେ ଠାକୁରାଣୀଙ୍କ ସମ୍ମୁଖରେ। ଅନ୍ତର ଭିତରେ ମନେ ମନେ ସେ ପ୍ରାର୍ଥନା କଲେ "ମା, ମୋତେ ଏ ବିପଦରୁ ଉଦ୍ଧାର କର।"

ଶୁଦ୍ଧ ଭାବରେ, ଆର୍ତ୍ତ ଭାବରେ ଏଇ ବୋଧହୁଏ ପ୍ରଥମଥର ପାଇଁ ସେ ଆତ୍ମସମର୍ପଣ କଲେ ଜଣକ ପାଖରେ। ଆଉ ଠିକ ସେଇ ମୁହୂର୍ତ୍ତରେହିଁ ସେ ଅନୁଭବ

କଲେ ଦୁର୍ଗନ୍ଧଟା ତାଙ୍କ ଛାତି ଭିତରୁ ଆସୁଛି। ସେ ଅବାକ୍ ହୋଇ ନିଜ ଭିତରକୁ ନିରୀକ୍ଷଣ କରିବାକୁ ଲାଗିଲେ।

ହଁ, ଠିକ୍ ଛାତି ଭିତରେ। କଣଟା ଗୋଟାଏ ପଚି ଯାଉଛି। ତାଙ୍କର ଆତ୍ମା ନୁହେଁ ତ ? ହଠାତ୍ ଏକ ଆଲୋକର ପ୍ଲାବନରେ ସମସ୍ତ ପୃଥିବୀ ଯେମିତି ଆଲୋକିତ ହୋଇଗଲା ସେଇ ମୁହୂର୍ତ୍ତରେ। ସେଇ ଉଦ୍ଭାସିତ ଆଲୋକରେ ସେ ଦେଖିଲେ କଟକ, ଭୁବନେଶ୍ୱର, କଲିକତା, ବମ୍ବେ, ମାଡ୍ରାସ, ନିୟୁୟର୍କ ଓ ପୃଥିବୀର ଅନ୍ୟ ସହର ସହରର ବାସିନ୍ଦାମାନଙ୍କୁ ଅଦ୍ଭୁତ ବିସ୍ମୟରେ। ଆଫ୍ରିକାର କୋଉ ଏକ ଦ୍ୱୀପର ଗୁଣିଆମାନଙ୍କ ପରି, କେଉଁ ଏକ ପରାକ୍ରମଶାଳୀ, ଦୁର୍ଦ୍ଧାନ୍ତ ଲୋଭର ଗୁଣିଆ ପୃଥିବୀର ସମସ୍ତ ସହରବାସୀଙ୍କୁ 'ଜୋମ୍ବି'ରେ ରୂପାନ୍ତରିତ କରି ଦେଇଛି। ଦେଖିବାକୁ ମଣିଷ ପରି। ବ୍ୟବହାର ମଣିଷ ପରି। ଅଥଚ ତା ଭିତରେ ଆତ୍ମା ନାହିଁ। ସବୁ କେବଳ ପ୍ରେତାତ୍ମା ମାତ୍ର। ମଣିଷର ଆତ୍ମା ପଚିଯାଉଛି।

ସେହି ପଚମାନ ଆତ୍ମାର ଉତ୍କଟ, ବିଷାକ୍ତ, ଦୁର୍ଗନ୍ଧ ଧୀରେ ଧୀରେ ଛାଡ଼ିଯାଉଛି ସମସ୍ତ ପୃଥିବୀର ବାୟୁମଣ୍ଡଳ। ପ୍ରତ୍ୟେକ ସହରଭିତରୁ ସେଇ ଭୟାନକ, ଘନକୃଷ୍ଣ, ଧୂମ୍ର କୁଣ୍ଡଳୀ ଧୀରେ ଧୀରେ ସଞ୍ଚରି ଯାଉଛି ଗ୍ରାମଜନପଦ ଆଡ଼କୁ ବଳିଷ୍ଠ ପଦକ୍ଷେପରେ। କିନ୍ତୁ କେହି କିଛି ଅନୁଭବ କରିପାରୁ ନାହାନ୍ତି। ସମସ୍ତେ ନିର୍ଲିପ୍ତ, ନିର୍ବିକାର।

କିନ୍ତୁ ପରିସ୍ରାସିକ୍ତ ସହରରେ ବିଷାକ୍ତ ଜୀବାଣୁଙ୍କୁ ହଜମକରି, ସହରବାସୀ 'ଜୋମ୍ବି' ମାନବ ଭିତରୁ କେବେ ଜନ୍ମନେବ ଏକ ନୂତନ ମାନାବାତ୍ମା ?

ପରିଷ୍କାର ପରିଚ୍ଛନ୍ନ, ସହରର, ସଭ୍ୟ, ଶିକ୍ଷିତ, 'ଜୋମ୍ବି' ମାନେ କେବେ ଫେରି ଚାହିଁବେ ନିଜ ଭିତରକୁ ?

କିନ୍ତୁ ଏଇ ଦୁର୍ଗନ୍ଧ ଶୁଙ୍ଘିବାକୁ, ସେଇ କଣ ଏକୁଟିଆ ଅଭିଶପ୍ତ ? ଆଉ କଣ କେହି ଆସିବେ ନାହିଁ ?

-୦-

# ଜାନୁଆରି

ପାପକୁ ଲୁଚେଇ ନେଇ ହୁଏ କିନ୍ତୁ 'ପାପବୋଧ' କୁ ନୁହେଁ। ଏହା ବ୍ୟକ୍ତିର ଅନ୍ତଃ କରଣର କେଉଁ ଏକ ସଂଗୋପନ ପରିତ୍ୟକ୍ତ କୋଣରେ ଲୁକ୍କାୟିତ ହୋଇ ରହିଥିଲେ ସୁଦ୍ଧା ତାର ଜୀବନକାଳ ମଧ୍ୟରେ ଏକ ତୀକ୍ଷ୍ଣ ଶଳାକା ପରି ବିଦ୍ଧ କରିଥାଏ ଅଚାନକ ଭାବରେ, ତାର ଅସତର୍କ ମୁହୂର୍ତ୍ତରେ।

ସେଥିପାଇଁ ବୋଧହୁଏ ଦୀର୍ଘ ତିରିଶ ବର୍ଷ ପରେ ମଧ୍ୟ ମୁଁ ତାର ଆଘାତରେ ବେଳେ ବେଳେ ଚମକି ଉଠେ, କ୍ଷତ ବିକ୍ଷତ ହୁଏ।

କଲିକତା। ବୋଟାନିକାଲ୍ ଗାର୍ଡେନ।

ଏକ ଦୁର୍ବୋଧ୍ୟ ଲାଟିନ୍ ନାମରେ ଗୋଟିଏ ଗଛ ମୂଳେ ଶୋଇ ରହି ମୁଁ ଅନୁଭବ କରୁଥିଲି କଅଁଳ ସୂର୍ଯ୍ୟର ଉଷୁମ ଉତ୍ତାପ ଏକ ମଧ୍ୟ ପୌଷର ଅପରାହ୍ନରେ। ଏମିତି କଅଁଳ ଖରାର ଅଧାଛାଇ ଅଧାଖରା ଭିତରେ ନିର୍ଭାବନାରେ ଶୋଇ ରହ। କିଛି ଚିନ୍ତା ନାହିଁ, ଭାବନା ନାହିଁ। ଛାଇ ଛାଇକା ନିଦର ପାତଳ ଆସ୍ତରଣ ଭିତରେ ଦିବା ସ୍ୱପ୍ନ ଦେଖି ଦେଖି ନିଜକୁ ଭୁଲିଯିବାର, କେତେ ଶାନ୍ତି, କେତେ ତୃପ୍ତି।

ଉପରେ ଘୁମନ୍ତ ନୀଳ ଆକାଶ। ତାରି ଭିତରେ ଗୋଟାଏ କଳାପଟା ଉପରେ ଦରଲିଭା ଅକ୍ଷର ପରି ଖଣ୍ଡ ଖଣ୍ଡ ବିଚ୍ଛିନ୍ନ ଶୁଭ୍ର ମେଘର ଅବଶିଷ୍ଟାଂଶ। ନିଦୁଆ ଆକାଶ। ନିଦୁଆ ପବନ।

ପାଖର ଗହଳ ବୁଦା ଆଡୁଆଳରେ କେତେ ଜଣ ପିକ୍‌ନିକରମାନଙ୍କର ଉଚ୍ଚକଣ୍ଠର ସିନେମା ସଙ୍ଗୀତ। ଅକାରଣ ହସ।

ପଶ୍ଚିମ ପାଖକୁ ବହୁତ ଲୋକ। ଦେଶୀ ବିଦେଶୀ। ନାନାରଙ୍ଗ-ନାନା ପ୍ରକାର ବେଶ ଓ ପରିଚ୍ଛଦ। ନାଲି, ନେଳି, ହଳଦିଆ ପ୍ରଭୃତି ବିଭିନ୍ନ ବର୍ଣ୍ଣର ମହୋତ୍ସବ। ଯୁବକ, ଯୁବତୀ, ବୁଢ଼ା, ବୁଢ଼ୀ, ଶିଶୁ।

ଆଜି ଛୁଟି। କୋଳାହଳମୟ ନଗରୀର ଅଶାନ୍ତ ଓ ଧୂମାଭ ବାୟୁମଣ୍ଡଳରୁ କିଛି ସମୟପାଇଁ ତ୍ୟାଗ କରି ପଳେଇ ଆସି ଏଇଠି ଅନୁଭବ କରୁଛନ୍ତି ପ୍ରକୃତିର ସତେଜ ବାୟୁ।

ଏଇ ପଳେଇ ଆସି ବୁଲିବାଟା ସହରୀ ଜୀବନର ବିଳାସ ନୁହେଁ—ଏକ ନିତାନ୍ତ ଆବଶ୍ୟକତା। ଏଇ ଶାନ୍ତ ନିର୍ଜନ ପରିବେଶଟା ସେଥିପାଇଁ ଥରେ ଥରେ ସହରର ଅଂଶ ହୋଇପଡ଼େ ଏଇ ପଳାତକମାନଙ୍କ ଭିତରେ।

ମୁଁ ବାଛି ନେଇଥାଏ ଅପେକ୍ଷାକୃତ ଗୋଟାଏ ନିରୋଳା ଅଂଶକୁ। ପ୍ରତି ରବିବାରର ଦିନ ଗୁଡ଼ିକୁ ଏଇ ଗଛମୂଳେ ନିଶ୍ଚିନ୍ତ ଭାବରେ ଶୋଇ ରହି କଟାଇ ଦେବାର କଳ୍ପନା ମୋର ସପ୍ତାହର ବାକୀ ଦିନଗୁଡ଼ିକୁ ରସାଣିତ କରି ରଖିଥାଏ।

ତିନି ଚାରୋଟି ଗଛ ଛାଡ଼ି ଗୋଟାଏ ଘଞ୍ଚ ବୁଦାର ଆଢୁଆଳରେ ବସନ୍ତି ଦୁଇଟି ପ୍ରେମବିଭୋର କପୋତ କପୋତୀ । ମୁଁ ଯେମିତି ଏଇ ଜାଗାଟିକୁ ଏକାନ୍ତ ଭାବରେ ବେସରକାରୀ ପଟା ଭାବରେ ବ୍ୟବହାର କରୁଥିଲି ସେମାନେ ମଧ୍ୟ ସେଇ ଜାଗାଟିକୁ ସେମିତି ବ୍ୟବହାର କରୁଥିଲେ । ଜାଗାଟା ଟିକିଏ ସନ୍ତ ସନ୍ତିଆ ସେଥିପାଇଁ ଅନ୍ୟ କୌଣସି ବ୍ୟକ୍ତିର ସୁନଜର ଏପଟେ ପଡ଼େନା ।

ପ୍ରତି ରବିବାର ସେମାନେ ଆସନ୍ତି । ଲଗା ଲଗି ହୋଇ ବସନ୍ତି । ଅସରନ୍ତି ଗପ-ହସ ଖୁସିରେ ଦିନ କଟିଯାଏ । ଜାଣି ହୁଏନା ।

ସବୁ ଦେଖେ ନ ଦେଖିଲା ପରି ରହେ । ସବୁ ଶୁଣେ-ନ ଶୁଣିଲା ପରି ରହେ । କି ଯାଏ ଆସେ ମୋର । ଏଇ ଉଷୁମ ଖରା-ଅଧାନିଦ ଖୁବ୍ ଭଲ । ତଥାପି ପବନରେ ଭାସି ଆସେ ଫୁସ୍ ଫୁସ୍ ଶବ୍ଦ । ଅମାନିଆ କାନ ଆଗ୍ରହରେ ତାକୁ ବାନ୍ଧି ରଖେ । ନିଦୁଆ ମନ ତାକୁ ସ୍ୱପ୍ନ ପରି ମଣେ ।

—ଆରେ ଛି ଛି । ସେ ଲୋକଟା ସେଇଠି ଶୋଇଛି । ତମର ଟିକିଏ କାଣ୍ଡଜ୍ଞାନ ନାହିଁ । କଣ ଭାବିବ ସେ କହିଲ ?"

—ସେ କଣ ଦେଖିବ ନ ଶୁଣିବ ? ସେଇ ବାରଟା ବେଳଠୁ ଆସି ଏଇଠି ପଡ଼ିଯାଏ ଉଠିବ ଯାଇ ପାଞ୍ଚଟା ବେଳେ । କି ଶୁଏରେ ବାବା ଲୋକଟା ।

—ସତରେ କେତେ ଶୋଇ ପଡ଼େମ ସେଇଟା । ମନେହୁଏ ସପ୍ତାହଯାକର ନିଦଯାକ ସେ ଏଇଠି ସାରିଦେଇ ଯାଏ । କୁମ୍ଭକର୍ଣ୍ଣ । ଆରେ-ଫେର-କିଛି ଶିହରଣର ଶବ୍ଦ ଶୁଣେ । ନ ଶୁଣିଲା ପରି ପଡ଼ିରହେ । ନିଦ କେତେବେଳେ ଘୋଟିଆସେ ଜାଣିପାରେନା ।

ଝିଅଟି ଶ୍ୟାମଳ । ଦେଖିବାକୁ ମନ୍ଦ ନୁହେଁ । ଡଉଲ ଡାଉଲ ସ୍ୱାସ୍ଥ୍ୟ । ବେଶ୍ ଉଚ୍ଚ ଉଚ୍ଚ ଛାତି । କାନରେ ଦୁଇଟି କାନପାଶା । ବେକରେ ସରୁସୂତାପରି ସୁନାହାରଟିଏ । ଆଖି ଦୁଇଟି ବେଶ୍ ଲମ୍ବା ଲମ୍ବା । ଭ୍ରୂଲତା ଗୁଡ଼ିକ କିନ୍ତୁ ଠିକ୍ ଧନୁ ପରି ବଙ୍କା କି ଗହଳିଆ ନୁହେଁ । ସାଧାରଣ ଭାବେ ସୁନ୍ଦରୀ କିନ୍ତୁ ଉଦ୍‌ଭିନ୍ନ ଯୌବନା ।

ବୟସ କେତେ ହେବ ? ସତର ନା ଅଠର ? ହୋଇ ପାରିଥାଏ ବାଇଶ କି ତେଇଶ ।

ପିଲାଟି ଢେଙ୍ଗା ଓ ପତଳା । ମହାନଗରୀର ଅର୍ଦ୍ଧାଧିକ ଜନତାର ସାଧାରଣ ସ୍ୱାସ୍ଥ୍ୟର ପ୍ରତୀକ । ନାକ ତଳେ ନିଶର ସରୁ ରେଖାଟିଏ । ଆଖି ଯୋଡ଼ିକ କିନ୍ତୁ ବେଶ୍ ଜ୍ୱଳ ଜ୍ୱଳ ।

"ଦେଶଲାଇ ଅଛେ ?"

ଆଖି ଖୋଲି ଚାହିଁଲି । ସେଇ ପିଲାଟି ଛିଡ଼ା ହୋଇଛି ।

"ହଁ ହଁ, ଅଛି । ହେଉ ନିଅନ୍ତୁ ।" ଡିଆସିଲିଟା ବଢ଼େଇ ଦେଲି ।

ଅହେତୁକ କୌତୁହଳଟାକୁ ଚାପି ରଖିଲି।

ସିଗାରେଟ୍ ଲଗେଇ ସାରି ସେ ବଙ୍ଗଳାରେ କହିଲେ, ''ଅଶେଷ ଧନ୍ୟବାଦ। ମୁଁ ଆପଣଙ୍କ ବିଶ୍ରାମରେ ବ୍ୟାଘାତ ଦେଲି।''

ମୁଁ ଉଦାର କଣ୍ଠରେ କହିଲି ''ନା ନା ସେ କିଛି ନୁହେଁ।''

ବିରକ୍ତ ଯେ ଲାଗି ନଥିଲା ତା ନୁହେଁ କିନ୍ତୁ ପିଲାଟି ପ୍ରତି ଅହେତୁକ କୌତୁହଳ ବିଶେଷତଃ ସେ ଝିଅଟି ପାଖରେ ବସିଛି ଜାଣି ଅଜାଣତରେ ତାର କୃତଜ୍ଞତା ପାଇବାପାଇଁ ବୋଧହୁଏ ମୋର ବିରକ୍ତ ଭାବଟା କଟିଯାଇଥିଲା।

ଏମିତି ହୁଏ। ଜଣେ ଯୁବତୀ ଝିଅଟିଏ ଦେଖିଲେ ଏମିତି ଅଯାଚିତ ଭାବରେ ସାହାଯ୍ୟ କରିବାର ମନୋବୃତ୍ତି ଆପଣାଛାଏଁ ଆସିଯାଏ। ବୋଧହୁଏ ଏଇଟା ସବୁ ପୁରୁଷର ସହଜାତ ସ୍ୱଭାବ।

ଭଦ୍ରଲୋକ ବିଦାୟ ନେଲେ ଓ ମୁଁ ପୁଣି ଆଖିବୁଜି ରହିଲି। କେତେଟା ରବିବାର ଏମିତି ଯାଇଛି ମୋର ମନେ ନାହିଁ କିନ୍ତୁ ପ୍ରତ୍ୟେକଟା ରବିବାର ସେମାନଙ୍କ ଓ ମୋ ଭିତରେ ଥିବା ବ୍ୟବଧାନଟା ଧୀରେ ଧୀରେ କ୍ରମଶଃ କମ କରି ଦେଇ ଯାଉଥାଏ। ଅବଶ୍ୟ ପରିଚୟଟା କେବଳ ମୁହଁ ଚିହ୍ନାରେ ସୀମାବଦ୍ଧ। କେତେବେଳେ କେମିତି 'ସିଗାରେଟ୍‌ଟାଏ' ବା ଦିଆସିଲିଟା ବା 'କେତେ ସମୟ' ଇତ୍ୟାଦି କେତେଟା ସୀମୀତ କଥାବାର୍ତ୍ତା। କେତେଟା ମାମୁଲି ପ୍ରଶ୍ନୋତ୍ତର ମାତ୍ର। କିନ୍ତୁ ଏ ଲୌକିକ ପରିଚୟ ହୀନତା ମଧ୍ୟରେ ବି ଆମେ ଧୀରେ ଧୀରେ ଯେମିତି ଅନ୍ତରଙ୍ଗ ହୋଇ ଆସୁଥିଲୁ। ଏବଂ ପ୍ରାୟ ଆତ୍ମିକ ଭାବରେ ଅନ୍ତରଙ୍ଗ ହୋଇ ଯାଇଥିଲୁ।

ପ୍ରାୟ ବର୍ଷକ ପରର ସେଇ ସ୍ମୃତି ବିଜଡ଼ିତ ରବିବାର। ମୁଁ ସବୁଦିନ ପରି ସେମିତି ଗଛମୂଳେ ଆଖି ବୁଜି ପଡ଼ି ରହିଥାଏ। ଅପରାହ୍ଣର ସୂର୍ଯ୍ୟ ଧୀରେ ଧୀରେ ଖସି ଯାଉଥାଏ ଦୂର ଦିଗ୍‌ବଳୟର ମୁହାଣ ଆଡ଼େ।

କିଛି ସମୟ ପରେ ମୁଁ କାହିଁକି କେଜାଣି ଅନୁଭବ କଲି ଗୋଟାଏ କିଛିର ଅଭାବ-କିଛି ଗୋଟାଏ ବ୍ୟତିକ୍ରମ। କିଛି ସ୍ପଷ୍ଟ ନୁହେଁ-ଅଥଚ ପବନର କେମିତି ଗୋଟାଏ ବିଷାଦର ଭବ। ମୁଁ ହଠାତ୍ ଅନୁଭବ କଲି 'କପୋତ କପୋତୀ'ର ବିଶ୍ରମ୍ଭାଳପର ଘୁମୁରାର ଶବ୍ଦ ଶୁଣାଯାଉ ନାହିଁ। ଆଶ୍ଚର୍ଯ୍ୟ ଲାଗିଲା ମୋତେ। ଏତେ ଦିନର ରବିବାର ଭିତରେ ଥରକ ପାଇଁ ଏ ବ୍ୟତିକ୍ରମ ଘଟିନାହିଁ। ଭାବିଲି ହୁଏତ କିଛି ଅସୁବିଧା ଘଟିଥାଇପାରେ। ଅଥବା ସେମାନେ ଅନ୍ୟ କୁଆଡ଼େ ଚାଲି ଯାଇଛନ୍ତି।

କିଛି ସମୟ କୌତୁହଳ ଦମନ କରି ରହିବା ପରେ ମୁଁ ଆଉ ରହି ପାରିଲି ନାହିଁ। ଦରବୁଜା ଆଖିରେ କଣେଇ କଣେଇ ଚାହିଁଲି ସେଇ ଗଛମୂଳକୁ।

ଆରେ, ଏ କ'ଣ ?

ଆଜି କପୋତୀ ଯେ ଏକା ? ବିରହିଣୀ କପୋତୀ ବିଳାପ କରୁଛି ଏଇ ଶୀତଭିଜା ପୌଷ ଅପରାହ୍ନରେ ଏକାନ୍ତରେ, ନୀରବରେ। ଆଖିରୁ ତାର ଲୁହ ଝରି ଯାଉଛି। ସେ ତାକୁ ପୋଛିବାକୁ ବି ଚେଷ୍ଟା କରୁନାହିଁ। ପୁରୁଣାଦିନର ସ୍ମୃତି ତାକୁ ଉଦ୍‌ବେଳିତ କରୁଛି, ଅଶାନ୍ତ କରୁଛି, ବିଷାଦିତ କରୁଛି। ମୁଁ ଦୋ ଦୋ ପାଞ୍ଚ ହେଲି ଯିବି କି ତା ପାଖକୁ ସାନ୍ତ୍ୱନା ଦେବାପାଇଁ? କାଳେ ସେ କିଛି ମନେ କରିବ କି? ନା ଥାଉ, ସେ ନିଜକୁ ନିଜେ ପ୍ରବୋଧ ଦେଉ-ନିଜକୁ ନିଜେ ଶ୍ରାନ୍ତ କରୁ। ମୁଁ ତାର କିଏ କି ?

ତଥାପି ଅମାନିଆଁ ମନ ମନା ମାନିବାକୁ ନାରାଜ।

ମୁଁ ପାଖରେ ଯାଇ ଛିଡ଼ା ହେଲି। ସେ ମୋତେ ଦେଖି ବି ଦେଖୁ ନଥାନ୍ତି।
—କଣ ହେଲା, କାନ୍ଦୁଛନ୍ତି କାହିଁକି ? ମୁଁ କିଛି ସାହାଯ୍ୟ କରିପାରେ ?

ସେ ତଥାପି ନିରୁତ୍ତର।

ମୁଁ ଫେରି ଆସିବାକୁ ବସିଛି। ସେ ତାଙ୍କର ଲୁହଭିଜା ଭରି ଭରି ଆଖିପତା ଖୋଲି ଥରକ ପାଇଁ ମୋ ମୁହଁକୁ ଚାହିଁ ଦେଇ ପୁଣି ଆଣ୍ଠୁ ଉପରେ ମୁହଁପୋତି ଝର ଝର ହୋଇ କାନ୍ଦିବାକୁ ଲାଗିଲେ।

ସାହସ ହେଲା। ପାଖରେ ବସିଲି।

ଦୁଇ ଜଣ ନିରୁତ୍ତର। ମୁଁ ତାଙ୍କ ମୁଣ୍ଡ ଉପରେ ହାତ ରଖିଲି। ବାଳ ଆଉଁସି ଦେଲି।

କୋହ ବଢ଼ି ଉଠିଲା ଦୁଇଗୁଣ ବେଗରେ।

ବହୁ ସମୟ ପରେ ଉତ୍ତର ମିଳିଲା। ପ୍ରେମିକ ବାହା ହୋଇଯାଇଛି ଅନ୍ୟ ଜାଗାରେ। କନ୍ୟା ସୁନ୍ଦରୀ। ଯୌତୁକ ବି ବେଶୀ।

ପୃଥିବୀର ଏହା ଏକ ସାଧାରଣ ଘଟଣା। କିନ୍ତୁ ତା ଜୀବନରେ ପ୍ରଥମ ଓ ଅନନ୍ୟ ସାଧାରଣ। ପ୍ରଥମ ପ୍ରେମର ବିଫଳତାର କାରୁଣ୍ୟ ପ୍ରଥମ ପ୍ରେମିକ ଓ ପ୍ରେମିକାହିଁ କେବଳ ହୃଦୟଙ୍ଗମ କରିପାରେ। ଏକାବେଳକେ ଭାଙ୍ଗିପଡ଼ିଛି ଝିଅଟି।

ସୂର୍ଯ୍ୟ ବୁଡ଼ିଗଲେଣି। ଘନନୀଳ ଆକାଶରେ ନାରଙ୍ଗୀ ରଙ୍ଗର ଆଲୁଅ। ପାତଳ ଅନ୍ଧାର କୁହୁଡ଼ି ପରି ମାଡ଼ିଆସୁଛି ବୁଦାମୂଳରୁ, ପତ୍ର ଉହାଡ଼ରୁ। ସାରା ବୋଟାନିକାଲ ଗାର୍ଡେନ ନୀଡ଼ଫେରନ୍ତା ପକ୍ଷୀମାନଙ୍କର କାକଳିରେ ପ୍ରତିଧ୍ୱନିତ ହୋଇଉଠୁଛି। ପବନରେ ଏକ ହେମାଳ ଭାବ। ସୂର୍ଯ୍ୟର ବିଦାୟ ଲଗ୍ନ। ପୃଥିବୀରେ ଏକ କାନ୍ଦୁରା କାନ୍ଦୁରା ଭାବ ଗୁମୁରି ଗୁମୁରି ଉଠୁଛି।

ମୁଁ ନୀରବରେ ତାଙ୍କ ମୁଣ୍ଡ ଉପରେ ହାତ ବୁଲଉଛି।

ସେ ନିର୍ବାକ। ମୁଁ ନିରୁତ୍ତର। ସମଗ୍ର ବାୟୁମଣ୍ଡଳ ଯେମିତି ଭେଦି ଯାଉଛି ଆମର ଶିରା ପ୍ରଶିରାରେ। ଆମେ ଯେମିତି ଏଇ ଗଛ ପରି ସ୍ଥାଣୁ ହୋଇ ରହିଯାଇଛୁ।

କେତେବେଳେ ଏମିତି କଟିଛି କେଜାଣି । ଯେତେବେଳେ ମୋର ଚେତା ଫେରିଲା ସେତେବେଳେ ଦେଖିଲା ସେ ମୋର କୋଳ ଉପରେ ଓ ଆମର ଦୁଇଟି ମୁହଁ, ଦୁଇଟି ଓଠ ଏକ ହୋଇଯାଇଛି ।

ନିହାତି ଅପ୍ରତ୍ୟାଶିତ । ଏକାବେଳକେ ଅନିଚ୍ଛାକୃତ ଦେହଗତ ଘଟଣା । ନିଶ୍ଚିତଭାବେ ଜାନ୍ତବ । ଏ ଭୁଲଟା ମନର ନୁହେଁ ଦେହର । ଅଥଚ ନିଷ୍ଠୁର ଭାବରେ ସତ୍ୟ ।

ସେ ଚମକି ପଡ଼ିଲେ । ମୁଁ ବି । କ୍ଷଣକ ପାଇଁ ଆମ୍ଭ ବିହ୍ୱଳ ହୋଇ ପରସ୍ପରକୁ ଚାହିଁ ରହିଲୁ ଅବାକ୍ ହୋଇ ।

ଠିକ୍ ତାର ପରମୁହୂର୍ତ୍ତରେ ସେ ଚଟ୍ କରି ଉଠିପଡ଼ି ଛିଟିକି ଗଲେ ଦୂରକୁ ଗୋଟାଏ ବିଦ୍ୟୁତ୍ ତାରରେ ହାତ ପଡ଼ିଗଲା ପରି ।

ସେ ମୋ ଆଡ଼କୁ ଚାହିଁ ରହିଲେ ତୀକ୍ଷ୍ଣ ଭାବରେ । ମୁହୂର୍ତ୍ତକ ମଧ୍ୟରେ ସେ ଭୀରୁ, ଲୁହଭିଜା କୋମଳ, ନମ୍ର ଆଖି ଯୋଡ଼ିକ ଏକ ଭୟଙ୍କର କ୍ରୋଧ ଓ ତୀବ୍ର ଘୃଣାରେ ଯେମିତି ଜଳିବାକୁ ଆରମ୍ଭ କଲା ଦୁଇଟି ଲାଲ୍ ତାରକା ପରି । ଲୁହ ଝରୁଥାଏ ଦୁଇ ଆଖିରୁ । କିନ୍ତୁ ମନେ ହେଉଥାଏ ସେ ଦୁଇଟି ଆଖିର ଆଗ୍ନେୟଗିରିରୁ ଯେମିତି ଝରି ପଡୁଛି ଉତ୍ତପ୍ତ ଲାଭା । ସେଇ ତରଳ ଲାଲ୍‌ରଙ୍ଗର ଉଜ୍ଜ୍ୱଳ ଉତ୍ତପ୍ତ ସ୍ରୋତ ମୋତେ ଓ ମୋ ପରି ସମସ୍ତ ପୁରୁଷମାନଙ୍କୁ ଧ୍ୱଂସ କରିଦେଇ ତାରି ଅନନ୍ତ ଗର୍ଭରେ ଲୀନ କରିଦେବାକୁ ଯେମିତି ବୋହି ଆସୁଛି ।

ମୁଁ ସ୍ତବ୍ଧ, ନିର୍ବାକ୍ ଓ ଏକ ଅପରିସୀମ ଭୟରେ ସ୍ଥାଣୁ ହୋଇ ଛିଡ଼ା ହୋଇ ରହିଥାଏ ।

ମୋର ଆଖି ଯୋଡ଼ିକ ସମ୍ମୋହିତ ଭାବରେ ସ୍ଥିର ହୋଇ ରହିଥାଏ ସେଇ ଦୁଇଟି ଜ୍ୱଳନ୍ତ ଚକ୍ଷୁ ଉପରେ ।

ନୀରବତା କଠିନ ହୋଇ ଉଠୁଥାଏ । ଏତିକି ବେଳେ ହେଲା ଆଗ୍ନେୟଗିରିର ସେଇ ଶେଷ ବିସ୍ଫୋରଣ ।

"ପଶୁ-ପଶୁ-ପଶୁ । ସବୁ ପରୁଷମାନେ ହିଂସ୍ର, ଜାନୁଆର୍ ।" ସେ ସେଇ ପତଳା ଅନ୍ଧକାର ଭିତରେ ଦୌଡ଼ିବାକୁ ଲାଗିଲେ ଦିଗ୍‌ବିଦିଗ ଶୂନ୍ୟ ହୋଇ ।

-୦-

# ଆଧୁନିକ ଭୂତ କାହାଣୀ

ଏକଦା ଏକାମ୍ର ନଗରୀର ଗରାବଡୁ ଶ୍ମଶାନର ଗୋଟାଏ ପୁରାତନ ବଟବୃକ୍ଷର କୋରଡ଼ରେ ତିନୋଟି ପ୍ରେତାତ୍ମା ବାସ କରୁଥିଲେ।

କୁହାଯାଏ ଯେ ମୃତ୍ୟୁ ବେଳକୁ ଯୋଉ ବ୍ୟକ୍ତିର ଗଭୀର ଆଶା ପୂରଣ ହୋଇ ପାରି ନଥାଏ ସେହିମାନେ ହିଁ ପ୍ରେତାତ୍ମା ରୂପରେ ଘୁରି ବୁଲନ୍ତି।

ସେଇ ପ୍ରେତାତ୍ମାମାନଙ୍କ ମଧ୍ୟରୁ ଜଣେ ପ୍ରେମିକ ଭୂତ, ଅନ୍ୟଜଣେ ବ୍ୟବସାୟୀ ଭୂତ ଓ ଜଣେ ସାଧାରଣ ଗୃହସ୍ଥ ଭୂତ

ପ୍ରେମିକ ଭୂତଙ୍କର ଜୀବନ କାହାଣୀ ଏହିପରି। ସେ ଜଣେ ଝିଅକୁ ତାଙ୍କ କିଶୋର ବୟସରୁ ଗଭୀର ଭାବରେ ଭଲ ପାଉଥିଲେ। କଲେଜରେ ପାଠ ପଢ଼ିଲା ବେଳେ ସେଇ ପ୍ରେମ ଗଭୀରରୁ ଗଭୀରତର ହୁଏ। ସେମାନେ ଦୁଇଜଣ ମିଶି ପ୍ରତିଜ୍ଞା କରିଥିଲେ ଯେ ଦୁଇଜଣଯାକ ଜୀବନ କି ମରଣରେ କେହି କାହାରିକୁ ଛାଡ଼ିବେ ନାହିଁ। ଏହିପରି କିଛିଦିନ ଗଲା ପରେ ହଠାତ୍ ସେ ଝିଅର ବାପା (ଯେ କି ଖୁବ୍ ବଡ଼ ଅଫିସର ତଥା ଧନୀବ୍ୟକ୍ତି ଥିଲେ) ସେ ଝିଅକୁ ଜବରଦସ୍ତ ନେଇ ଅନ୍ୟ ଜଣେ ଯୁବକଙ୍କ ସହିତ ବିବାହ କରାଇ ଦେଲେ ଓ ଝିଅକୁ ନିଜ ଖର୍ଚ୍ଚରେ ଆମେରିକା ପଠାଇ ଦେଲେ। ଯେଉଁ ପିଲାଟି ଆମେରିକାରେ ଚାକିରି କରୁଥିଲା ଏବଂ ସେ ମଧ୍ୟ ସେ ଦେଶର ନାଗରିକତ୍ୱ ଗ୍ରହଣ କରି ସେଇଠାରେ ସ୍ଥାୟୀ ବାସିନ୍ଦା ହୋଇ ରହିଥିଲା। ପ୍ରେମିକଟି ଯୁବତୀଟିର ବିଚ୍ଛେଦ ସହ୍ୟ କରି ନପାରି ବିବାହ ଦିନ ରାତିରେ ହିଁ ଆତ୍ମହତ୍ୟା କରିଥିଲା। ସେ ସେହି ଦିନଠାରୁ ଏଇ ଗଛରେ ପ୍ରେତାତ୍ମା ରୂପରେ ରହିଛି। ତାର ଆଶା ଓ ବିଶ୍ୱାସ ଦିନେ ନା ଦିନେ ତାର ପ୍ରେମିକା ଏଠାକୁ ଫେରି ଆସିବ ଏବଂ ତାର ମୃତ୍ୟୁପରେ ସେମାନେ ଦୁହେଁ ପୁଣି ଥରେ ମିଳିତ ହେବେ।

ବ୍ୟବସାୟୀ ଭୂତଟି ତା ଜୀବନକାଳ ମଧ୍ୟରେ ପ୍ରଚୁର ସମ୍ପତ୍ତି ରୋଜଗାର କରିଥିଲେ। ଜଣେ ପ୍ରଖ୍ୟାତ କଳାବଜାରୀ ଭାବରେ ମଧ୍ୟ ସେ ପ୍ରସିଦ୍ଧ ଥିଲେ। ସେ ଭାରି କୃପଣ ଥିଲେ ଏବଂ ଦରକାର ବେଳେ କେବଳ 'ଘୁସ୍' ଦେବା ବ୍ୟତୀତ ଅନ୍ୟ କିଛି ଦାନ ଧର୍ମ କରୁ ନଥିଲେ। ଜୀବିତ କାଳ ମଧ୍ୟରେ ସେ ତିନୋଟି ଫେକ୍ଟ୍ରୀର ମାଲିକ ହୋଇଥିଲେ ଏବଂ ଚତୁର୍ଥଟି ଗଢ଼ିବା ଅବସ୍ଥାରେ ତାଙ୍କର ମୃତ୍ୟୁ ହୋଇଥିଲା। ସେ ତାଙ୍କର ପ୍ରଚୁର ଧନସମ୍ପତ୍ତିର ଲୋଭ ଛାଡ଼ି ପାରି ନଥିଲେ ଏବଂ ସେଥିପାଇଁ ମୃତ୍ୟୁପରେ ମଧ୍ୟ ସେ ପ୍ରେତ ରୂପରେ ସେଇ ସମ୍ପତ୍ତିର ରକ୍ଷଣାବେକ୍ଷଣ କରିବାର ଉପାୟମାନ ଖୋଜୁଥିଲେ। ତାଙ୍କର ବିଶ୍ୱାସ ଥିଲା ଯେ ସେ ଯଦି 'ମୋକ୍ଷ' ପାଇଯିବେ, ତେବେ ତାଙ୍କର ବିଷୟ ସମ୍ପତ୍ତି ସବୁ ନାରଖାର ହୋଇଯିବ।

ତୃତୀୟ ଭୂତଟି ଜଣେ ସାଧାରଣ ଗୃହସ୍ଥ । ସେ ତହସିଲ୍‌ଦାର ଭାବରେ ମଧ୍ୟ ବହୁ ଧନ ରୋଜଗାର କରିଥିଲେ ଓ ଭୁବନେଶ୍ୱରରେ ଯୋଡ଼ିଏ କୋଠାଘର କରିଥିଲେ । ସେ ଅତ୍ୟନ୍ତ ପରିବାର ଅନୁରକ୍ତ ଥିଲେ ଓ ନିଜ ସ୍ତ୍ରୀ ଓ ସନ୍ତାନମାନଙ୍କ ଛଡ଼ା ଅନ୍ୟ କାହାରି କଥା ଚିନ୍ତା କରୁ ନଥିଲେ । ପରିବାର ପ୍ରତିପୋଷଣ ଓ ସେମାନଙ୍କର ଭବିଷ୍ୟତ ପାଇଁ ସେ ଅନ୍ୟାୟ ଉପାୟରେ ଧନ ଉପାର୍ଜନ କରିବାକୁ ଅନ୍ୟାୟ ବୋଲି ଭାବୁ ନଥିଲେ । ସେ ସବୁବେଳେ ଭାବୁଥିଲେ ଯେ ସେ ମରିଗଲା ପରେ ପିଲାମାନେ ଅନାଥ ଓ ନିଃସ୍ୱ ହୋଇଯିବେ । ତାଙ୍କ ବିନା ତାଙ୍କ ପରିବାର ଦିନକ ମାତ୍ର ଚଳି ପାରିବ ନାହିଁ । କିନ୍ତୁ ଘଟଣା ଚକ୍ରରେ ଜିପ୍ ଆକ୍‌ସିଡ଼େଣ୍ଟରେ ତାଙ୍କର ମୃତ୍ୟୁ ହୋଇଗଲା । ସେତେବେଳକୁ ତାଙ୍କର ଦୁଇଟିଯାକ ପୁଅ ସ୍କୁଲ ସ୍ତରରେ ଓ ଗୋଟିଏ ଝିଅ ଅବିବାହିତା । ସେ ସ୍ତ୍ରୀ ଓ ପରିବାରର ମୋହ ପରିତ୍ୟାଗ କରି ନପାରି ପିଲାମାନେ ମଣିଷ ହେବା ପର୍ଯ୍ୟନ୍ତ ଅଶରୀରୀ ଭାବରେ ତାଙ୍କର ରକ୍ଷାକର୍ତ୍ତା ହୋଇ ରହିବାକୁ ଚାହିଁଲେ ।

ଏମାନଙ୍କ ଛଡ଼ା ଅନ୍ୟ ଗୋଟିଏ ଗଛରେ ଜଣେ କ୍ୟାପିଟାଲ ଡାକ୍ତରଙ୍କ ଭୁଲ ଇଞ୍ଜେକ୍‌ସନ ଫଳରେ ମୃତ୍ୟୁବରଣ କରିଥିବା ପ୍ରେତିନୀଟିଏ ବାସ କରୁଥିଲା । ତାଙ୍କର ମୃତ୍ୟୁ ବେଳକୁ ତାଙ୍କ ଛୁଆଟିର ବୟସ ମାତ୍ର ବର୍ଷେ ତିନିମାସ । ସେ ନିଜର ପ୍ରିୟତମ ସ୍ୱାମୀ ଓ ପୁତ୍ରଟିକୁ ଅକାଳରେ ଛାଡ଼ି ଯାଇଥିବାରୁ ସ୍ନେହ ଓ ମମତାର ବନ୍ଧନରେ ବାନ୍ଧି ହୋଇ ରହିଥିଲେ ପ୍ରେତିନୀ ରୂପରେ । ତାଙ୍କ ଛଡ଼ା ବିଭିନ୍ନ କାରଣରୁ କେତେଜଣ ପିଶାଚୁଣୀ, ଡାହାଣୀ ମଧ୍ୟ ସେହି ଗଛରେ ବାସ କରୁଥିଲେ ।

ଯଦିଓ ପ୍ରେତାତ୍ମାମାନଙ୍କର ଦେହ ନଥାଏ ଏବଂ ତେଣୁ ସ୍ତ୍ରୀ ପୁରୁଷ ଭେଦଭାବ ରହିବା କଥା ନୁହେଁ, ତଥାପି ବହୁ ଜନ୍ମର ସଂସ୍କାରବଶତଃ ସେମାନେ ଅଲଗା ଅଲଗା ରହିବାକୁ ପସନ୍ଦ କରୁଥିଲେ ।

ଦିନକର ଘଟଣା ।

ସେଦିନ ଭୁବନେଶ୍ୱରର ଜଣେ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କର ମୃତ୍ୟୁ ଘଟିଲା । ସାରା ଗରାବନ୍ଧୁ ମଶାଣି ଚାରିପଟ ବହୁ ବହୁ କାର୍, ଜିପ୍, ସ୍କୁଟରରେ ଭର୍ତ୍ତି ହୋଇଗଲା । ବହୁ ଲୋକେ ଶୋଭାଯାତ୍ରା କରି ଶବଟିକୁ ଆଣିଲେ । 'ଅମର ରହେ' 'ଜିନ୍ଦାବାଦ' ଶବ୍ଦରେ ସାରା ଅଞ୍ଚଳ ମୁଖରିତ ହୋଇ ଉଠିଲା ।

ଯଥା ସମୟରେ ଜୁଇ ସଜଡ଼ା ହେଲା ଏବଂ ସେଇ ପଦସ୍ଥ ବ୍ୟକ୍ତିଟିକୁ ସଯତ୍ନବର୍ଦ୍ଧିତ, ସଯତ୍ନେ ପ୍ରତିପାଳିତ ଦେହଟି ଚିତାଗ୍ନିରେ ଧୀରେ ଧୀରେ ଭସ୍ମୀଭୂତ ହୋଇଗଲା । ରାତି ଏଗାରଟା ସରିକି ଶବଦାହ କାର୍ଯ୍ୟ ସମାପନ ହେଲା ଏବଂ 'ଅସ୍ଥି' ସଂଗ୍ରହ କରି ସମସ୍ତେ ପ୍ରସ୍ଥାନ କଲେ । କ୍ରମଶଃ ଗରାବନ୍ଧୁ ମଶାଣିର ନିସ୍ତବ୍ଧତା

ଓ ନିର୍ଜନତା ଫେରି ଆସିଲା । ଏତେ ଜୀବନ୍ତ ଲୋକମାନଙ୍କ କୋଳାହଳରେ ଭୟଭୀତ ହୋଇ କୋଟର ଭିତରେ ଆତ୍ମଗୋପନ କରିଥିବା ପ୍ରେତାତ୍ମାମାନେ ଧୀରେ ଧୀରେ ବାହାରକୁ ବାହାରି ଆସିଲେ । କିଏ ଗଛ ଡାଳରେ, କିଏ ଶ୍ମଶାନର ଚାରିପାଖେ ବୁଲି ବୁଲି ଖୋଲା ପବନରେ ବିଚରଣ କରିବାକୁ ଲାଗିଲେ । ଯେହେତୁ ଭୂତ ମାନଙ୍କର ଶରୀର ନଥାଏ ସେମାନଙ୍କୁ ଭୋକ ହୁଏ ନାହିଁ ଏବଂ ସେମାନଙ୍କୁ ଲୁଗାପଟାର ଆବଶ୍ୟକତା ମଧ୍ୟ ପଡ଼େ ନାହିଁ। ତେଣୁ ଗ୍ରାସାଚ୍ଛାଦନ ପାଇଁ ସେମାନଙ୍କୁ ପରିଶ୍ରମ କରିବାକୁ ପଡ଼ି ନଥାଏ । ତେଣୁ ସେମାନଙ୍କର ସାରାଟା ସମୟ କେବଳ ବିଶ୍ରାମ । ତିନି ଭୂତଯାକ ଏମିତି ଖୁସି ଗପ ହେଉ ହେଉ ଗୃହସ୍ଥ ଭୂତଟି କହିଲା—

—ହେଇ, ଦେଖିଲ । ସେ ଜୁଇ ପାଖରେ କିଏ ବୁଲୁଛି ।

ସେମାନେ ସମସ୍ତେ ସେଆଡ଼ିକି ଅନେଇ ଦେଖିଲେ ଜୁଇ ଚାରିକଡ଼େ ଗୋଟାଏ ତାଙ୍କ ପରି ଛାୟାମୂର୍ତ୍ତି ବୁଲୁଛି ।

—ଆମ ସାଙ୍ଗକୁ ଆଉ ଜଣେ ଆସିଗଲା । ଅନ୍ୟ ଜଣେ କହିଲା ।

—ଚାଲ, ତାଙ୍କୁ ସଙ୍ଖୋଳି ଆଣିବା । ଆଉ ଜଣକ କହିଲା ।

ତିନିହେଁ ମିଶି ତା ପାଖକୁ ଉଡ଼ିଗଲେ ଓ ଖଣ୍ଡେ ଦୂରରେ ରହିଲେ । ପ୍ରେମିକ ଭୂତଟି ଟିକେ ଟୋକା ଟାକଳିଆ ହୋଇ ଥିବାରୁ ସେ ଆଗେଇ ଯାଇ ପଚାରିଲା ''କିଏ ବେ ତୁ ?''

ପ୍ରକାଶ ଥାଉକି ପ୍ରେତ ରାଜ୍ୟରେ ବଡ଼ସାନ, ଜାତିଭେଦ ଓ ଧର୍ମଭେଦ ନଥିବାରୁ ସେମାନେ ପରସ୍ପରକୁ 'ତୁ' 'ତା'ରେ ସମ୍ବୋଧନ କରନ୍ତି ଓ ଏକ ସାଙ୍ଗରେ ବସନ୍ତି ଏକା ସାଙ୍ଗରେ ବୁଲନ୍ତି ।

ଛାୟାମୂର୍ତ୍ତିଟି ଟିକିଏ ଚମକିଲା ପରି ହୋଇ ସେମାନଙ୍କ ଆଡ଼କୁ ଅନେଇଲା । ସଦ୍ୟ ଆସିଥିବାରୁ ଅନ୍ଧାରରେ ସେ ଭଲ କରି ଦେଖିପାରୁ ନଥାଏ । ତା ପରେ କିଛି ସମୟ ଦେଖିଲା ପରେ ସେ ବଞ୍ଚିଥିବା ଅବସ୍ଥାରେ ଯେପରି କରିଥାନ୍ତା, ସେଇପରି ଭାବରେ ତୁଚ୍ଛାତାଚ୍ଛିଲ୍ୟ କରି, ଗୋଟାଏ ଅବଜ୍ଞାସୂଚକ ଚାହାଣୀ ଦେଇ ଗମ୍ଭୀର ହୋଇ ଅନ୍ୟ ଆଡ଼େ ଅନେଇଲା ।

—ଆବେ ଶଳା, ଶୁଭୁନି କିବେ ? କଣ ତୁ ଭାବୁଛୁ ଏବେ ବି ଉଚ୍ଚପଦସ୍ଥ ବଡ଼ ଅଫିସର ? ଶଳା, ପ୍ରେତ ରାଜ୍ୟରେ ସବୁ ସମାନ।

ଛାୟା ମୂର୍ତ୍ତିଟି ଟିକିଏ ଘବଡ଼ିଗଲା ।

—ଆରେ, ଆରେ, ଏମିତି କଣ କହୁଛୁ ? ସାର୍ ନୂଆ ଆସିଛନ୍ତି ।

ତଳିଆ କର୍ମଚାରୀର କୃତ୍ୟ କୃତ୍ୟ ଭାବଟି ତଥାପି ପୂର୍ବତନ ତହସିଲଦାରଙ୍କ ମନରୁ ଯାଇନାହିଁ । ତାଙ୍କର ଜୀବିତାବସ୍ଥାରେ ଇଏ ତାଙ୍କର ସେକ୍ରେଟାରୀ ଥିଲେ ।

—ସେ କିଛି ନୁହେଁ, ସାର୍ ଆସନ୍ତୁ । କଥା କଣ କି ସାର୍ ଏଠି ତ

ମାନେ ଆଉ କିଛି ଅଲଗା ଟାଇପ୍ ଘର ଓ ଅଲଗା ଅଫିସ—ମାନେ ବଡ଼ ଚାକିରି, ଛୋଟ ଚାକିରୀ କଥା ତ ନାହିଁ—''

ଛାୟାମୂର୍ତ୍ତିଟି ଯଦିଓ ଏଇ କଥାରେ ଟିକିଏ ନରମିଗଲେ ତଥାପି ସେ ଚୁଲି ପାଖ ଛାଡ଼ୁ ନଥାନ୍ତି। କେତେ ସୁନ୍ଦର ଦେହ ଆହା, ଭସ୍ମୀଭୂତ ହୋଇଗଲା। ଜୀବନରେ ଆହୁରି କେତେ ଆକାଙ୍କ୍ଷା ଅପୂରଣ ରହିଗଲା।

ଭୂତ ପ୍ରେତମାନେ କାନ୍ଦିବା କଥା ଜଣା ନାହିଁ। ତଥାପି ଶୁଣାଯାଏ ଯେ ସେମାନେ ମଣିଷ କାନ୍ଦିଲା ପରି ଶବ୍ଦ କରନ୍ତି, ବିଶେଷତଃ ଛୁଆଛାଡ଼ି ମରିଥିବା ସ୍ତ୍ରୀମାନେ। କିନ୍ତୁ ଏଇଠି ସେ କାନ୍ଦିଲା ପରି ଶବ୍ଦ ଶୁଣାଗଲା। ଦୀର୍ଘଶ୍ୱାସ ମଧ୍ୟ ଶୁଣାଗଲା।

ଛାୟାମୂର୍ତ୍ତିଟି କ୍ରମଶଃ ଉପରକୁ ଉଠିଗଲା ଓ ଭୁବନେଶ୍ୱର ସହର ଭିତରକୁ ଉଡ଼ିଗଲା।

—ଆହା, ବିଚରା ଯାଇ ଟିକେ ବୁଲି ଆସୁ। ଏବେ୍ୟ ଜୀବନ ଛାଡ଼ି ଆସିଛି। ଜଣେ ଭୂତୁଣୀ ମନ୍ତବ୍ୟ କଲା।

ଏମିତି କିଛିଦିନ ଗଲା।

ପୂର୍ବତନ ପଦସ୍ଥ ଅଫିସର ଭୂତଟି ମଧ୍ୟ କାଳକ୍ରମେ ସେମାନଙ୍କର ସାଙ୍ଗ ପାଲଟି ଗଲା।

ସେମାନେ ସବୁଦିନ ମଧ୍ୟ ରାତ୍ରିରେ ବାହାରନ୍ତି ଓ ଯେଝା ଗନ୍ତବ୍ୟସ୍ଥଳ ବୁଲିବାଲି ଆସି ପାହାନ୍ତା ପୂର୍ବରୁ ଫେରି ଆସି କୋଟର ଭିତରେ ପଶିଯାଇ ଦୁଃଖସୁଖ ହୁଅନ୍ତି।

ବ୍ୟବସାୟୀ ଭୂତଟି ବେଶି ବ୍ୟସ୍ତ ହୁଅନ୍ତି।

''ଶଳେ, ନିଷ୍କର୍ମା। କିଛି ରଖିବେ ନାହିଁ। ଶେଷ ଫେକ୍ଟରୀଟାକୁ ଶେଷକୁ ବିକିଦେଲେ। ଏତେ କଷ୍ଟକରି ଗଢ଼ିଥିଲି। ବାପର ଶେଷ କାମ ବୋଲି ଟିକିଏ ବି ଶ୍ରଦ୍ଧା ନାହିଁ। ତିନିଟା ଫେକ୍ଟରୀକୁ ମା ଓ ଦୁଇପୁଅ ଗୋଟିଏ ଗୋଟିଏ ନିଜ ନାଁରେ ଭାଗ କରିନେଇ ଏଇଟାକୁ ବିକିଦେଲେ ? ଭଲ।

''ମରିବା ତିନିମାସ ଯାଇନି। କାହାରି କଣ ଟିକିଏ ମନେ ପଡୁଛି ମୋ କଥା ? ପୁଅ ଝିଅ ସବୁ ପାଠ ପଢ଼ାରେ ବ୍ୟସ୍ତ। ସ୍ତ୍ରୀ ହିସାବ କିତାବରେ। ଏଲ ଆଇ ସି କେତେ ମିଳିବ ? ଜିପିଏଫ୍ କେତେ ? ଗ୍ରାଚୁଇଟି କେତେ ? ଘର ଋଣବାକୀ କେତେ ଅଛି ? ମୋତେ ଚାକିରି ମିଳିବ ନା ନାହିଁ ? ବୁଢ଼ା ବୟସରେ ପୁଣି ଚାକିରି ? ପଇଁତ୍ରିଶ ତ ହେଲାଣି ? ଛି ଛି ଛି।'' ଗୃହସ୍ଥ ଭୂତ କହନ୍ତି।

ପ୍ରେମିକ ଭୂତଟି ବୁଲିବାଲି ଆସି କହନ୍ତି ''ନା, ଆଜିଯାଏ ବି ଫେରିନି ଆମେରିକାରୁ।''

ପୁଣି କିଛିଦିନ ଯାଏ।

—ଶଳା, ଶଳା, ଦିଟାଯାକ ମଦ ଧରିଲେଣି। ସ୍ତ୍ରୀ ପାଖରେ ମନ ମାନୁନାଇଁ

ଯେ କଲିକତା ପଳଉଛନ୍ତି। ଭାଇଜାଗ୍ ଯାଉଛନ୍ତି। ଶଳା, ଏମିତି କରି ସବୁ ସମ୍ପତ୍ତି ଉଡ଼େଇ ଦେବେ। ତାଙ୍କୁ କଣ କିଛି ବାଧୁଛି? ଏତେ ଦୁଃଖରେ, ପେଟରୁ କାଟି ସମ୍ପତ୍ତି କରିଥିଲି। ନିଜେ ନିଜ ପାଇଁ ପଇସାଟିଏ ଖର୍ଚ୍ଚ କରିନାହିଁ। ମୋଫତ୍ ପଇସା ପାଇଛନ୍ତି ତ। ଉଡ଼ଉଛନ୍ତି ମହାମଉଜରେ। ଏଇଥିପାଇଁ ମୁଁ ଯକ୍ଷଙ୍କ ପରି ବସିଛି ସମ୍ପତ୍ତି ଆଗୁଳାଇ।

—ବୁଝିଲ ଭାଇ, ସ୍ତ୍ରୀ ଚାକିରି କଲେଣି। ଧଳା ଶାଢ଼ୀ ନୁହେଁ—ଛିଟ ଶାଢ଼ୀ। ମୁଣ୍ଡରେ ଚିପା। ହାତରେ ସୁନାବଳା। ହସ ଖୁସି ସମସ୍ତଙ୍କ ସାଙ୍ଗରେ। ଛି ଛି ଛି। ଟିକିଏ ବି ମୋ କଥା ମନେ ପଡୁନାଇଁ। ମୁଣ୍ଡଝାଳ ତୁଣ୍ଡରେ ମାରି, ଅନ୍ୟାୟ କରି ଉପାର୍ଜନ କଲି କାହାପାଇଁ? ଶ୍ରାଦ୍ଧ ଆଜି ଯେ—ଗୋଟିଏ ବ୍ରାହ୍ମଣକୁ ଡାକି ଯଥାକଥା ଟୁଂ ଟାଂ ଶ୍ରାଦ୍ଧ ସାରିଦେଇ ଅଫିସ୍ ବାହାରିଛି। ପିଲାଗୁଡ଼ିକୁ କେତେ ଭଲ ପାଉଥିଲି। ବାପଟା ମରିଗଲା ଯେ ଶ୍ରାଦ୍ଧଦିନ ବି ଟିକିଏ ଭଲ କରି ମନେ ପଡୁନି। ସବୁ ସ୍କୁଲ କଲେଜ ବାହାରିଗଲେ। ଦିନଟିଏ ମନ ଭରି ମୋତେ ମନେ ପକେଇ ନଥାନ୍ତେ। କାହାପାଇଁ କରିଥିଲି ଏ ସମ୍ପତ୍ତି। ଘର ଭଡ଼ାରୁ ତ ମଉଜରେ ଚଳୁଛନ୍ତି। ଆଉ ମନେ କୋଉଠି ପଡ଼ିବ? ଶଳେ ସବୁ ଅକୃତଜ୍ଞ।

ଅଫିସର ଭୂତଟି ନିରବ ଓ ଗମ୍ଭୀର ରହୁଥାନ୍ତି।

ଦିନକର କଥା। ସେଦିନ ରାତି ଅଧରେ ବୁଲି ବାହାରିଲା ବେଳକୁ ହଠାତ୍ ଜଣେ ପ୍ରେତିନୀର ବିଳାପ ଶୁଣି ସମସ୍ତେ ତାକୁ ଘେରି ଯାଇ ଘଟଣା କଣ ଜାଣିବାକୁ ବ୍ୟଗ୍ର ହୋଇ ପଡ଼ିଲେ। ପ୍ରେତିନୀଟି ବାହୁନି ବାହୁନି କାନ୍ଦୁଥାଏ ଓ କହୁଥାଏ "ମୋ ମରିବାର ବର୍ଷକ ଯାଇନି ସେ ପୁଣି ଦ୍ବିତୀଅ ହୋଇ ପଡ଼ିଲେ। ମୋ ଦିହଁ ଛୁଇଁ ପ୍ରତିଜ୍ଞା କରିଥିଲେ ମୋ ଛଡ଼ା ସେ ଆଉ କାହାରିକୁ ଛୁଇଁବେ ନାହିଁ ବୋଲି। ଏବେ ମୋ ପିଲାର କଣ ହେବ? ସଉତୁଣୀ ତାକୁ ମାରି ପକେଇବ?"

ଏକଥା ପୁଣି ସମସ୍ତଙ୍କ ମନ ଆର୍ଦ୍ର ହୋଇ ଯାଇଥିଲା ଓ ସମସ୍ତେ ଭୀଷଣ ମନ ଦୁଃଖରେ ନିଜ ନିଜ କଥା ଚିନ୍ତା କରି ମ୍ରିୟମାଣ ହୋଇ ପଡ଼ିଥିଲେ।

ଏହାପରେ କିଛିଦିନ ବିତିଗଲା।

ସେଦିନ ହଠାତ୍ ଦେଖିଲା ବେଳକୁ ସମସ୍ତେ ପ୍ରାୟ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଶ୍ମଶାନକୁ ଫେରି ଆସିଥିଲେ। ସମସ୍ତଙ୍କର ମୁହଁ ଗମ୍ଭୀର ଓ ସେମାନେ ଉତ୍ତେଜିତ ଜଣା ପଡୁଥିଲେ।

ବ୍ୟବସାୟୀ ଭୂତଟି ଟିକିଏ ଉତଳା ଧରଣର।

ସେ ଚିତ୍କାର କରି କହିଲେ "ଆଉ ନୁହେଁ। ଆଉ ନୁହେଁ। ମୁଁ ଆଉ ରହିବି ନାହିଁ। ଶଳା ସମ୍ପତ୍ତି କଲା କିଏ? ଆଉ ସେଇଥିପାଇଁ ଏତେ ମାଡ଼ଗୋଳ ଭାଇ

ଭାଇ ଭିତରେ । ବୁଝିଲ, ଦି ଭାଇ ମୁଣ୍ଡ ଫଟାଫଟି । କେଶ୍ ଯାଏ କଥା ଗଲାଣି । ଗଲା, ସବୁ ସମ୍ପତ୍ତି ଗଲା । ଏତେ କଷ୍ଟାର୍ଜିତ ସଂମ୍ପତ୍ତି, ସବୁ ଶଳା ଓକିଲ ଖାଇ ଶେଷ କରିଦେବେ । ଶଳେ ଦାଣ୍ଡର ଭିକାରୀ ହୋଇଯିବେ । ମୁଁ ଆଉ ତାଙ୍କର ସେ ଅବସ୍ଥା ଦେଖି ପାରିବି ନାହିଁ କି ମୋର ଏତେ କଷ୍ଟରେ ଉପାର୍ଜିତ ସଂପତ୍ତି ବିନର୍ବ୍ୟୟ ହେବାର ଦେଖି ପାରିବି ନାହିଁ।''

ତହସିଲଦାର ଭୂତଟି କହିଲେ, ''ଠିକ୍ କହୁଛ ଭାଇ—ଏମିତି ଆଶାରେ ଆଶାରେ ଏତେ ଦିନ କଟିଗଲା । ଭାବିଥିଲି ମୋ ବିନା ସେମାନେ ଚଳିବେ କେମିତି ? ମୋ କଥା ଭାବି ଭାବି ସେମାନେ କଷ୍ଟ ପାଇବେ । ହେଲେ ହେଉଛି କଣ ? ବର୍ଷ ବର୍ଷ ଧରି ଦିନକ ପାଇଁ ସେମାନେ ମୋତେ ମନେ ପକଉ ନାହାନ୍ତି । ସେମାନଙ୍କ ପାଇଁ ଜୀବନରେ ଏତେ କଷ୍ଟ କରି ଧନ ଅର୍ଜିଲି ପୁଣି ଭୂତ ହୋଇ ଏତେ ହନ୍ତସନ୍ତ ହେଉଛି—ତାଙ୍କର କାହିଁକି କିଛି ମନେ ପଡ଼ିବ ? ନା ସେମାନେ ଦୁଃଖ କରିବେ ? ମହାମଉଜରେ ଅଛନ୍ତି ସବୁ । ଘରଫର ଟଙ୍କା ପଇସା ନ କରିଥିଲେ ସେମାନେ ଅବା ଦୁଃଖରେ ପଡ଼ି ହେଲେ ମନେ ପକଉଥାନ୍ତେ । ଶଳା, ଏସବୁ ଅକୃତଜ୍ଞମାନଙ୍କ ପାଇଁ ଘରଦ୍ୱାର କରିବା, ଟଙ୍କା ଅର୍ଜିବା ସବୁ ମିଛ ହୋଇଗଲା । ନା, ଆଉ ନୁହେଁ । ମୁଁ ଆଉ ସେମାନଙ୍କ ମୁହଁ ଦେଖିବାକୁ ଚାହେଁନା ।

ଗମ୍ଭୀର ପ୍ରକୃତିର ଅଫିସର ଭୂତଟି ବହୁଦିନ ପରେ ନିଜ ମନକଥା କହିବାକୁ ପାଟି ଖୋଲିଲେ ।

ସେ ଇଂରାଜୀରେ କହିଲେ । ଅନଗ୍ରେଟ୍‌ଫୁଲ୍ ରେଚେସ୍ । ବଞ୍ଚିଥିଲା ବେଳେ ମୋ କ୍ଷମତା ଓ ଧନ ନେଇ କେତେ ଗର୍ବ । ଅଥଚ ମୁଁ ନାହିଁ ବୋଲି ଟିକେ ବି ଦୁଃଖ କରୁ ନାହାନ୍ତି । ମୋ ସ୍ତ୍ରୀ ଏବେ ସମାଜ ସେବିକା । ସମାଜସେବା ଓ ରାଜନୀତିରେ ତାଙ୍କୁ ସମୟ ଅଣ୍ଟୁ ନାହିଁ । ପ୍ରଥମେ ପ୍ରଥମେ ମୋ ଫଟୋରେ ପ୍ରତିଦିନ ଫୁଲମାଳ ଟାଙ୍ଗୁଥିଲେ । ଏବେ ସେଇଟା ବି ବନ୍ଦ ହୋଇଗଲାଣି ।

ଆଉ ପୁଅ । ଏତେ ଖର୍ଚ୍ଚ କରି ଡୁନ୍ ସ୍କୁଲରେ ପାଠ ପଢ଼େଇଲି । ବିଦେଶକୁ ପଠେଇଲି । ଭଲ ଶିକ୍ଷିତା ବୋହୂ । ଅନେକ ଯୌତୁକ ନେଇ ବିଭା କରେଇଲି । ସେଗୁଡ଼ା କଣ ମୁଁ ଭୋଗ କରୁଛି ? ହେଲେ ସେଇ ପୁଅ ଏବେ ଏହ୍ଲାବାଦ ଓ ଗୟା ଶ୍ରାଦ୍ଧ ଦେବାକୁ ମନା କରୁଛି । କହୁଛି ଯେତେ ସବୁ ପୁରୁଣା ବାଇଗଟେଡ଼୍ ଆଇଡ଼ିଆ । ବାପା କଣ ବସି ରହିଛନ୍ତି ପିଣ୍ଡ ଚାଉଳ ପାଇବାକୁ । ନନସେନ୍‌ସ । ମୁଁ ଶ୍ରାଦ୍ଧ ଫ୍ରାଦ୍ଧ କିଛି କରିବି ନାହିଁ ।

ଛି, ଛି, ଛି । ମୁଁ ବି ସେମାନଙ୍କ ମୁହଁକୁ ଆଉ ଚାହିଁବି ନାହିଁ ।

ଏତିକିବେଳେ ବୁଲାବୁଲି କରି ପହଞ୍ଚିଲା ପ୍ରେମିକ ଭୂତଟି । ସେ ଖବର ନେଇଥିଲା ତାର ପ୍ରେମିକା ଗତକାଲି ଭୁବନେଶ୍ୱରରେ ପହଞ୍ଚିଛି ବୋଲି ।

ସେ ପ୍ରଥମେ ଗୁମ୍ ହୋଇ ବସିଲା କିଛି ସମୟ। ତା ପରେ କହିଲା "ଛି, ଜୀବନଟା ବ୍ୟର୍ଥ ହୋଇଗଲା। ପ୍ରେତ ଜୀବନଟି ବି ଅଧା ବ୍ୟର୍ଥ ହୋଇଗଲା। ଏତିକି ବଦ୍‌ମାସ୍ ମାଇକିନିଆ। ମୋ ପାଇଁ ଜୀବନ ଦେଇ ଦେବ ବୋଲି ପ୍ରତିଜ୍ଞା କରିଥିଲା। ଆଜି ଦେଖିଲା ବେଳକୁ ଛି-ଛି ଲାଜକଥା କଣ କହିବି? ତା ସ୍ୱାମୀ ସାଙ୍ଗରେ ବଡ଼ ହୋଟେଲରେ ରହିଛି। ପିନ୍ଧିଛି ଗୋଟାଏ ଏମିତି ନାଇଟି ଯେ ସର୍ବାଙ୍ଗ ଦିଶୁଛି। ସ୍ୱାମୀ ସାଙ୍ଗରେ ମଦ ପିଇ ତାକୁ କୁଣ୍ଢାଇ ଧରି କହୁଛି "ତା ଜୀବନର ସର୍ବସ୍ୱ ବୋଲି।" ଏକଦମ୍ ସାଇବାଣୀ ହୋଇ ଯାଇଛି ଆମେରିକାରେ ରହି। ମୋ କଥା କାହିଁକି ତାର ଟିକିଏ ମନେ ରହିବ। ତା ପାଇଁ ଜୀବନକୁ ବିସର୍ଜନ ଦେଲି। ତାକୁ ଅପେକ୍ଷା କରି କରି ଏତେ ଦିନ ବିତାଇ ଦେଲି ଏଇ ପ୍ରେତ ଜୀବନ। ଅଥଚ ସେ ପୁଣି ତାର ସ୍ୱାମୀକୁ କହୁଛି ସେ ତାର 'ଜନ୍ମ ଜନ୍ମାନ୍ତର ସାଥୀ' ବୋଲି। ଆଉ ମୋର ଅପେକ୍ଷା କରି ଲାଭ କଣ? ମୁଁ ଭାବିଥିଲି ସେ ମୋର ବୋଲି। ଏଡ଼େ ବିଶ୍ୱାସଘାତିନୀ ସେ? ଛି ଛି ସେ ଯେ ଏତେ ପ୍ରତାରଣା କରିପାରେ ମୋର ବିଶ୍ୱାସ ନଥିଲା। ନା ଆଉ ନୁହେଁ। ଆଉ ପ୍ରତୀକ୍ଷା କରିବାର କିଛି ମାନେ ହୁଏ ନାହିଁ।

ଏତିକିବେଳେ ପ୍ରେତିନୀଟି ଆସି ଛିଡ଼ା ହେଲା। ଧୀରେ ଧୀରେ କହିଲା "ତାର ବି ଆଉ ଏଇଠି ପ୍ରେତ ଲୋକରେ ରହିବାକୁ ଇଚ୍ଛା ନାହିଁ। ଯୋଉ "ଛୁଆ, ଛୁଆ" ହେଉଥିଲି ସେଇ ଛୁଆ ଏବେ ମୋତେ ପାଶୋରି ଦେଇ ସଉତୁଣୀକୁ 'ମା' ବୋଲି ଡାକିଲାଣି। ମୁଁ ଆଉ କାହିଁକି ଅପେକ୍ଷା କରିବି ଯେ?"

ବ୍ୟବସାୟୀ ଭୂତଟି ପଚାରିଲା "ଏବେ କଣ କରିବା? ଆମ ସାଙ୍ଗରେ ଯୋଉମାନେ ମରିଥିଲେ, ସେମାନେ କିଏ କୁଆଡ଼େ ଯାଇ ଜନ୍ମ ନେଇ ଗଲେଣି। ନୂଆ ଭାବରେ ଜୀବନ ଆରମ୍ଭ କଲେଣି? କେତେ ଜଣ ନର୍କକୁ ଗଲେଣି—କେତେ ସ୍ୱର୍ଗ। ଆମେ ତ କୁଆଡ଼ିକି ହୋଇ ପାରିଲେ ନାହିଁ। ଏ କୂଳ ହେଲେ ନାହିଁ କି ସେ କୂଳ ହେଲେ ନାହିଁ।"

ଅଫିସର୍ ଭୂତଟି କହିଲେ "ବ୍ୟସ୍ତ ହେବାର କିଛି ନାହିଁ। ଯାହା ଘଟିବାର ତ ଘଟି ଯାଇଛି। ବୃଥା ଅନୁଶୋଚନାର ଲାଭ କଣ? ଚାଲ, ସମସ୍ତେ ଲିଙ୍ଗରାଜ ମନ୍ଦିରକୁ ଯିବା। ସେଇଠି ମହାଦେବଙ୍କ ପାଖରେ ମୋକ୍ଷ ପାଇଁ ପ୍ରାର୍ଥନା କରିବା।"

କିନ୍ତୁ ମୋକ୍ଷ କଣ ଏଡ଼େ ସହଜ କଥା। ତଥାପି ସମସ୍ତେ ଏଇ କଥାକୁ ସର୍ବସମ୍ମତି କ୍ରମେ ଗ୍ରହଣ କରିନେଲେ ଓ ଉଡ଼ି ଉଡ଼ି ଯାଇ ମନ୍ଦିର ବେଢ଼ାରେ ବସିଲେ।

ମହାଦେବଙ୍କ ତ ସବୁ ଭୂତପ୍ରେତ ସହଚର। ସେମାନେ ଏଇ ନୂଆ ଭୂତମାନଙ୍କୁ ଦେଖି ଖିଙ୍କାରି ଆସିଲେ। କହିଲେ "ତମେମାନେ କୁଆଡ଼େ ଆସିଲ ଇଆଡ଼େ?

ଏଇଠି ଅତୃପ୍ତ ପ୍ରେତାତ୍ମାଙ୍କର ସ୍ଥାନ ନାହିଁ। ଯାଅ ପଳାଅ ସବୁ।''

ଏମାନେ ଗୋଡ଼ ତଳେ ପଡ଼ି ବହୁତ ନେହୁରା ହେଲେ। ସେମାନଙ୍କୁ ବହୁତ ଖୋସାମଦ କଲେ, ପ୍ରଶଂସା ବାକ୍ୟରେ ତାଙ୍କୁ ପୋତି ପକେଇଲେ।

ଏତେ ସବୁ ପ୍ରାର୍ଥନା ପରେ ଜଣେ ଭୈରବ ମନରେ ଦୟା ଉଦ୍ରେକ ହେଲା। ସେ କହିଲେ ''ମୋକ୍ଷ ପାଇବା ଏତେ ସହଜ କଥା ନୁହେଁ। କେତେ ଲକ୍ଷ ଜନ୍ମ ପରେ ମନୁଷ୍ୟ ଜନ୍ମ। ସେଇ ମନୁଷ୍ୟମାନଙ୍କ ଭିତରେ କୋଟି କୋଟି ଲୋକଙ୍କ ଭିତରୁ ଜଣେ ଅଧେ ମୁକ୍ତି ପାଆନ୍ତି। ସେ କଥା ଛାଡ଼—ତମେ ଅବଶ୍ୟ ତପସ୍ୟା କରିପାର। ଯେହେତୁ ତମେ ଆଉଥରେ ମଣିଷ ଜନ୍ମ ହେବାର ସୁଯୋଗ ହରେଇ ଦେଇଛ ଖାଲି ଅତୃପ୍ତ ଭାବରେ ଅପେକ୍ଷା କରି କରି, ତମେ ଆଉ କେତେ ଯୁଗ ପର୍ଯ୍ୟନ୍ତ ମଣିଷ ହୋଇ ପାରିବ ନାହିଁ। ତେଣୁ ତମ ପାଇଁ ମୁଁ ଗୋଟାଏ କଥା କରିପାରେ। ଯେହେତୁ ତମେମାନେ ପ୍ରେତ ଓ ଅନ୍ଧାରରେ ରହିବାକୁ ଭଲପାଅ ମୁଁ ତମମାନଙ୍କୁ ଚେମେଣିଆ କରି ଦେଉଛି। ତମେ ଏଇ ମନ୍ଦିର ବେଢ଼ାରେ ତଳମୁଣ୍ଡ ଉପରଗୋଡ଼ ହୋଇ ଅନ୍ଧାରରେ ଲଟକି ରହି ତପସ୍ୟା କର—ଆଉ ଥରେ ମନୁଷ୍ୟ ଜନ୍ମ ନେବା ପର୍ଯ୍ୟନ୍ତ।

ଅଗତ୍ୟା ସେମାନେ ସେହିଦିନଠାରୁ ଚେମେଣିଆ ଭାବରେ ଲଟକିଛନ୍ତି ଲିଙ୍ଗରାଜ ମନ୍ଦିର ବେଢ଼ାରେ। କେତେକାଳ ଲଟକିବେ କିଏ ଜାଣେ ?

-୦-

# ବର୍ଣ୍ଣାନ୍ତର

'ଗୋପନୀୟ' ମାର୍କାଥିବା ଚିଠିଟି ପଢ଼ିସାରି ମୁଁ ସି.ବି.ଆଇ. ଇନ୍‌ସପେକ୍ଟର ମିଶ୍ରଙ୍କୁ ଚାହିଁ କହିଲି "ଏ ଅସମ୍ଭବ।"

—ଅସମ୍ଭବ ବି ବେଳେବେଳେ ସମ୍ଭବ ହୋଇଥାଏ, ସାର୍! ଅନ୍ତତଃ ଆମମାନଙ୍କ କ୍ଷେତ୍ରରେ ଶତକଡ଼ା ଶହେ।

—ଆଶ୍ଚର୍ଯ୍ୟ, ମୁଁ ବିଶ୍ୱାସ କରିପାରୁନି ଶ୍ୟାମାପଦ ଯେ—

ମୋ ମୁହଁରୁ କଥା ଛଡ଼େଇ ନେଇ ଇନ୍‌ସପେକ୍ଟର କହିଲେ—

ଛାଡ଼ନ୍ତୁ ସାର୍। ଏଟା ତ ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ନୁହେଁ। ମହା ସାକ୍ଷୀ ପ୍ରମାଣର ପ୍ରଶ୍ନ। ଆପଣ ଦୟାକରି ତାର ପର୍ସନେଲ ଫାଇଲଟି ମଗାନ୍ତୁ ଏବଂ ମୋତେ ଅନୁମତି ଦିଅନ୍ତୁ ସେ ସବୁ ଯାଞ୍ଚ କରିବା ପାଇଁ।"

ଉପାୟ ନାହିଁ। ଅଗତ୍ୟା ଶ୍ୟାମାପଦ ସଂକ୍ରାନ୍ତୀୟ ସମସ୍ତ ଫାଇଲ ମୁଁ ତାଙ୍କୁ ହସ୍ତାନ୍ତର କରି ଦେଲି।

ଶ୍ୟାମାପଦ ମାରାଣ୍ଡି। ଆଜକୁ ସାତବର୍ଷ ତଳେ ମୁଁ ଖଡ଼ଗପୁର ରେଲୱେ ଅଫିସରେ ଏପ୍ରେଣ୍ଟିସ୍ ଅଫିସର ଥିବାବେଳେ ସେ ସେଠାରେ ଜଏନ କରିଥିଲା। ତା ପରେ ମୋର ବଦଳି ସଙ୍ଗେ ସଙ୍ଗେ ସେ ମଧ୍ୟ ସ୍ୱଇଚ୍ଛାରେ ଖୋର୍ଦ୍ଧାରୋଡ୍ ସେକ୍‌ସନକୁ ବଦଳି ହୋଇ ଆସିଥିଲା। ସେଇ ଦିନଠାରୁ ସେ ଏଠାରେ ଅଛି।

ଶ୍ୟାମାପଦ ଶ୍ୟାମଳ ରଙ୍ଗର ପିଲାଟିଏ। ମଧ୍ୟମ ଧରଣର ସ୍ୱାସ୍ଥ୍ୟ। ଅତି ଭଦ୍ର ଓ ମାର୍ଜିତ। କାମ କରିବାରେ ମଧ୍ୟ ବେଶ୍ ଦକ୍ଷ। ଏଇ ସାତବର୍ଷ ଭିତରେ ସେ ଥରଟିଏ ଡ଼େରିରେ ଆସିଥିବାର ମୋର ସ୍ମରଣ ହେଉନାହିଁ। ଦିନଟିଏ ବି ସେ କମେଇ କରି ନାହିଁ। ଯାହା କାମ ଦେଲେ ବି ସେ ଚୁପ୍‌ଚାପ୍ ନିର୍ବିବାଦରେ କରିଦିଏ। ପ୍ରତିବାଦ କରେ ନାହିଁ। ଦିନେ ଦିନେ ଡ଼େରି ହୋଇଯାଏ। ରାତି ସାତ ବାଜିଯାଏ। ତଥାପି ମଧ୍ୟ ଦିନେ ସେ ପ୍ରତିବାଦ କରି ନାହିଁ। ମୋର ଓ ମୋ ଉପରିସ୍ଥ ଅଫିସରଙ୍କର ସେ ସବୁଠାରୁ ପ୍ରିୟପାତ୍ର।

ଅଧିକାଂଶ କେନ୍ଦ୍ରୀୟ ବିଭାଗରେ ୟୁନିୟନ ଓ ଏସୋସିଏସନର ଦୌରାତ୍ମ୍ୟ ପରି ରେଳ ବିଭାଗରେ ମଧ୍ୟ ସେମାନଙ୍କର କ୍ଷମତା ଅପ୍ରତିହତ। ତେଣୁ କାହାକୁ ବିନା ଓଭରଟାଇମ୍‌ରେ କାମ କରାଇବା ଦୁଃସାଧ୍ୟ କାର୍ଯ୍ୟ। ଏଣେ ପୁଣି ଓଭରଟାଇମ୍‌ର ଖର୍ଚ୍ଚ ନିର୍ଦ୍ଦିଷ୍ଟ। ତେଣୁ ସେତିକି ଭିତରେ କାମ କରେଇ ନେବା ଏକ ଦୁରୁହ କଥା। କିନ୍ତୁ ଶ୍ୟାମାପଦ ସେଥିପାଇଁ ମଧ୍ୟ କେବେ କିଛି କହେନାହିଁ। ୟୁନିଅନ କହେ "ଅଫିସର ଲୋଗୋଁକା ଚାମ୍‌ଚା"। ତାର ନିଜସ୍ୱ ଆସୋସିଏନର ବନ୍ଧୁମାନେ କହନ୍ତି, 'ଶଳା,

ବୁଦ୍ଧବକ୍। ଭାବିଛି ଏମିତି ଅଫିସରଙ୍କୁ ତେଲେଇ ପ୍ରମୋସନ ମାରିନେବ। ଶଳାକୁ ପଦ୍ମଶ୍ରୀ ମିଳିଯିବ ଯେମିତି !'

ଶ୍ୟାମାପଦ ସମସ୍ତଙ୍କ କଥାଶୁଣେ। ରାଗ କରେ ନାହିଁ। ହସିଦିଏ। ଆସୋସିଏସନକୁ ନିୟମିତ ଚାନ୍ଦା ଦିଏ। ଆସୋସିଏସନ ମିଟିଂକୁ ଯାଇ ନେତାମାନଙ୍କର ଭାଷଣ ଶୁଣେ। ଧର୍ମଘଟ ଡାକରା ହେଲେ ଧର୍ମଘଟ ବି କରେ। ହେଲେ ଆଗକୁ ବାହାରେ ନାହିଁ।

କାହାରି କଳି କଜିଆରେ ସେ ପଶିବାକୁ ଚାହେଁନା। କାହା ସାଙ୍ଗରେ ବି ଏମିତି ଖୁବ୍ ଗଭୀର ଭାବଦୋସ୍ତି ନାହିଁ। ସେ ଭଲ, ତା ପରିବାର ଭଲ କି ତା ଚାକିରୀ ଭଲ।

ମୋର ଯେ ପ୍ରଥମେ ସନ୍ଦେହ ହୋଇ ନଥିଲା ତା ନୁହେଁ। କିନ୍ତୁ ବର୍ତ୍ତମାନ ତ ସମସ୍ତେ ସଭ୍ୟ ହୋଇଗଲେଣି। ପାଠ ପଢୁଆ ହେଲେଣି। କିଏ କାହାକୁ କହିପାରିବ ସେ କୋଉ ଜାତିର ? ଜାତିଟା ତ ଆଉ ମୁହଁରେ ଲେଖା ହୋଇନାହିଁ।

ତଥାପି କେମିତି ସନ୍ଦେହ ହୋଇଥିଲା ଏ ଆଦିବାସୀ ପିଲା ନୁହେଁ। ତାର ସେମିତି ଫିଚର୍ ତ ଜମା ନାହିଁ। ମୁଁ ତାକୁ ପଚାରିଥିଲି ମଧ୍ୟ। ସେ କହିଥିଲା ''ସାର୍, ମୋ ବାପା ଆଦିବାସୀ, କିନ୍ତୁ ମା ଜଣେ ଉଚ୍ଚ ଜାତିର ଝିଅ ଥିଲେ। ମୁଁ ଅନେକଟା ମୋ ମାଙ୍କ ପରି ଦେଖିବାକୁ।''

ତା ପରେ ମୁଁ ତାକୁ ଆଉ ଅବିଶ୍ୱାସ କରି ନଥିଲି। ବାଙ୍କୁଡ଼ା ଜିଲ୍ଲାରେ କୋଉ ଗୋଟାଏ ଗାଁରେ ତାର ଘର। ବର୍ଷକୁ ପୂଜା ସମୟରେ ସେ ଥରକ ପାଇଁ ଘରକୁ ଯାଏ। କିନ୍ତୁ ତା ଘରକୁ ତାର କୌଣସି ବନ୍ଧୁବାନ୍ଧବ ଆସିବାର ମୁଁ ଦେଖିନାହିଁ କି ଜାଣି ନାହିଁ। ସେ ଯେମିତି ସବୁ ବନ୍ଧନ କାଟି ଦେଇଛି !

ସେଦିନ ଆଉ ମୋର କାମରେ ଜମା ମନ ଲାଗିଲା ନାହିଁ। ପିଲାଟିକୁ ମୁଁ ଅତ୍ୟଧିକ ଭଲ ପାଇ ବସିଥିଲି ତାର କର୍ମକୁଶଳତା ଓ ଶୃଙ୍ଖଳିତ ବିନୀତ ବ୍ୟବହାର ଯୋଗୁଁ।

ସି.ବି. ଆଇ. ଅଫିସରଙ୍କୁ ତାର ଫାଇଲ ଦେଇ ଦେଇଥିବା ଯୋଗୁଁ ମଧ୍ୟ ମୋତେ କେମିତି ଦୋଷୀ ଦୋଷୀ ଲାଗୁଥିଲା। ଗୋଟିଏ ଗିଲଟି କମ୍ପଲେକ୍ସ ମୋତେ ବିବ୍ରତ କରି ଦେଉଥାଏ ଯଦିଓ ତାକୁ ଏ ବିଷୟରେ କିଛି କହିବାର କଥା ନୁହେଁ। ତଥାପି ମୁଁ ତାକୁ ଡାକି କହିଲି ''ଶ୍ୟାମାପଦ, ଆଜି ସନ୍ଧ୍ୟା ସାତଟାରେ ତମେ ମୋତେ ଷ୍ଟେସନରେ ଦେଖା କରିପାରିବ ? ଟିକିଏ ଜରୁରୀ କାମ ଅଛି।'' ମୁଁ ଚାହୁଁ ନଥିଲି ଲୋକେ ଜାଣନ୍ତୁ ଯେ ମୁଁ ତାକୁ ଡାକି କଥା ହେଉଚି ବୋଲି। ଷ୍ଟେସନରେ ଦେଖା ସାକ୍ଷାତ୍ ଯେମିତି ଆକସ୍ମିକ। ସେ ତାର ସ୍ୱାଭାବିକ ବିନୟ ସହିତ କହିଲା ହଁ ସାର। ମୁଁ ଠିକ୍ ସାତଟା ବେଳକୁ ଷ୍ଟେସନରେ ଥିବି।''

—''ମୁଁ ବୁକ୍ ଷ୍ଟଲ ପାଖରେ ଥିବି, ବୁଝିଲ।''

ମୁଁ ଜାଣେ ସେ ଅତିମାତ୍ରାରେ ଶୃଙ୍ଖଳାପ୍ରିୟ। ସେ ନିଶ୍ଚୟ ଯେ ଛଅଟା ପଇଁଚାଳିଶକୁ ସେଠାରେ ପହଞ୍ଚି ଯାଇଥିବ ଏଥିରେ ଅନ୍ୟଥା ହେବାର ନାହିଁ। ତେଣୁ ସାଢ଼େ ଛଅଟା ବେଳକୁ ଯାଇ ସେଠାରେ ପହଞ୍ଚିଗଲି। ମୁଁ ପାଞ୍ଚ ଦଶ ମିନିଟ୍ ଗୋଟାଏ ପତ୍ରିକା ଦେଖୁ ଦେଖୁ ପଛରୁ ଶୁଣିଲି 'ନମସ୍କାର ସାର୍।'' ଉପସ୍ଥିତ କିଛି କୁଲି, କେତେଜଣ ଟି.ଟି.ଆଇ ତଥା ଆସିଷ୍ଟେଣ୍ଟ ଷ୍ଟେସନମାଷ୍ଟର ଗହଣରେ ସେ ଛିଡ଼ା ହୋଇଛି। କିଛି ସମୟ ସେମାନଙ୍କ ସାଙ୍ଗରେ ଏଣ୍ଣୁତେଣ୍ଣୁ ଦି' ପଦ କଥା ହୋଇ ମୁଁ ପଚାରିଲି ''ଶ୍ୟାମାପଦ! ତମର କିଛି କାମ ଅଛି ନା କଣ?'' 'ନାଇଁ ସାର୍।' ''ତେବେ ଆସନ୍ତୁ ଟିକେ ପ୍ଲାଟଫର୍ମ ସେପଟେ ବୁଲି ଆସିବା।'' ଆମେ ଟିକିଏ ଦୂରକୁ ଚାଲିଗଲା ପରେ ପଛରୁ କମେଣ୍ଟ ଶୁଣାଗଲା ''ଚାଲିଲା ଶଳା ଚାମ୍‌ଚା। ବାଘ ପଛରେ ଭେରେଣ୍ଡା।''

ପ୍ଲାଟଫର୍ମର ଗୋଟିଏ କଟକୁ ଗଲା ପରେ ମୁଁ ଟିକେ ସମୟ ଛିଡ଼ା ହୋଇ ସିଗାରେଟ୍‌ଟିଏ ଲଗେଇ କିଛି ସମୟ ଚିନ୍ତା କଲି କଣ କହିବି। ତାପରେ ମନ ସ୍ଥିର କରି କହିଲି ''ଶ୍ୟାମାପଦ, ମୁଁ ଯାହା ପଚାରିବି, ତମେ ସତ କହିବ?'

''ହଁ ସାର୍।''

—ତମେ କଣ ସାନ୍ତାଳ?

'ନା' କହୁ କହୁ ସେ ଅଟକି ଯାଇ ନିରୁତ୍ତର ରହିଲା।

—ଦେଖ, ମୋତେ ବିଶ୍ୱାସ କର। ସତ କୁହ, ତମ ନାମରେ ସି.ବି.ଆଇ. ଅନୁସନ୍ଧାନ ଆରମ୍ଭ ହୋଇଗଲାଣି। ମୋତେ ମିଛ କୁହ ନାହିଁ।

ହଠାତ୍ ସେ ପ୍ଲାଟଫର୍ମର କଠିଣ ଚଟାଣ ଉପରେ ଲମ୍ବ ହୋଇ ଶୋଇ ପଡ଼ି ମୋ ପାଦ ଦୁଇଟାକୁ ଜାବୁଡ଼ି ଧରି କାନ୍ଦି କାନ୍ଦି କହିଲା ''ମୋତେ ବଞ୍ଚାନ୍ତୁ ସାର୍, ମୋତେ ରକ୍ଷା କରନ୍ତୁ ସାର୍।''

ଆରେ, ଏକଣ କରୁଛ, ଉଠ, ଆରେ ଉଠ। ଏଠି କିଏ ଦେଖିଲେ କଣ ଭାବିବ? ତମେ ମୋ ଚାକିରୀଟା ନବ ନା କଣ? ଉଠ ଉଠିପଡ଼।'' ମୁଁ ସାମାନ୍ୟ ରୁକ୍ଷ ସ୍ୱରରେ କହିଲି।

ସେ ବହୁ କଷ୍ଟରେ ମୋ ପାଦ ଛାଡ଼ି ଉଠି ବସିଲା। ତା ପରେ ଦୁଇ ହାତଯୋଡ଼ି ମୋ ସାମ୍ନାରେ ଛିଡ଼ା ହୋଇ ରହିଲା। ଆଖିରୁ ତାର ଧାର ଧାର ହୋଇ ଲୁହ ବୋହି ଯାଉଥାଏ। ମୁଁ ତା ମୁହଁକୁ ଚାହିଁ ପାରୁ ନ ଥାଏ। ଧୀରେ ଧୀରେ ଆହୁରି ଅନ୍ଧାର ଭିତରକୁ ଆଗେଇ ଗଲି ମୁଁ। ସେଇ ଅନ୍ଧାର ଭିତରେ ଛିଡ଼ା ହୋଇ କହିଲି ''ଏଥର ଠିକ୍ ଠିକ୍ ସତକଥା କହ। ଯଦି ପାରିବି ତ ଚେଷ୍ଟା କରିବି ତମକୁ ବଞ୍ଚେଇବାକୁ— ଯଦିଓ ତାହା ମୋ ସାଧ ବାହାରେ।''

ସେତେବେଳକୁ ସେ ପ୍ରକୃତିସ୍ଥ ହୋଇ ସାରିଥାଏ। ସେ ଶାନ୍ତ ସ୍ୱରରେ କହିଲା ''ସାର୍, ମୁଁ ଆପଣଙ୍କ ପାଖରେ ସବୁ ସତ କହିବି। ମୋତେ ଆପଣ ଏତେ

ସ୍ନେହ ଶ୍ରଦ୍ଧା ଦେଖେଇଛନ୍ତି। ତେଣୁ ଆଉ ମୁଁ କିଛି ଲୁଚାଇବାକୁ ଚାହେଁ ନା। ମୋର ପ୍ରକୃତ ନାମ ସାର୍ ଶ୍ୟାମାପଦ ମୁଖାର୍ଜୀ, ଶ୍ୟାମାପଦ ମାରାଣ୍ଡି ନୁହେଁ।

ମୋର ବାପା ଗୋଟାଏ ପ୍ରାଇଭଟ୍ ହାଇସ୍କୁଲରେ ମାଷ୍ଟର ଥିଲେ। ଆଜକୁ ବର୍ଷେ ହେବ ସେ ଚାଲି ଗଲେଣି ! ମୋ ଉପରେ ଜଣେ ଭଉଣୀ ଓ ତଳେ ତିନୋଟି ଭଉଣୀ ଓ ଜଣେ ଭାଇ। ବାପା ବହୁ କଷ୍ଟରେ ତାଙ୍କର ଯଥା ସର୍ବସ୍ୱ ଦେଇ ବଡ଼ ଭଉଣୀର ବାହାଘର କରେଇ ଦେଇଥିଲେ। ଆମର ସାର୍ ବାଡ଼ି ଗୋବରେ ଗୋଟେ ଜମି ନାହିଁ କି ଘର ନାହିଁ। ଭାଇଭାଗ ଗଣ୍ଡଗୋଳରେ ପଶି ପାରିଲେନି ବୋଲି ବାପା ବିରକ୍ତ ଓ ନିରୁପାୟ ହୋଇ ସବୁ ପୈତୃକ ସମ୍ପତ୍ତିକୁ ତ୍ୟାଗ କରି ଚାଲି ଆସିଥିଲେ ଏଇ ପ୍ରାଇଭେଟ୍ ହାଇସ୍କୁଲରେ ଶିକ୍ଷକତା କରିବାକୁ। ପ୍ରଥମେ ସେଇଟା ମାଇନର ସ୍କୁଲ ଥିଲା। ପରେ ପରେ ତା ହାଇସ୍କୁଲରେ ପରିଣତ ହେଲା।

ବାପା ଟିକିଏ ବେଶୀ ବୟସରେ ବିବାହ କରିଥିଲେ। ସେ ପୁଣି ଜଣେ ଦରିଦ୍ର ବିଧବା ବ୍ରାହ୍ମଣୀର ଏକମାତ୍ର ଝିଅକୁ। ତେଣୁ ମୋର ମାମୁଁ ଘର ବୋଲି କିଛି ନଥିଲା। ପିତୃକୁଳକୁ ବାପା ତ୍ୟାଗ କରିଥିଲେ ଓ ମାତୃକୁଳରେ କେହି ନଥିଲେ। ଏମିତି ଅବସ୍ଥାରେ ଆମେ କୌଣସି ମତେ ଚଳି ଆସୁଥିଲୁ। ମୋର ନବମଶ୍ରେଣୀ ବେଳକୁ ବାପାଙ୍କୁ ନୋଟିସ ଆସିଲା ଅବସର ଗ୍ରହଣ କରିବାକୁ। କାରଣ ସ୍କୁଲ ଗଭର୍ଣ୍ଣିଂବଡ଼ିର ପ୍ରେସିଡ଼େଣ୍ଟଙ୍କର ଜଣେ ଶଳା ସେଇ ସ୍ଥାନରେ ନିଯୁକ୍ତି ପାଇଥିଲେ। ଅନେକ କୁହା ପୋଛା ଗୋଡ଼ଧରା ଫଳରେ ମାତ୍ର ଦୁଇଟି ବର୍ଷ ପାଇଁ ତାଙ୍କୁ ଏକ୍ସଟେନ୍ସନ ମିଳିଥିଲା। ପୁଅ ମେଟ୍ରିକୁଲେସନ ପାଶ୍ କରିଯିବା ପର୍ଯ୍ୟନ୍ତ ତାଙ୍କୁ ସମୟ ଦିଆଗଲା।

ସେଇଦିନ ଆମ ଘର ଉପରେ ଯେମିତି ଏକ ବଜ୍ରପାତ ହୋଇଗଲା। ତାର ଠିକ୍ ତିନି ଚାରିଦିନ ପରେ ସେ ମୋତେ ଡାକି କହିଲେ "ଦେଖ୍ ଶ୍ୟାମା, ମେଟ୍ରିକୁଲେସନ୍ ପାଶ ପରେ ଆମ ସମୟରେ ଚାକିରୀ ମିଳି ଯାଉଥିଲା। କିନ୍ତୁ ଏବେ ଆଉ ମିଳିବାର ଆଶା ନାହିଁ। ମିଳିଲେ ବି ଯେ ତୁ ସେ ଯୋଗ୍ୟତା ପରୀକ୍ଷା ଦେଇ ତାହା ହାସଲ କରି ପାରିବୁ ଏ ବିଶ୍ୱାସ ମୋର ନାହିଁ। ମୁଁ ଏଥର ଠିକ୍ କରି ନେଇଛି। ତୋ ନାମ ଓ ତୋ ବାପର ନାମ ମୁଁ ବଦଳେଇ ଦେବି। ତୁ ଏସବୁ ବିଷୟ କାହାରିକୁ କହିବୁ ନାହିଁ।" ସେହିଦିନଠାରୁ ସ୍କୁଲ ଖାତାରେ ଅଦଳ ବଦଳ କରି ମୋ ନାମ ଲେଖିଲେ ଏମ୍. ଶ୍ୟାମାପଦ। ପି: ଘାସିରାମ ମାରାଣ୍ଡି।

ଆମ ଘର ପାଖରେ ଗୋଟାଏ ସାନ୍ତାଳ ପରିବାର ରହୁଥିଲେ। ପୁଅ ବୋହୂ ଅନ୍ୟଆଡେ ଚାଲିଗଲା ପରେ ସେଇ ଘରେ ଏକୁଟିଆ ରହୁଥିଲା ସେ ଘରର ବୁଢ଼ା ଘାସିରାମ। ବାପାଙ୍କୁ ସେ ଖୁବ ମାନ୍ୟ କରୁଥିଲା।

ସେଇଦିନ ସନ୍ଧ୍ୟାବେଳେ ବାପା ତା ପାଖକୁ ଯାଇ କହିଥିଲେ "ପୁଅ ବୋହୂ ଚାଲିଗଲେ ବୋଲି ମନ ଦୁଃଖ କରୁଛୁକିରେ ? ଏଇ ନେ, ମୋ ପୁଅକୁ ତୋତେ ଦେଇଦେଲି। ଆଜିଠାରୁ ସେ ତୋର ପୁଅ।"

ସରଳ ଓ ମୂର୍ଖ ପୁଣି ଉଦାର ଓ ମହତ୍ ଘାସିରାମ ମାରାଣ୍ଡି ବୁଝି ପାରି ନ ଥିଲା ଏ ଚକ୍ରାନ୍ତକୁ। ସେ ଆନନ୍ଦରେ ବିହ୍ୱଳ ହୋଇ ଉଠିଥିଲା। ଯଦିଓ ପୂର୍ଣ୍ଣ ଭାବରେ ବିଶ୍ୱାସ କରି ପାରି ନ ଥିଲା ଏକଥାକୁ। କିନ୍ତୁ ତାର ସରଳ ମନରେ ସେଇଦିନଠାରୁ ସେ ମୋତେ 'ପୁଅ' ଭାବରେ ହିଁ ଗ୍ରହଣ କରି ନେଇଥିଲା। ଠାକୁରଙ୍କ ଧଣ୍ଡା ଛୁଇଁ କେବେ ମିଥ୍ୟା କଥା କହି ପାରେ ? ଅନ୍ତତଃ ମାଷ୍ଟ୍ର ମହାଶୟ ପାରିବେ ନାହିଁ ଏହା ତାର ଅଖଣ୍ଡ ବିଶ୍ୱାସ।

ଏହିପରି ଭାବରେ ଶ୍ୟାମପଦ ମୁଖାର୍ଜୀ ଶ୍ୟାମାପଦ ମାରାଣ୍ଡିରେ ରୂପାନ୍ତରିତ ହୋଇଗଲା।

ସେଇଦିନ ରାତିରେ ବାପା ମାଙ୍କୁ କହୁଥିବାର ଶୁଣିଲି "ବୁଝିଲ, ନନ୍ଦାର ମା, ପୂର୍ବ ଜନ୍ମର କର୍ମଫଳ ଇଏ। ବ୍ରାହ୍ମଣମାନେ, କେବଳ ବ୍ରାହ୍ମଣ କାହିଁକି ସବୁ ଉଚ୍ଚ ଜାତିମାନେ ଶହ ଶହ ବର୍ଷ ଧରି ଘୋର ଅନ୍ୟାୟ କରି ଆସିଲେ, ତାର ଫଳ ତ ଜଣକୁ ଭୋଗିବାକୁ ପଡ଼ିବ। ଆଜି ନିଜ ହାତରେ ନିଜ ପୁଅର ବ୍ରାହ୍ମଣତ୍ୱ ଘୁଞ୍ଚାଇ ଦେଲି। ଏକରକମ ଭଲ ହେଲା। ବ୍ରତୋପନୟନର ଖର୍ଚ୍ଚ ତ ବଞ୍ଚିଗଲା !"

ଏହିପରି ଭାବରେ ପୈତୃକ ସମ୍ପତ୍ତିକୁ ଆକାତରରେ ତ୍ୟାଗ କରି ବିନା ଯୌତୁକରେ ଜଣେ ଦରିଦ୍ର ବ୍ରାହ୍ମଣୀର କନ୍ୟାକୁ ଉଦ୍ଧାର କରିଥିବା ନୀତିନିଷ୍ଠ ବ୍ରାହ୍ମଣଟିଏ, ନିର୍ବିବାଦରେ ତାର ନୀତି ବିସର୍ଜନ ଦେଇ ଦେଇଥିଲା। ଜୀବନର ସଂଗ୍ରାମ ଭିତରେ ବଞ୍ଚି ରହିବା ପାଇଁ— ସାମାନ୍ୟ ଭାତ ଲୁଣର ବିନିମୟରେ।

—ଗରିବ ଘରେ ଜନ୍ମ ନେବାର ଦୁର୍ଭାଗ୍ୟଠୁ ବଳି ଦୁର୍ଭାଗ୍ୟ ଆଉ କିଛି ନୁହେଁ ସାର୍! ଆପଣ ଜାଣି ପାରିବେ ନାହିଁ ଦିନ ଦିନ ଧରି ଅର୍ଦ୍ଧ ଅନାହାର ଅର୍ଦ୍ଧାବସ୍ତ୍ରାବୃତ ହୋଇ ଜୀବନ କାଟିବାର କି ଯନ୍ତ୍ରଣା। ସେଇ ଚଉଦ ପନ୍ଦରବର୍ଷର କୋମଳ ବୟସରେ ମୁଁ ବୁଝି ପାରିଥିଲି, ଆଜିକାର ସମୟରେ ବଞ୍ଚି ରହିବାକୁ ଗଲେ ଛଳନା କରିବାକୁ ପଡ଼ିବ, ଅନ୍ୟାୟ କରିବାକୁ ପଡ଼ିବ, ନୀତି, ନ୍ୟାୟ ପରାୟଣତା, ସତତାକୁ ବଳି ଦେବାକୁ ପଡ଼ିବ।

ତଥାପି ସାର, ଏଇ ଗୋଟିକ ଛଳନା ବ୍ୟତିତ ମୁଁ ଅନ୍ୟାୟକୁ ଆଜି ସୁଦ୍ଧା ପ୍ରଶ୍ରୟ ଦେଇ ପାରିନାହିଁ। ଏଇଟାକୁ ମୋର ସଂସ୍କାର କହି ପାରିନ୍ତି;ଦୁର୍ବଳତା କହି ପାରନ୍ତି ବା ଭୀରୁତା ମଧ୍ୟ କହି ପାରନ୍ତି। ହଁ, ତା ପରର ଘଟଣା ସଂକ୍ଷିପ୍ତ। ମୁଁ ମେଟ୍ରିକୁଲେସନ୍‌ରେ ଫାଷ୍ଟ ଡ଼ିଭିଜନରେ ପାଶ୍ କଲି ଓ ତା ପରବର୍ଷ ହିଁ କୋଟାରେ ଚାକିରୀ ମିଳିଗଲା ଏଇ ରେଳବାଇ ବିଭାଗରେ। ହଁ ସାର୍ ଆଉ ଗୋଟାଏ କଥା।

ମୁଁ ଚାକିରୀ କଲାଦିନୁ ନିୟମିତ ଭାବରେ ପଚାଶଟଙ୍କା ମୋତେ ତାର 'ସଂଜ୍ଞା' ଦେଇଥିବା ଦ୍ୱିତୀୟ ପିତାଙ୍କୁ ପଠାଇ ଆସୁଛି ଏବଂ ସଯତ୍ନରେ ସେଇ ମନିଅର୍ଡରର ରସିଦଗୁଡ଼ିକ ସଂଗ୍ରହ କରି ରଖିଛି ।

ଜାଣିଥିଲି, ମୁଁ ଦିନେ ନା ଦିନେ ଧରା ପଡ଼ିବି । ସେତେବେଳେ ଅନ୍ତତଃ ଏଇ ରସିଦଗୁଡ଼ିକ କିଛି କାମରେ ଲାଗି ପାରେ ।

ସତକୁ ସତ ଧରା ପଡ଼ିଗଲି । କିନ୍ତୁ ଗୋଟାଏ ସୁଖର କଥା ମୋର ଏ ଅବସ୍ଥା ଦେଖିବାକୁ ବାପା ଆଉ ନାହାନ୍ତି । ଭାବିଥିଲି ସାନଭାଇଟା ଯଦି ବି.ଏ. ଟା ପାଶ୍ କରି ଯାଇଥାନ୍ତା, ଅନ୍ତତଃ ଟ୍ୟୁସନ କରି କିଛିଦିନ ସମ୍ଭାଳି ନେଇଥାନ୍ତା । ମୁଁ ଭଉଣୀମାନଙ୍କ ବାହାଘରଟା ସାରି ଦେଇଥାନ୍ତି, ମୋ ରୋଜଗାରରେ । ତା ହେବାର ନୁହେଁ ।

ତେବେ ସାର୍, ମୋର ଗୋଟିଏ ଅନୁରୋଧ ରଖିବେ । ଇନ୍‌ସପେକ୍ଟର ବାବୁଙ୍କୁ କହିବେ ଥରେ ମୋର ସେଇ ରସିଦଗୁଡ଼ାକ ଯାଞ୍ଚ କରି ନେବେ ତାହା ସତ୍ୟ କି ମିଥ୍ୟା । ମୋର ତ ନିଜ ସପକ୍ଷରେ ସଫେଇ ଦେବାର ଆଉ କିଛି ନାହିଁ ।''

ତାର ଦୁଇମାସ ପରେ ଇନ୍‌ସପେକ୍ଟର ଅଫିସରେ ଆସି ପହଞ୍ଚିଲେ । ମୁଁ ତାଙ୍କୁ ସପ୍ରଶ୍ନ ଦୃଷ୍ଟିରେ ଚାହିଁଲି । ସେ ଅନ୍ୟମନସ୍କ ହୋଇ ସ୍ୱଗତୋକ୍ତି କଲା ପରି ଛାତକୁ ଚାହିଁ କହିଲେ'' ତିନୋଟି ଝିଅ । ତେଇଶ, ଉଣେଇଶ, ଚଉଦ । ପୁଅଟି ସତର ବର୍ଷର । ମା ଷାଠିଏ କି ସତୁରି କେଜାଣି । ଓଳିଏ ଖାଇଲେ, ଆର ଓଳିକୁ ଓପାସ । ମରିଯିବେ ସମସ୍ତେ ।'' ତା ପରେ କିଛି ସମୟ ନୀରବ ରହି କହିଲେ ''ବୁଢ଼ାଟି କିନ୍ତୁ ବେଶ୍ ଟଗଡ଼ା ଅଛି । ପଚାଶଟଙ୍କାରେ ଲୁଣ, ତେଲ, ଦୋକ୍ତା, ମହୁଲି ଖର୍ଚ୍ଚ ଉଠି ଯାଉଛି । ଘରେ ତ ଭାତ ଅଛି । ବୁଢ଼ା ମଉଜରେ ଅଛି । କହିଲା ହଁ, ମୋ ପୁଅ ନୁହେଁ ଆଉ କଣ ? ନିଜ ପୁଅ ତ ଛାଡ଼ି ପଳେଇଲା ଆଜିକୁ ବାରବର୍ଷ ହେଲା ଯେ ଦିନେ ବି ଟଙ୍କାଏ ପଠାଇ ନାହିଁ କି ବୁଢ଼ା ମଲା କି ହଜିଲା ଖବର ନେଉନାହିଁ ।' ଭଲ ବୁଢ଼ାଟିଏ । ନିର୍ମାୟା— ସତ୍ ପୁରୁଷଟିଏ ।''

ଇନ୍‌ସପେକ୍ଟର ମିଶ୍ର ପୁଣି ନୀରବ ରହିଲେ ।

ମୁଁ ପଚାରିଲି ''ଆପଣ କାହା କଥା କହୁଛନ୍ତି ? ଆମର ଏଇ ଶ୍ୟାମାପଦ ମୁ... ମୋ ମୁହଁରୁ କଥା ଛଡ଼େଇ ନେଇ ସେ କହି ଉଠିଲେ— କିଏ ଶ୍ୟାମାପଦ ମୁଖାର୍ଜୀ ? ମୁଁ ତ ସେମିତି କୋଉ ଲୋକକୁ ଚିହ୍ନେ ନାହିଁ କି ଜାଣେ ନାହିଁ ।''

ତା ପରେ ଇନ୍‌ସିପେକ୍ଟର ମିଶ୍ର ହଠାତ୍ ତଡାକ୍ କରି ଚେଆର ଉପରୁ ଉଠି ପଡ଼ିଲେ । ସଜୋରେ ଚଉକିଟିକୁ ପଛକୁ ଠେଲି ଦେଇ ଏବଂ ମୋ ଆଡ଼କୁ ନ ଚାହିଁ ଲମ୍ୱା ଲମ୍ୱା ପଦକ୍ଷେପରେ ଦଗଦଗ ହୋଇ ବାହାରି ଗଲେ ବାହାରକୁ ।

-୦-

# ଭସା ବାଦଲର ଛାଇ

ଭୋର୍ ପାଞ୍ଚଟାବେଳକୁ ନିଦ ଭାଙ୍ଗିଲା ଶୋଭେଶର। ଏମିତିରେ ସକାଳ ସାତଟା ଆଗରୁ ଉଠେନାହିଁ କିନ୍ତୁ ଟ୍ରେନରେ ଗଲାବେଳେ ତାକୁ ଭଲକରି ନିଦ ହୁଏ ନାହିଁ। ତାର ସବୁବେଳେ ଭୟ ସେ ଶୋଇଲାବେଳେ କିଏ ତା'ର ଜିନିଷ ଚୋରାଇ ନେଇଯିବ ନାହିଁ ତ। ସେଥିପାଇଁ ସେ ମଝିରେ ମଝିରେ ଚମକି ଚମକି ଉଠିପଡ଼େ।

ଚାରିଆଡ଼ ଫର୍ଚ୍ଚା ହୋଇଆସିଲାଣି। ଦୂରର ଜିନିଷ ଯଦିଓ ପରିଷ୍କାର ଦିଶୁନାହିଁ, ପାଖର ଦୃଶ୍ୟ ବେଶ ସ୍ୱଷ୍ଟ ହୋଇଆସିଲାଣି। ସୂର୍ଯ୍ୟ ଉଠିବାକୁ ବେଶ୍ ଡେରି ଅଛି। ସେ ଜାଣେ ଉତ୍ତର ଭାରତରେ ସୂର୍ଯ୍ୟୋଦୟଟା ବେଶ୍ ଡେରିରେ ହୁଏ।

ସେ ଝରକା ଫାଙ୍କଦେଇ ଷ୍ଟେସନକୁ ଅନେଇଲା। ବଡ଼ ବଡ଼ ଅକ୍ଷରରେ 'ବୀନା ଜଙ୍କସନ୍' ଲେଖା ହୋଇଛି। ପ୍ରଥମେ ସେ କିଛି ଭାବିପାରି ନଥିଲା। ତେଣୁ ଧୀରେ ଧୀରେ ଉଠି ବାହାରକୁ ଆସିଲା କପେ ଚା' ପିଇବାପାଇଁ। ଟ୍ରେନ୍‌ର କବାଟ ପାଖରେ ଛିଡ଼ାହୋଇ ଚା' ବାଲାକୁ ଅପେକ୍ଷା କରିଛି, ହଠାତ୍ ତାର ମନେପଡ଼ିଲା ଏତେବେଳକୁ ତ ଝାନ୍‌ସି ପହଞ୍ଚିବାର କଥା। ଅନ୍ତତଃ ପାଖାପାଖି ହେବାର କଥା।

ଟ୍ରେନ୍ ଲେଟ୍ ଅଛି ବୋଧହୁଏ।

ଚାବାଲା ପାଖରୁ ଚା ନେଇ ସେ ପଚାରିଲା, 'ଟ୍ରେନ୍ କେତେ ଲେଟ୍ ଅଛି ?'

ଚାବାଲା ତା'ର ସ୍ୱଭାବସୁଲଭ ଭଙ୍ଗୀରେ କହିଲା, ''ଲେଟ୍ କାହେ ସାହେବ୍, ଟ୍ରେନ୍ ୟହାଁପର ରୁକ୍‌ଗୟୀହେ। ଝନ୍‌ସିମେ କର୍‌ଫ୍ୟୁ ହୈ। ଦଙ୍ଗା ଫସାଦ୍‌କେ ଲିୟେ।''

ଶୋଭେଶ ମନେ ମନେ ଆତଙ୍କିତ ହୋଇଉଠିଲା। କେତେ ଡେରିହେବ କେଜାଣି ? ସାରାଦିନଟା ଏଇଠି ରହି ଯାଇପାରେ।

ସକାଳୁ ସକାଳୁ ମନଟା ବିଗିଡ଼ିଗଲା। ଭାରତବର୍ଷରେ ଲୋକଙ୍କର ଏଇଆହିଁ ସ୍ୱଭାବ। କୌଣସି କିଛି ହେଲା ତ ଆଗେ ବସ୍ ପୋଡ଼ି — ନ ହେଲେ ଟ୍ରେନ୍ ରୋକିବା। ଲୋକଙ୍କର ସବୁ ରାଗ ଯେମିତି ଏଇ ବସ୍ ଓ ଟ୍ରେନ୍ ଉପରେ। କାହିଁକି କେଜାଣି ? ଯାତ୍ରୀମାନେ ଯେ କେତେ ହଇରାଣ ହରକତ ହେବେ ସେ କଥା କେହି ଭାବନ୍ତି ନାହିଁ କେମିତି ? କାହାର ଜରୁରୀ ଦରକାର ଥାଇପାରେ। କିଏ ରୋଗୀ ଥାଇପାରେ।

ମନଟା ବିସ୍ୱାଦରେ ଭରିଗଲା। ଆହୁରି କେତେଘଣ୍ଟା ଏମିତି ବସି ରହିବାକୁ ପଡ଼ିବ କେଜାଣି।

ସେ ଧୀରେ ଧୀରେ ନିଜ ସିଟ୍‌କୁ ଫେରିଲା। ବ୍ରସ୍ ଟୁଥ୍‌ପେଷ୍ଟ ନେଇ ଦାନ୍ତଘଷି ବାହାରିଲା। ସକାଳୁ ସକାଳୁ କେହି ଉଠିବା ଆଗରୁ ନିତ୍ୟକର୍ମଟା ସାରିଦେବାଟା ଭଲ। ଦୁଇଟାଯାକ ପାଇଖାନା ବନ୍ଦ। ସେ ମନେ ମନେ ଆହୁରି ଚିଡ଼ିଉଠିଲା।

ସକାଳଟାରୁ—! ଯାଃ, ଆଜି ଦିନସାରା କେମିତି କଟିବ କେଜାଣି ? ସିଏ ଭାବିଥିଲା ଏକା ଚାଲାକ୍ — ତା' ଠାରୁ ବି ଯେ ଆହୁରି ଚାଲାକ୍ ଲୋକେ ଅଛନ୍ତି—

ସେ ପାଇଖାନା ପାଖରେ 'କ୍ୟୁ'ରେ ଛିଡ଼ାହୋଇ ରହିଲା।

ଗୋଟାଏ ଉଷୁମୁଳିଆ ଗନ୍ଧରେ ନାକ ବନ୍ଦ ହୋଇ ଆସୁଥାଏ। ତଥାପି ସେ ଧୈର୍ଯ୍ୟଧରି ଅପେକ୍ଷା କଲା।

ଅନେକ ସମୟ ପରେ କବାଟ ଖୋଲିଲା। ବାହାରି ଆସିଲେ ଜଣେ ତନ୍ୱୀ ତରୁଣୀ। ବୟସ ଏକୋଇଶ ବାଇଶ। ଖୁବ୍ ଗୋରା ନ ହେଲେ ବି ଗୋରା କହିହେବ। ପରିଧାନରେ ସଲୱାର୍ ପଞ୍ଜାବୀ। ହାତରେ ଟୁଥ୍‌ବ୍ରସ, ସାବୁନକେଶ୍। ସାଧାରଣ ଭାବରେ ସୁନ୍ଦରୀ।

ପଲକରେ ଏତିକି ଦେଖିନେଇ ସେ ଟଏଲେଟ୍ ଭିତରକୁ ପଶିଲା।

ପ୍ରାୟ ଦଶ ମିନିଟ୍ ଭିତରେ ସେ ନିତ୍ୟକର୍ମ ସାରି ପଦାକୁ ବାହାରି ଆସିଲା। ସେତେବେଳକୁ ପାଇଖାନାପାଖରେ ବେଶ୍ ଛୋଟକାଟିଆ ଭିଡ଼ ଜମିଗଲାଣି।

ଷ୍ଟେସନରେ ନିତ୍ୟକର୍ମ ସାରିବା କଥା ନୁହେଁ। କିନ୍ତୁ କ'ଣ କରାଯିବ ? ଏତିକିବେଳେ ଯେ ଟ୍ରେନ୍‌ଟା ଏଇଠି ରହିବ କିଏ ଜାଣେ !

ଧୀରେ ଧୀରେ ସମଗ୍ର କଂପାର୍ଟମେଣ୍ଟରେ ଗହଳ ଚହଳ ଲାଗିଗଲା। ମୃଦୁସ୍ୱରରେ ଗୁଞ୍ଜନ ବଢ଼ିବାକୁ ଆରମ୍ଭ କଲା। ସମସ୍ତେ ଉଦ୍‌ବିଗ୍ନ, ସମସ୍ତେ ଆଶଙ୍କାକୁଳିତ। କେତେ ଡେରି ହେବ କେଜାଣି ? କେତେଜଣ ଗାର୍ଡ କଂପାର୍ଟମେଣ୍ଟକୁ ଖବର ବୁଝିବାପାଇଁ ଗଲେଣି— ଆଉ କେତେଜଣ ଷ୍ଟେସନ୍‌ମାଷ୍ଟର କୋଠରୀ ଆଡ଼କୁ।

— ନା, କିଛି ଠିକ୍ ନାହିଁ। କେତେବେଳେ ଛାଡ଼ିବ କେହି କହିପାରୁ ନାହାନ୍ତି।

କଳିଙ୍ଗ ଏକ୍‌ସପ୍ରେସ୍‌ରେ ଦିଲ୍ଲୀ ଯିବା ଓଡ଼ିଆ ଯାତ୍ରୀ କମ୍। ସମସ୍ତେ ନୀଳାଚଳକୁ ପ୍ରିଫର କରନ୍ତି। ସମୟ କମ୍ ଲାଗେ।

ଆଠଟାବେଳକୁ କିଛି କିଛି ଯାତ୍ରୀ ଓହ୍ଲେଇବା ଆରମ୍ଭ କଲେ। ଗ୍ୱାଲିଅର ଯାତ୍ରୀମାନେ ଓହ୍ଲେଇଗଲେ। ଯଦି ସୁବିଧା ହୁଏ ବସ୍ କିମ୍ବା ଟେକ୍‌ସିରେ ଚାଲିଯିବେ।

ଦଶଟାବେଳକୁ ଦେଖାଗଲା କଂପାର୍ଟମେଣ୍ଟରେ ତିନି ଚତୁର୍ଥାଂଶ ଯାତ୍ରୀ ଟ୍ରେନ୍ ଛାଡ଼ି ଚାଲିଗଲେଣି। ନୂଆ ଯାତ୍ରୀ ଉଠିବାର ପ୍ରଶ୍ନ ନାହିଁ।

ଶୋଭେଶ ସାଢ଼େ ସାତଟାବେଳକୁ ବାହାରକୁ ଜଳଖିଆ କିଣି ଯାଇଥିଲାବେଳେ ଶୁଣିଲା କେହି ଜଣେ କହୁଛି, ''ଏବେଠୁଁ ଖାଇବାଜିନିଷ କିଣି ରଖନ୍ତୁ ଆଜ୍ଞା। ପଛକୁ ପଛ ଟ୍ରେନ୍ ଆସିଗଲେ ଶେଷକୁ କିଛି ମିଳିବ ନାହିଁ। ଭୋକ ଉପାସରେ କେତେଦିନ ପଡ଼ିବେ କିଏ ଜାଣେ ? ଦୀନାକୁ ଦଙ୍ଗା ବ୍ୟାପିବାର ସମ୍ଭାବନା ରହିଛି। ସହରରେ କର୍‌ଫ୍ୟୁ ହୋଇଗଲେ ଷ୍ଟେସନକୁ କିଛି ଜିନିଷ ଆସିପାରିବ ନାହିଁ।''

ତରତରରେ ଶୋଭେଶ କୋଡ଼ିଏଟା ପୁରୀ, କିଛି ମିଠା, ବିସ୍କୁଟ ଦୁଇ ପ୍ୟାକେଟ୍ ଓ କିଛି ଫଳ କିଣିନେଲା। ୱାଟର ବଟ୍‌ଲ୍‌ରେ ପାଣି ଭର୍ତ୍ତି କରିନେଲା।

ପେଟେ ଖାଇଦେଇ ସେ ଗତ ରାତିରେ କଟକରୁ କିଣିଥିବା ଓଡ଼ିଆ ଖବରକାଗଜଟି ଆଉଥରେ ମନୋଯୋଗ ଦେଇ ପଢ଼ିବସିଲା। ଦି' ଟା ଡିଟେକ୍‌ଟିଭ୍ ଉପନ୍ୟାସ ରହିଛି ବେଗ୍ ଭିତରେ। ପରେ ତାକୁ ପଢ଼ିବ।

ଏଗାରଟାବେଳକୁ ସମଗ୍ର ଫଷ୍ଟକ୍ଲାସ ବଗିଟା ପ୍ରାୟ ଖାଲି ହୋଇଗଲା। ଦି ତିନିଟା କଂପାର୍ଟମେଣ୍ଟରେ ମାତ୍ର ପାଞ୍ଚ ଛଅଜଣ ଯାତ୍ରୀ ବାକୀ ରହିଲେ।

ଶୋଭେଶ ଖବରକାଗଜଟି ମୁହଁଉପରେ ରଖି ଶୋଇବାର ଚେଷ୍ଟାକଲା।

କଂପାର୍ଟମେଣ୍ଟରେ ସେ ଏକାକୀ।

ଏତିକିବେଳେ ଜଣେ ଝିଅର 'ଏକ୍‌ସକ୍ୟୁଜ୍‌ମି ପ୍ଲିଜ୍' ଶବ୍ଦରେ ସେ ଉଠିବସିଲା। ଆରେ ଏ'ତ ସକାଳର ସେଇ ଝିଅଟି। ଝିଅଟି ପରିଷ୍କାର ଓଡ଼ିଆରେ ପଚାରିଲା, "ଆପଣ କ'ଣ ଦିଲ୍ଲୀ ଯିବେ ?"

ଶୋଭେଶ ମୁଣ୍ଡ ଟୁଙ୍ଗାରି କହିଲା, "ହଁ"।

—ମୁଁ ବି ଦିଲ୍ଲୀ ଯିବି।କି ବିପଦ କହନ୍ତୁ ତ। ଏଇଠି କେତେ ସମୟ ଅପେକ୍ଷା କରିବାକୁ ପଡ଼ିବ କେଜାଣି ?

—ହଁ, ମୁଁ ବୁଝିଛି, କିଛି ଠିକ୍ ନାହିଁ। ହୁଏତ ସନ୍ଧ୍ୟା ହୋଇପାରେ ଛାଡୁ ଛାଡୁ।

—ସେତିକି ହେଲେ ତ ରକ୍ଷା। ତା'ପରେ କିଛି ସମୟ ଚୁପ୍ ରହି କହିଲେ— ମୋତେ ଟିକିଏ ସାହାଯ୍ୟ କରିବେ ?

—କୁହନ୍ତୁ ?

—ମୋ କଂପାର୍ଟମେଣ୍ଟରେ ମୁଁ ଏକୁଟିଆ। ମୋ ସାଙ୍ଗରେ ଯୋଉ ଭଦ୍ରମହିଳା ଆଗ୍ରା ଯାଉଥିଲେ, ସେ ଏଇଠି ଓହ୍ଲେଇଗଲେ। ବାପା ମା ତେଣେ ଖୁବ୍ ବ୍ୟସ୍ତ ହେଉଥିବେ। ଷ୍ଟେସନ୍‌ରେ ମୁଁ ଗୋଟାଏ ଟେଲିଗ୍ରାମ୍ କରିବାକୁ ଚାହେଁ ତାଙ୍କ ପାଖକୁ।

—ଠିକଣାଟା ଦିଅନ୍ତୁ। ମୁଁ—

—ନା, ନା, ଆପଣଙ୍କ ଯିବାର ଦରକାର ନାହିଁ। ଖାଲି ମୋ ସୁଟ୍‌କେଶ୍ ଯୋଡ଼ିକ ଆପଣଙ୍କ ପାଖରେ ଥୋଇଦେଇ ଯିବି।

—କିଛି ଚିନ୍ତା ନାହିଁ। ଆପଣ ରଖିଦେଇ ଯାଆନ୍ତୁ।

—ଆପଣଙ୍କୁ କଷ୍ଟ ଦେଲି ବୋଲି—

—ଆରେ, ଏଥିରେ ମୋର କଷ୍ଟ କ'ଣ ?

ଭଦ୍ରମହିଳା ଗୋଟାଏ ବଡ଼ ସୁଟ୍‌କେଶ ଓ ଗୋଟାଏ ବେଗ୍ ମୋ ପାଖରେ ରଖିଦେଇ ବାହାରକୁ ଗଲେ। ଶୋଭେଶ ଏଥର ବସିରହିଲା ଝର୍କା ପାଖରେ ତାଙ୍କ ଯିବାବାଟକୁ ଚାହିଁ ଚାହିଁ।

ଭଦ୍ରମହିଳା ଫେରୁ ଫେରୁ ଦିନ ଗୋଟାଏ।

ଶୋଭେଶ ମନରେ ଆଶଙ୍କା ଦେଖାଦେଇଥିଲା। କିଛି ହେଇଗଲା କି ତାଙ୍କର ?

ଆସୁ ଆସୁ କହିଲେ, "ବହୁତ ଡେରିହୋଇଗଲା, କ୍ଷମା କରିବେ। ଷ୍ଟେସନମାଷ୍ଟର ଟେଲିଗ୍ରାମ ନେବାକୁ ନାରାଜ। ମୁଁ ବହୁତ କହିବାରୁ ଶେଷରେ ନେଲେ। କିନ୍ତୁ କାଳେ ପଠେଇବେ କି ନାହିଁ ଭାବି ସେଇଠି ବସିରହିଲି। ଏବେ ଲାଇନ୍ ମିଳିଲା। ମୋ ଟେଲିଗ୍ରାମଟା ଗଲାପରେ ଫେରିଲି। ରିଫ୍ରେସ୍‌ମେଣ୍ଟ ରୁମରେ କିଛି ନାହିଁ। ଶେଷକୁ ବହୁ କଷ୍ଟରେ ଡବଲ ଦାମରେ ଗୋଟାଏ ବିସ୍କୁଟ୍ ପକେଟ୍ କିଣି ଆସୁଛି।"

—ଆରେ, ମୋତେ କହିଲେ ନାହିଁ। ମୁଁ ସକାଳୁ ପୁରୀ ତରକାରୀ କିଣି ରଖିଛି। ଅବଶ୍ୟ ସବୁ ଚେମେଡ଼ା ହୋଇଯାଇଥିବ। କିନ୍ତୁ କ'ଣ କରାଯିବ ? ଓପାସ ରହିବା ଅପେକ୍ଷା—

—ନା,ନା ମୁଁ ଏମିତିରେ ବେଶୀ ଖାଏନି। ମୋ ପାଖରେ ପାଉଁରୁଟି ରହିଛି। ଚଳିଯିବ ଯେ। ମୁଁ ଯାଉଛି, ମୋ କଂପାଣ୍ଟମେଣ୍ଟକୁ। ଅଶେଷ ଧନ୍ୟବାଦ।

ଶୋଭେଶ ସେଇ ସକାଳର ପୁରୀ ତରକାରୀ ଖାଇ ପୁଣି ଥରେ ଶୋଇବାକୁ ଚେଷ୍ଟାକଲା।

ଏ ଭିତରେ ଦୁଇଟା ଟ୍ରେନ୍ ଆସି ଅନ୍ୟ ପ୍ଲାଟଫର୍ମରେ ଛିଡ଼ା ହୋଇଗଲାଣି।

ଚାରିଟାବେଳକୁ ଯୁବତୀଜଣକ ପୁଣି ଫେରିଆସିଲେ।

—କ୍ଷମା କରିବେ। ମୁଁ ଆପଣଙ୍କୁ ଖୁବ୍ ବିରକ୍ତ କରୁଛି ନା !

—ନା ନା !

—ଏକୁଟିଆ, ଏକୁଟିଆ ମୋତେ ଭୀଷଣ ବୋର୍ ଲାଗିଲା। ପଳେଇ ଆସିଲି ଗପ କରିବାକୁ। କିଛି ମନେ କରୁନାହାନ୍ତି ତ !

—ନା, ନା। ମୋତେ ବି ତ ବୋର୍ ଲାଗୁଛି।

—ମୁଁ ଭାବିପାରୁନି, ମା କେତେ ବ୍ୟସ୍ତ ହେଉଥିବେ, ବାପା ବି। ଏକୁଟିଆ ଯାଉଛି ନା ?

—ଆପଣଙ୍କର ବାପା କ'ଣ କରନ୍ତି ? ଏକୁଟିଆ କାହିଁକି ଯେ—

—ମୁଁ ତ ଏମିତି ସବୁଥର ଏକୁଟିଆ ଯାଏଁ। ବାପା କିଛି କରନ୍ତି ନାହିଁ। ସେ ରିଟାୟାର୍ଡ କରିଲେଣି। ରିଟାୟାର୍ଡ କଲାପରେ ଦିଲ୍ଲୀରେ ଫ୍ଲେଟ୍‌ଟିଏ କିଣିଛନ୍ତି। ସେଇଠି ରହୁଛନ୍ତି। ମୋର ଏମ: ଏ: ପରୀକ୍ଷା ଥିଲା ତ। ସେଇଥିପାଇଁ ମୁଁ ଭୁବନେଶ୍ୱରରେ ଅଟକି ଯାଇଥିଲି।

—କିନ୍ତୁ ଦିଲ୍ଲୀରେ କାହିଁକି ?

—ଓ, ମୁଁ ଭୁଲିଯାଇଥିଲି କହିବାକୁ। ମୋ ବାପାଙ୍କ ନାମ ସତ୍ୟପ୍ରକାଶ ଶ୍ରୀବାସ୍ତବ। ସେ ଓଡ଼ିଶାରେ ଚିଫ୍ ଇଞ୍ଜିନିୟର୍ ଥିଲେ। ହୀରାକୁଦ ବନ୍ଧ ତିଆରି ହେଲାବେଳକୁ ସେ ଆସିଥିଲେ। ତା' ପରେ ଏଇଠି ଓଡ଼ିଶା ସର୍କାରଙ୍କ ଅଧୀନରେ ରହିଯାଇଥିଲେ। ମୋ ନାମ କଳ୍ପନା। କଳ୍ପନା ଶ୍ରୀବାସ୍ତବ।

—ବାଃ, ଆପଣ ତ ଚମତ୍କାର ଓଡ଼ିଆ କହୁଛନ୍ତି।

—ଆରେ ବାଃରେ! ଏଇଠି ଚମତ୍କାରିତାର କ'ଣ ରହିଲା? ମୋର ଜନ୍ମ ଓଡ଼ିଶାରେ। ମୋର ପାଠପଢ଼ା ଏଇଠି। ମୋର ସାଙ୍ଗସାଥି ସବୁ ଓଡ଼ିଆ। ଯଦି କିଛି ମନେ ନ କରନ୍ତି, ଆପଣ?

ମୋ ନାମ ଶୋଭେଶ ପଟ୍ଟନାୟକ। ମୁଁ ଭାରତ ହେଭି ଇଲେକ୍ଟ୍ରିକାଲରେ ଇଞ୍ଜିନିୟର । ଅଛି ତାଳଚେରରେ। ଦିଲ୍ଲୀ ଯାଉଥିଲି ସେଇ କର୍ପୋରେସନ କାମରେ।

କଳ୍ପନା ଶ୍ରୀବାସ୍ତବ ସହଜ ହୋଇଉଠୁଥିଲା। ଅନ୍ୟାନ୍ୟ ହିନ୍ଦୀଭାଷୀ ସହଯାତ୍ରୀଙ୍କ ପାଖକୁ ସାହାଯ୍ୟ ପାଇଁ ନ ଯାଇ ସେ ମୋରି ପାଖକୁହିଁ ଚାଲିଆସିଥିଲା ସ୍ୱାଭାବିକ ଭାବରେ। ନାମରେ 'ଶ୍ରୀବାସ୍ତବ' ହେଲେ ବି ଜନ୍ମଗତ ଭାବରେ ତ ସେ ଓଡ଼ିଆ। ସେଇଥିପାଇଁ ବୋଧହୁଏ ଏ ସ୍ୱାଭାବିକ ଆକର୍ଷଣ।

ଚା, ଚା,ଗରମ ଚା।"

—ଚା ପିଇବେ?

—ହଁ, ପିଇଲେ ହୁଅନ୍ତା। ଯୋଉ ତ ସତରଥର ସିଝା ଚା। ତଥାପି—

ଦୁଇଟି କପ୍ ଚା' ନେଇ ଗୋଟିଏ ତାଙ୍କ ହାତକୁ ବଢ଼େଇ ଦେଲା।

ବିସ୍କୁଟ୍ ପକେଟ୍‌ରୁ ବିସ୍କୁଟ୍ କାଢ଼ି କହିଲା, 'ନିଅନ୍ତୁ'। ସେ ନାହିଁ କରୁ କରୁ ଦୁଇଟା କାଢ଼ିନେଲେ।

—ମୋର କିନ୍ତୁ ଜମା ଦିଲ୍ଲୀ ଯିବାର ଇଚ୍ଛା ନଥିଲା। ଏତେ ବର୍ଷ ଓଡ଼ିଶାରେ ବଢ଼ିଆସି ମୋତେ ଦିଲ୍ଲୀର ଆଟ୍‌ମଶ୍‌ଫିଅର ଜମା ଭଲ ଲାଗେନାହିଁ। ଲୋକଗୁଡ଼ିକ ଭାରି ରୁକ୍ଷ ରୁକ୍ଷ ଲାଗନ୍ତି। ନିଜର ବନ୍ଧୁବାନ୍ଧବ ମାନେ ବି। ମା କୁହନ୍ତି ତୁ ପୂରା ଓଡ଼ିଆଣୀ ହୋଇଗଲୁ।

—ପରୀକ୍ଷା ପରେ କ'ଣ କରିବେ?

—ଭାବୁଛି ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଏମ୍‌ଫିଲ୍ କରିବି। କିନ୍ତୁ ମା ରାଜି ହେଲେ ତ? ବାପା ରାଜି।

—କାହିଁକି? ମା କାହିଁକି ରାଜି ନୁହନ୍ତି?

—ସେଇ ପୁରୁଣା କଥା। 'ବାହା ହେଇପଡ଼'।

—ଆପଣ କ'ଣ ବାହାହେବେ ନାହିଁ?

ଖିଲ ଖିଲ ହୋଇ ହସିଲେ କଳ୍ପନା ଶ୍ରୀବାସ୍ତବ।

—ମୁଁ କ'ଣ ମନାକରିଛି? ତେବେ ପଢ଼ା ସରିଲେ।

—ପଢ଼ା ତ ସରିଲା!

—ବାଃରେ, ମୁଁ ଏମ୍‌ଫିଲ୍ କରିବି। ଚାକିରୀ କରିବି। ତା'ପରେ—

—ଯଦି ବାପା ମା ବାଧକରନ୍ତି?

—ଭାରତବର୍ଷର କୋଉ ଝିଅ ବାପା ମା'ର ଅବାଧ ହେବାର ଶକ୍ତି ରଖେ ଯେ।

ସେ କିଛିସମୟ ଚୁପ୍ ରହିଲା। ତା'ପରେ ପଚାରିଲା।

—ଆପଣଙ୍କ ସ୍ତ୍ରୀ କ'ଣ ତାଳଚେରରେ ?

—ମୁଁ ବାହା ହୋଇନି।

—କାହିଁକି ? ଓଡ଼ିଶାରେ ପୁଅମାନେ ଖୁବ୍ ଶୀଘ୍ର ବାହାହୋଇ ପଡ଼ନ୍ତି।

—ଏବେ ଆଉ ନାହିଁ। ମୁଁ ତ ତିନିବର୍ଷ ବେକାର ରହିଲାପରେ ଏବେ ଚାକିରୀ ପାଇଲି। ବର୍ଷେ ହେବ। ନିଜକୁ ଟିକିଏ ଏଷ୍ଟାବ୍ଲିସ୍ କରିସାରେ।

କଳ୍ପନା ଟିକିଏ କଣେଇ ଚାହିଁଲା ଶୋଭେଶକୁ।

—ଆପଣଙ୍କ ବାପା ଓଡ଼ିଶାରେ ସେଟ୍‌ଲ କରିପାରିଥାନ୍ତେ।

—ପାରିଥାନ୍ତେ। ହେଲେ ଜନ୍ମମାଟିର ଆକର୍ଷଣ। ଭାରତ ବର୍ଷରେ ମୋଟେ ତିନୋଟି ଜାତି ଅକ୍ଲେଶରେ ଜନ୍ମମାଟିର ମାୟା ତୁଟାଇ ଅନ୍ୟ ଜାଗାରେ ସ୍ୱଚ୍ଛନ୍ଦରେ ବାସ କରିପାରନ୍ତି। ସେମାନେ ହେଲେ ପଞ୍ଜାବୀ, ମାରୁଆଡ଼ୀ ଓ ବଙ୍ଗାଳୀ। ଅନ୍ୟମାନେ ପାରନ୍ତି ନାହିଁ।

—ଆପଣଙ୍କର କ'ଣ ଇଚ୍ଛା ?

—ମୋର ତ ଏକାନ୍ତ ଇଚ୍ଛା ଓଡ଼ିଶାରେ ରହିବାକୁ। ଏମିତି ଏକ ଶାନ୍ତ ଅଳସ ବାୟୁମଣ୍ଡଳରେ ବଢ଼ି ଆସି ଦିଲ୍ଲୀରେ ମୁଁ ଏକଦମ୍ ମିସ୍‌ଫିଟ୍। ବସ୍‌ରେ ବି ଶୀଘ୍ର ଚଢ଼ିପାରେ ନାହିଁ କି ଓହ୍ଲେଇ ପାରେନାହିଁ।

—ଯଦି ସୁଯୋଗ ମିଳେ ଆପଣ ଓଡ଼ିଶାରେ ରହିବେ ?

—ନିଶ୍ଚୟ ! ଅତି ଜୋରରେ ଏକଥା କହୁ କହୁ ଅଟକିଗଲା କଳ୍ପନା। ତା'ପରେ ମୁହୂର୍ତ୍ତେ ସ୍ଥିର ଦୃଷ୍ଟିରେ ଶୋଭେଶକୁ ଚାହିଁ କ'ଣ ଭାବିଲା କେଜାଣି ମୁଣ୍ଡ ତଳକୁ କଲା। ଲାଜରେ ଆଭା ତାର ଦୁଇ ଗାଲରେ ଗୋଲାପି ରଙ୍ଗ ବୋଳି ଦେଇଗଲା।

ଶୋଭେଶ ବୁଝିପାରିଲା ନାହିଁ ଏହା ଲଜ୍ଜାର ଲାଳିମା ନା ତାର ଗୋରା ଗାଲ ଦୁଇଟି ଉପରେ ପ୍ରତିଫଳିତ ହେଉଛି ଅସ୍ତସୂର୍ଯ୍ୟର ଶେଷ ଆଲୋକ।

ଗପୁ ଗପୁ ସନ୍ଧ୍ୟା ହୋଇଯାଇଥିଲା। କଂପାର୍ଟମେଣ୍ଟ ଭିତରେ ଅନ୍ଧକାରର ପାତଳ କୁହୁଡ଼ି।

ହଠାତ୍ ଉଠିପଡ଼ିଲା କଳ୍ପନା।

—ଆପଣଙ୍କୁ ବହୁତ ବୋର୍ କଲି। ହଉ, ଏବେ ଆସୁଛି।

ରେଲୱେ ବିଭାଗର କାହାର ଦୟା ହେଲା କେଜାଣି ସନ୍ଧ୍ୟାବେଳକୁ ଅପେକ୍ଷାରତ ସମସ୍ତ ଯାତ୍ରୀମାନଙ୍କ ପାଇଁ 'ଡିନର' ର ବ୍ୟବସ୍ଥା କରାଯାଇଥିଲା। ତିନିପଟ ରୁଟି, ଗିନାଏ ଭାତ, ଗିନାଏ ଡାଲି ଓ ଗିନାଏ ଟିଣ୍ଡା—ଆଳୁ ଝୋଳ ତରକାରୀ। ଯାହା ମିଳୁଛି ଭାଗ୍ୟ ଭୋକରେ ପେଟ ଆଉଟୁପାଉଟୁ ହେଉଥାଏ।

ନଅଟାବେଳକୁ ଖାଦ୍ୟ ପେକେଟ୍ ଦେଇଗଲା ଆଟେଣ୍ଡେଣ୍ଟ। ସାତଟଙ୍କା କେତେ ପଇସା ବିନିମୟରେ।

ଖାଇପିଇ ସାରି ଶୋଭେଶ କଂପାର୍ଟମେଣ୍ଟର ଦରଜା ବନ୍ଦ କରି ଶୋଇବାକୁ ଯାଉଛି, କଳ୍ପନା ଶ୍ରୀବାସ୍ତବ ପୁଣି ହାଜର।

—କିଛି ମନେକରିବେ ନାହିଁ। ମୋତେ ସେଇଠି ଏକୁଟିଆ ଭାରି ଡରମାଡୁଛି। ମୁଁ ଏଇଠି ବସିପାରେ କି?

—ହଁ ଯେ କିନ୍ତୁ—

—କିନ୍ତୁ?

—ରାତିରେ ଏକୁଟିଆ ମୋ'ପରି ଜଣେ ଏକଲା ପୁରୁଷ ପାଖରେ ରହିବାକୁ ଆପଣଙ୍କୁ ଭୟ ଲାଗିବ ନାହିଁ।

ସେ ଶୋଭେଶର ମୁହଁକୁ ପୁଣି ଥରେ ସ୍ଥିର ଦୃଷ୍ଟିରେ ଅନେଇ ମୁରୁକି ହସି କହିଲେ, ନାହିଁ।

—ଏତେ ବିଶ୍ୱାସ!

—ହଁ।

—ମୋତେ ଭୀରୁ ମନେକରୁଛନ୍ତି କି? ଶୋଭେଶ ଏଥର ହସି ହସି ପ୍ରଶ୍ନ କଲା।

—ବିଶ୍ୱାସ ହେଲାପରେ ଭୀରୁତାର ପ୍ରଶ୍ନ ଉଠୁଛି କାହିଁକି?

ଜଣେ ଦୁଇଜଣ କୌତୂହଳୀ ଯାତ୍ରୀ ଏ ଭିତରେ ଥରେ ଦୁଇଥର ଉଙ୍କିମାରି ଗଲେଣି। ଶୋଭେଶ ଅସ୍ୱସ୍ତିବୋଧ କଲା।

—କବାଟ ବନ୍ଦ କରିବି ନା ଖୋଲାଥିବ?

—ବନ୍ଦ କରନ୍ତୁନାହାନ୍ତି। କିଏ କେତେବେଳେ ପଶିଆସିବ?

—ଆପଣ ଶୋଇପଡ଼ନ୍ତୁ।

—ନା ଆପଣ ଶୁଅନ୍ତୁ। ମୁଁ ବସିଛି।

—ଲାଇଟ୍ ଜଳୁଥିବ।

—ନା, ଲିଭେଇ ଦିଅନ୍ତୁ। ବେଡ୍‌ଲାଇଟ୍‌ଟା ଜଳୁଥାଉ।

—ନା, ଆପଣ ବରଂ ଶୋଇପଡ଼ନ୍ତୁ। ମୋର ତ ଡେରିରେ ଶୋଇବାର ଅଭ୍ୟାସ। ମୁଁ ବରଂ ବସି ବସି ଉପନ୍ୟାସଟା ଶେଷକରେ।

—ନା ତ ଶୋଇପାରିବ ନାହିଁ।

—କାହିଁକି?

—ବାଃରେ, ମୋ ପାଇଁ କାହିଁକି ଆପଣ କଷ୍ଟ ପାଇବେ? ମୁଁ ତ ମୋ ନିଜ ଗରଜରୁ ଆସିଛି। ମୁଁ ଚାହିଁବି?

ଶୋଭେଶ କିଛି ସମୟ ଚୁପରହି କହିଲା—

ଯେତେ କହିଲେ ବି ତଥାପି ଆପଣଙ୍କ ମନରୁ ଭୟ ଯାଇନାହିଁ।

ସେ ଶୋଭେଶ ଆଡ଼କୁ ଏକ ତଡ଼ିତ୍ ଚାହାଣୀ ଦେଇ କହିଲେ—

ନା ଯେ, ମୋତେ ନିଦ ମାଡୁନାହିଁ।

—ତେବେ ବେଶ୍, ଦି ଜଣ ବସି ବସି ଗପିବା।

କଳ୍ପନା ଶୋଭେଶକୁ ଏକ ଗଭୀର ଚାହାଣୀରେ ଚାହିଁରହିଲା କିଛି ସମୟ। ଏକ ଆଶ୍ୱସ୍ତି, ବିଶ୍ୱାସ ତଥା ଆଉ ଗୋଟାଏ ଅଜଣା ଭାବାବେଗ ମିଶ୍ରିତ ଏକ ଅଦ୍ଭୁତ ଅନୁଭବର ଚାହାଣୀ।

ଗୋଟିଏ ପାଖରେ କଳ୍ପନା। ଅନ୍ୟପଟରେ ଶୋଭେଶ।

ଗପ ଚାଲୁ ଚାଲୁ କେତେବେଳେ ବନ୍ଦ ହୋଇଗଲା ଅଜାଣତରେ। କଳ୍ପନା ଚାହିଁଛି ଶୋଭେଶକୁ। ଶୋଭେଶ ଚାହିଁଛି କଳ୍ପନାକୁ।

ଏକ ଅଦ୍ଭୁତ ବାଙ୍ମୟ, ନିସ୍ତବ୍‌ଧତା।

ଏକ ବିସ୍ମିତ ସୁରଭିତ ନୀରବତା ସାରା କଂପାର୍ଟମେଣ୍ଟ ଭିତରକୁ ଏକ ଅଦ୍ଭୁତ ଗନ୍ଧରେ ଆମୋଦିତ କରିଦେଇଗଲା।

ବିଶ୍ୱାସରୁ ପ୍ରେମ ହୁଏ ନା ପ୍ରେମରୁ ବିଶ୍ୱାସ ?

କଥା ନାହିଁ। ଅଥଚ ଅସରନ୍ତି କଥାର ନିରବଚ୍ଛିନ୍ନ ଝରଣା ଅବିଶ୍ରାନ୍ତ ନାହାନ୍ତି। ଟ୍ରେନ୍ କେତେବେଳେ ଷ୍ଟେସନ୍ ଛାଡ଼ିଲା ସେମାନେ କେହି ଲକ୍ଷ୍ୟ କରିପାରି ନାହାନ୍ତି।

ନିଦ ଭାଙ୍ଗିଲାବେଳକୁ ଟ୍ରେନ୍ ଆଗ୍ରା କେଣ୍ଟନମେଣ୍ଟ ଛାଡ଼ିସାରିଲାଣି। ସାରା କଂପାର୍ଟମେଣ୍ଟରେ ସକାଳ ଖରାର ଉଜ୍ଜ୍ୱଳ ଆଲୋକ ବିଛାଡ଼ିହୋଇ ପଡ଼ିଛି।

ନିଦ ଭାଙ୍ଗିଗଲା କଳ୍ପନାର। ଚମକିପଡ଼ି ଦେଖେ ତ ଶୋଭେଶ ସେମିତି ଢୁଳେଇପଡ଼ିଛି ଆଉ ସିଟ୍‌ରେ। ସେ ଆଉଥରେ ଆଁଖିବୁଜିଲା ନିଶ୍ଚିନ୍ତରେ। ଶୋଭେଶର ନିଦ ଭାଙ୍ଗିଗଲା। ସେ ଦେଖିଲା କଳ୍ପନା ସେମିତି ଆଖିବୁଜି ଆଉଜିପଡ଼ିଛି ସିଟ୍‌ରେ। ତାର ମୁହଁଟା ମନେହେଉଛି ସକାଳର ସଦ୍ୟ ଫୁଟିଥିବା ଗୋଟାଏ ସୁନ୍ଦର ଗୋଲାପ ଫୁଲ ପରି। ସେ ପରିତୃପ୍ତିରେ ଆଖିବୁଜିଲା।

ଦିଲ୍ଲୀରେ ଟ୍ରେନ୍ ପହଞ୍ଚିବାକୁ ଅଳ୍ପ ସମୟ ଥାଏ। କଳ୍ପନା କହିଲା ''କିଛି ମନେକରିବେ ନାହିଁ, ଆପଣଙ୍କ ଠିକଣାଟା ଦେବେ କି ?

—କ'ଣ ଆଉ ଦରକାର ଯେ ! ଶୋଭେଶ କହିଉଠିଥିଲା। ହଠାତ୍ ତାକୁ ଚାପିଦେଇ କହିଲା, ''ଦିଅନ୍ତୁ,ଆପଣଙ୍କ ଡାଏରୀରେ ଟିପିଦିଏ।''

ହେଇ ନିଅନ୍ତୁ, ମୋ ଡାଏରୀ। ଆପଣଙ୍କ ଠିକଣାଟା—

ଦିଲ୍ଲୀରୁ ଫେରିବାର ଦଶଦିନ ପରେ ଶୋଭେଶ ଚିଠିଟା ପାଇଲା।

ପ୍ରିୟ ଶୋଭେଶ ବାବୁ !

ନମସ୍କାର ।

ଭସା ବାଦଲର ଛାଇରେ ସ୍ଥିରତା ନାହିଁ, କିନ୍ତୁ ତାର କ୍ଷଣିକ ଶୀତଳତାର ଶାନ୍ତିକୁ କ'ଣ ଅସ୍ୱୀକାର କରିହୁଏ ?

ଆପଣଙ୍କ ସହିତ ସେଇ ଚବିଶ ଘଣ୍ଟାର ଯାତ୍ରା ମୋ ଜୀବନର ଏକ ଚିରନ୍ତନ ସ୍ମୃତିସ୍ତମ୍ଭ । ହୃଦୟର ଅମୁହାଁ ଦେଉଳର ଗର୍ଭଗୃହ ମଧ୍ୟରେ ସେ ରହିଥିବ ଏକ ମହାର୍ଘ ରତ୍ନପରି ଚିରଭାସ୍ୱର

ନମସ୍କାର ସହ

ଆପଣଙ୍କର

କଳ୍ପନା ଶ୍ରୀବାସ୍ତବ

ଶୋଭେଶ ଭାବିଲା ସେ ତାର କ'ଣ ଉତ୍ତର ଦେବ ।

ସେ ପ୍ରଥମେ ଭାବିଥିଲା ଲେଖିବ, ତମର ନୀରବ ଭାଷାର ପରିଚିତ କାକଳି ଏକ ଚଳଚଞ୍ଚଳ ଝରଣା ପରି ମୋ ଜୀବନରେ ଚିରଦିନ ପାଇଁ ମୁଖରିତ ହେଉଥିବ ।

ତା' ପରେ ଭାବିଲା ସେ ଲେଖିବ— "ତମର କ୍ଷଣସ୍ଥାୟୀ ଉପସ୍ଥିତିର ଅଚିହ୍ନା, ଅଜଣା ମହକ ମୋ ଜୀବନକୁ ସୁରଭିତ କରି ରଖିବ ଜୀବନର ଶେଷପର୍ଯ୍ୟନ୍ତ ।"

ଶେଷରେ ଲେଖିଲା, "ତମର ନ କହିଥିବା କଥାଗୁଡ଼ିକର ଶାଣିତ ତୀକ୍ଷ୍ଣତା ଏବଂ ତମର ପ୍ରଶାନ୍ତ, କଜ୍ଜ୍ୱଳ କଳା ଡୋଳାର ଶୀତଳ ଅଗ୍ନି ମୋତେ ଦଗ୍ଧୀଭୂତ କରୁଥିବ ଅନନ୍ତକାଳ ପର୍ଯ୍ୟନ୍ତ ।"

-୦-

# ମଲା ମଣିଷର ଦାମ

ପ୍ରାୟ ଦେଢ଼ବର୍ଷ ମକଦ୍ଦମା ଚାଲିଲା ପରେ ରାୟ ବାହାରିଲା—'ଦୁର୍ଘଟଣା ଜନିତ କ୍ଷତିପୂରଣ ବାବଦକୁ ଗୁରୁବାରୀ ବେଓ୍ୱା ସ୍ୱାମୀ ମୃତ ଗୁରିଆ ବେହେରା ପାଇବେ ପଚିଶ ହଜାର ଟଙ୍କା ।'

ଜୁନିୟର ଓକିଲ ଶ୍ରୀକାନ୍ତ ଦାସ ଫିସ ଫିସ କରି କହିଲା, 'ସାର୍! ମାଜିଷ୍ଟ୍ରେଟ ନିଶ୍ଚେ କିଛି ପଇସା ପକେଇ ଦେଇଛି ନ ହେଲେ ଏମିତି ଏକ ଓ୍ୱାଟର ଟାଇଟ କେସ୍ ।'

ମହୀମୋହନ ସେମିତି ଫିସ୍ ଫିସ୍ କରି କରି କହିଲେ, 'ଚୁପ୍! ଜଜଙ୍କ ନାମରେ ଜଜ୍‌କୋର୍ଟରେ ବସି ଏକଥା କହୁଚ? କେହି ଜାଣିଲେ ଜାଣିଚ ଅବସ୍ଥା କଣ ହେବ? ହେଉ ଯାହା ମୋତେ କହିଲ କହିଲ, ଆଉ ଘୁଣାକ୍ଷରେ ବି ଏକଥା କାହାରିକୁ କହିବ ନାହିଁ। ମୁଁ ଅନୁମାନ କରୁଥିଲି, ରାୟଟା ଏଇ ପ୍ରକାର ହେବ ବୋଲି। କଣ୍ଟ୍ରାଟର ପଣ୍ଡାର ବହୁ ବଡ଼ ବଡ଼ ଲୋକେ ବନ୍ଧୁବାନ୍ଧବ।

ମହୀମୋହନ ମିଶ୍ର ଜଣେ ନାମଜାଦା ଆଡ୍‌ଭୋକେଟ। ବିଶେଷତଃ ଶ୍ରମବିବାଦ ଆଇନ ସମ୍ବନ୍ଧରେ ସେ ଜଣେ ବିଶେଷଜ୍ଞ ବୋଲି ଜଣାଶୁଣା। ଏହି କ୍ଷତିପୂରଣ ମାମଲାରେ ତାଙ୍କଠାରୁ ଆଉ କେହି ଦକ୍ଷ ଓକିଲ ଅନ୍ତତଃ ଓଡ଼ିଶାରେ ନାହାନ୍ତି। ଊଣେଇଶ ଶହ ଷାଠିଏ ମସିହାରୁ ସେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ। ପ୍ରଥମରେ ସିଭିଲ। ସେଠାରୁ କ୍ରିମିନାଲ। ସବୁଥିରେ ଫେଲମାରି ଶେଷକୁ ଏହି ବିଷୟରେ ସେ ବିଶେଷଜ୍ଞ ହୋଇଗଲେ। ଗତ କୋଡ଼ିଏ ବର୍ଷ ଧରି ସେ କେବଳ ଏଇ କେସଗୁଡ଼ିକ ହିଁ ନେଉଛନ୍ତି।

ଅବଶ୍ୟ ପ୍ରଥମେ ପ୍ରଥମେ ବିଶେଷ ଭଲ ଆୟ ହେଉ ନଥିଲା, କିନ୍ତୁ ଚଳି ଯାଉଥିଲା କୌଣସି ମତେ। କିନ୍ତୁ ଗତ ଦଶବର୍ଷ ଧରି ସେ ପ୍ରଚୁର ଆୟ କରୁଛନ୍ତି।

ସେ ଆଇନ ସହାୟତା ସେଲରେ ସଂପୃକ୍ତ ଥିଲାବେଳେ ହଠାତ୍‌କରି ଏଇ ଭାବନାଟା ତାଙ୍କ ମୁଣ୍ଡରେ ପଶିଥିଲା। କେତେ କେତେ ଗରିବ ମୂଲିଆ ଶ୍ରେଣୀର ଲୋକେ କଣ୍ଟ୍ରାକ୍ଟର ପାଖରେ କାମ କରୁ କରୁ ହଠାତ୍ ମୃତ୍ୟୁବରଣ କରୁଛନ୍ତି। କେତେ ଲୋକ ସଡ଼କ ଦୁର୍ଘଟଣାରେ ମରୁଛନ୍ତି। ଅଥଚ ଏଇ ନିରୀହ, ମୂର୍ଖ ସରଳ ଲୋକଙ୍କ ପାଇଁ କେହି କିଛି କରୁନାହାନ୍ତି। ପୋଲିସ୍‌କୁ ଦୁଇଶ ପାଞ୍ଚଶ ଘୁଷ୍ ଦେଇ ସମସ୍ତେ ଚାପି ଦିଅନ୍ତି କଥାଟାକୁ। ବିଚରା ତାର ପରିବାର କଥା– ସେମାନେ ବଞ୍ଚିଲେ କି ମଲେ, କେହି ଭାବନ୍ତି ନାହିଁ। ସେ ସ୍ଥିର କରିଥିଲେ, ସେ ଏଇମାନଙ୍କ କେସସବୁ ବିନା ପଇସାରେ ଲଢ଼ିବେ। ଗରିବମାନଙ୍କୁ ନ୍ୟାୟ ଦେବା ପାଇଁ ସେ ଚେଷ୍ଟା କରିବେ।

ଅବଶ୍ୟ ତାଙ୍କର ସେତେବେଳର ଏକ ଗଭୀର ମାନବବାଦୀ ଦୃଷ୍ଟିକୋଣ ଦ୍ୱାରା ପରିଚାଳିତ ହୋଇ ଉଦାର ଭାବରେ ଏଇ ନିଷ୍ପତ୍ତି ନେଇଥିଲେ ଏବଂ ସେହି ଅନୁସାରେ ସେ ମଧ କେତେକ କେସ୍ ହାତକୁ ନେଇ ଜିତିଥିଲେ ଏବଂ କେତେ ଜଣ ଅନାଥ ପରିବାରକୁ ଅକାଳ ଦାରିଦ୍ର୍ୟର କଷାଘାତରୁ ମୁକ୍ତ କରିଥିଲେ।

କିନ୍ତୁ ଶେଷକୁ ସେ ଏଇଟା ଏକ ଲାଭଦାୟକ ଘଟଣାରେ ପରିଣତ ହୋଇଯିବ, ସେ କଥା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ। ଏମିତି କଥାବାର୍ତ୍ତା ହେଉଁ ହେଉଁ ତାଙ୍କ ଘରେ କଥାଟା ପଡ଼ିଥିଲା ଜୁନିୟର ଶ୍ରୀକାନ୍ତ ମହାନ୍ତି ଓ ବାଳକୃଷ୍ଣ ଶତପଥୀଙ୍କ ସାଙ୍ଗରେ। ଶ୍ରୀକାନ୍ତ କହିଥିଲା, "ସାର୍! ଆମ ଦେଶର ଅଧିକାଂଶ ଲୋକେ ଆଇନ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ। ଜାଣିଲେ ବି ପଇସାପତ୍ର ଅଭାବରୁ ଓକିଲଙ୍କ ପାଖକୁ ଆସିପାରନ୍ତି ନାହିଁ। ତା'ଛଡ଼ା କୋର୍ଟ କଚିରିକି ତାଙ୍କର ପ୍ରାଣଭୟ। ଏଣୁ 'ସୋ ମଟୋ' ଆପଣ ଏମିତି କେତେ କେସ ନେବେ?' ବାଳକୃଷ୍ଣ କହିଥିଲା, 'ସାର୍, ଆମେ ନିଜ ତରଫରୁ ଗୋଟାଏ କମ୍ପାଇନ ବା ସଂସ୍ଥା କଲେ କେମିତି ହୁଅନ୍ତା? କିଛି ଲୋକ ରଖନ୍ତେ ଖବର ଦେବା ପାଇଁ। ସେମାନେ ସବୁ ଯଥାଯଥ ଖବର ସଂଗ୍ରହ କରନ୍ତେ ଓ ଆମେ ତାଙ୍କ ପାଇଁ କଣ୍ଟ୍ରାକ୍ଟରେ କେସ ଲଢ଼ନ୍ତେ। ଆମେ ଜିତିଲେ ସେମାନେ ତାର କିଛି ଅଂଶ ଆମକୁ ଫିସ ବାବଦକୁ ଦେବେ। ନ ଜିତିଲେ କିଛି ନାହିଁ। ଏମିତିରେ ଜନତାର ସେବା ବ‌ମି ହୁଅନ୍ତା, ଆମର ଜନତାର ବି, ଠିକ ଚାଲନ୍ତା। ହାତରୁ ଖାଇ କେତେଦିନ ସାର ଆଉ ଘୋଡ଼ା ଆଗରେ ଡ଼େଇଁବା?'

ମହୀମୋହନଙ୍କ ମନକୁ କଥାଟା ଠିକ ପାଇଗଲା। ଆଶ୍ଚର୍ଯ୍ୟ! ଏଇ କଥାଟା ତାଙ୍କ ମନକୁ ଆସି ନାହିଁ ଅଥଚ ଏଇ ଦୁଇଟା ମେଞ୍ଚଡ଼ ଟୋକାଙ୍କ ମନରେ ଆସିଲା କେମିତି? ସେ ମନେ ମନେ ଟିକିଏ ଲଜ୍ଜିତ ଓ ଅନୁତପ୍ତ ହେଲେ ମଧ ପିଲାଙ୍କ କଥାରେ ରାଜିହୋଇ ଯାଇଥିଲେ।

ସେଇଦିନଠାରୁ ମହୀମୋହନଙ୍କ ଓକିଲାତିର ପ୍ରସାର ଅଦ୍ଭୁତ ଭାବରେ ବଢ଼ିବାକୁ ଲାଗିଲା। କେତେବେଳେ କେସ କରି କେତେବେଳେ ପାରସ୍ପରିକ ବୁଝାମଣାରେ ସେ କେସ ଜିତିବାକୁ ଲାଗିଲେ।

ତାଙ୍କର ହାରାହାରି ମାସିକ ଆୟ ଏବେ ପଚିଶ ହଜାର ଟଙ୍କା।

'ଯାହା କହନ୍ତୁ, ସାର! ଅନ୍ତତଃ ପଚାଶ ହଜାର ଟଙ୍କା ଦେଇ ପାରିଥାନ୍ତେ। ତାର ବଡ଼ ପୁଅଟି ସାବାଳକ ହେବାକୁ ଆହୁରି ବାରବର୍ଷ। ଅନ୍ତତଃ ମାସିକ ପାଞ୍ଚଶହ ଟଙ୍କା ଯଦି ଦେଇଥାନ୍ତେ ତେବେ ବାରବର୍ଷକୁ ହୋଇଥାନ୍ତା ଷାଠିଏ ହଜାର, ତା ବଦଳରେ ମାତ୍ର ପଚିଶ ହଜାର! ଏଥିରେ ଆମେ ପାଇବା କେତେ? ସେ ପାଇବ କେତେ?

—ଆରେ, ଗୋଟାଏ କେସରେ ନ ହେଲେ କମ ପାଇଲେ, ସେଥିରେ ଏତେ ବ୍ୟସ୍ତ ହେବାର କଣ ଅଛି? ସବୁ କେସ ତମେ ତମ ନିଜ ଇଚ୍ଛା ଅନୁସାରେ ଜିତିବ ନା କଣ? ଠିକ ଅଛି, ଯାଅ ଟଙ୍କା ପାଇବାର ବ୍ୟବସ୍ଥା କର। ତା ପରେ—

—ସାର, ସେ ମକ୍‌କିଲକୁ କେତେ ଦେବା?

—ଆରେ, ଯାଅ। ଯେମିତି ସବୁ କେସରେ ହୁଏ ସେମିତି। ତାକୁ ଦଶ ଦେବ—ବାକୀ ରଖିବ ଆମ ପାଇଁ।

—ସାର୍‌...?

—ଆରେ, ତମେ ବ୍ୟସ୍ତ ହୁହନା ମ! ସେ ମାଇକିନିଆ ତା ଜିନ୍ଦେଗୀରେ ଶହେଟଙ୍କା ଦେଖି ନ ଥିବ! ଆମ ଯୋଗୁ ଦଶହଜାର ପାଇଲାଣି। ସେତିକି ସେ ରଖିପାରୁଛି କି ନାହିଁ ଆଗ ଦେଖ। ତା ବନ୍ଧୁବାନ୍ଧବ ଟାଉଟର ଅଧେ ଖାଇଯିବେ। ଆଉ ସେ କଣ ସାରଜୀବନ ବିଭା ନ ହୋଇ ରହିଥିବ ବୋଲି ତମେ ଭାବୁଛ ନା କଣ? ଛୋଟ ଜାତି—ତାଙ୍କର ଦ୍ୱିତୀୟ ଚଳେ। ଦେଖିବ, ବର୍ଷେ ନ ପୂରୁଣୁ ସେ ଆଉ କାହାକୁ ଧରି ରହିଯାଇଥିବ। ଯାଅ, ମୁଁ ଟିକେ ଆଜି ଆଗରୁ ଯିବି। ଝିଅ ଜୋଇଁ ବମ୍ବେ ଯିବେ। କୋଣାର୍କରେ। ମୋତେ ଫେର ଭୁବନେଶ୍ୱର ଯିବାକୁ ପଡ଼ିବ ତାଙ୍କୁ ଛାଡ଼ିବା ପାଇଁ।

ମୃତ ଗୁରିଆ ବେହେରା ପଣ୍ଡା କନଷ୍ଟ୍ରକ୍‌ସନ କଂପାନୀର ଜଣେ ରାଜମିସ୍ତ୍ରୀ ହେଲ୍‌ପର ଭାବରେ କାମ କରୁଥିଲା। ପ୍ରାୟ ପଚିଶ ବର୍ଷ ବୟସ। ହୃଷ୍ଟପୃଷ୍ଟ ଚେହେରା। ଦିନକୁ ମଜୁରି ଥିଲା ପନ୍ଦର ଟଙ୍କା। ଘରେ ତାର ସ୍ତ୍ରୀ। ଗୋଟାଏ ପୁଅ। ଛ'ବର୍ଷ। ଝିଅଟି ଛ'ମାସର। କୋଳରେ। ତା ସ୍ତ୍ରୀ ମଧ୍ୟ ସେଇଠି କାମ କରୁଥିଲା। ଝିଅକୁ ପୂର୍ବରୁ ପାଞ୍ଚତାଲାର ଛାତ ପଡୁଥାଏ। କେମିତି ଗୋଡ଼ ଖସିଗଲା କେଜାଣି ଖସି ପଡ଼ିଲା ତଳକୁ। ମୁଣ୍ଡଟା ଫାଟି ଚୌଚିର ହୋଇଯାଇଥାଏ। ବୋଧହୁଏ ମିନିଟିଏ କି ଦି'ମିନିଟ ବଞ୍ଚିଥିବ ପଡ଼ିଲା ପରେ। ତାପରେ ସବୁ ଶେଷ।

ମହୀମୋହନ ମିଶ୍ରଙ୍କ ଏଜେଣ୍ଟ ଖବର ପାଇ ସାଙ୍ଗେ ସାଙ୍ଗେ ହାଜର। କଥାଟାକୁ ଚପେଇ ଦେବା ଆଗରୁ ସେ ଥାନାରେ ଖବର ଦେଇ ସାରିଲାଣି। ପୋଷ୍ଟମର୍ଟମ ବ୍ୟବସ୍ଥା ମଧ୍ୟ କରି ସାରିଥାଏ।

ପଣ୍ଡାବାବୁଙ୍କ କାନକୁ ଖବର ପହଞ୍ଚିଲା ବେଳକୁ ପୋଲିସ କେସ ଦାଏର କରି ସାରିଲାଣି।

ଦିନ ପ୍ରାୟ ସାଢ଼େ ତିନିଟା ବାଜିଲାଣି।

ମାର୍ଚ୍ଚ ମାସର ଖରାର ତେଜ ତଥାପି ମଉଳି ନାହିଁ। ଝାଳ ବହୁଛି ଗମ ଗମ। ମହୀମୋହନ ବାବୁ କୋର୍ଟ ଓହ୍ଲାଇ, ହାତରେ ଧରି ରୁମାଲରେ ବେକ ମୁହଁ ପୋଛି ବାହାରକୁ ଆସିଲେ। ସେ ଗଛମୂଳେ ପାର୍କ କରିଥିବା କାର ଆଡ଼କୁ ମୁହେଁଇଲେ।

ସେ କାର ଦରଜା ଖୋଲିବାକୁ ଯାଉଚନ୍ତି ଏତିକିବେଳେ କିଏ ଜଣେ ହଠାତ୍ ତାଙ୍କ ଗୋଡ଼ତଳେ ଢ଼ପକରି ମୁଣ୍ଡିଆ ମାରିଲା । ଚମକି ପଡ଼ି ଫେରି ଚାହିଁଲେ ମହୀମୋହନ ।

ବିଧବା ସ୍ତ୍ରୀ ଲୋକଟିଏ । କାଳୀ । ଶୀର୍ଣ୍ଣକାୟା । କୋଳରେ ଗୋଟାଏ ଛୁଆ । ପାଖରେ ପାଞ୍ଚ ଛଅବର୍ଷର ପିଲାଟିଏ ।

ମୁଣ୍ଡିଆ ମାରି ସାରି ସ୍ତ୍ରୀଲୋକଟି ଓଢ଼ଣା ଦେଇ ଗୋଟାଏ କଣକୁ ଘୁଞ୍ଚିଗଲା । ଶ୍ରୀକାନ୍ତ ଆଗେଇ ଆସି କହିଲା—'ସାର୍ ଗୁରିଆର ସ୍ତ୍ରୀ । ଆପଣଙ୍କୁ ଜୁହାର କରୁଛି । କୃତଜ୍ଞତାରେ ।'

ପଲକରେ ତାକୁ ଥରେ ଦେଖିନେଇ କହିଲେ—'ହଉ ହଉ ହେଲା ହେଲା । ଯା ଏଥର ନିଶ୍ଚିନ୍ତରେ ଘରକୁ ଯା । ଟଙ୍କା ସବୁ ସାଇତି କରି ରଖିବୁ । ବିନର୍ବ୍ୟୟ କରିବୁ ନାହିଁ । ପୋଷ୍ଟ ଅଫିସରେ ଜମା କରିଦେବୁ ।

ଏତକ କହି ସେ ଗାଡ଼ି ନେଇ ଘରକୁ ଫେରିଲେ । କିନ୍ତୁ କାହିଁକି କେଜାଣି ହଠାତ୍ କରି ତାଙ୍କ ମନଟା ବିଷାଦିତ ହୋଇଗଲା କ୍ଷଣକ ପାଇଁ । ସେଇ କୋଟରଗତ ଆଖିର ଅନ୍ତହୀନ ବିଷାଦର କାଳିମା ଭିତରୁ କୃତଜ୍ଞତାରେ ଝକମକ କରୁଥିବା ଏକ ଉଜ୍ଜ୍ୱଳ ଆଭା ଯେମିତି ତାଙ୍କୁ ହତଚକିତ କରିଦେଲା । କାହିଁକି କେଜାଣି ମନେହେଲା ସେଇଟା ସେମିତି କୃତଜ୍ଞତା ନୁହେଁ— ଗୋଟାଏ ଉପହାସ ଓ ବିଦ୍ରୂପର ବିଜୁଳି ।

ପରକ୍ଷଣରେ ସେ ନିଜକୁ ସଂଯତ କରିନେଲେ । ଭୁଲିଯିବାକୁ ଚାହିଁଲେ ସେଇ କାଳୀ, ରୁକ୍ଷକେଶା, ଛିନ୍ନବସ୍ତ୍ରା, ରୁଗ୍‌ଣା ବିଧବାର ଶୁଖିଲା ମୁହଁ ଓ ତାର ଜଳ ଜଳ କରୁଥିବା ଦୁଇଟି ଆଖିଡ଼ୋଳାକୁ । ଜୀବନରେ ଏମିତି କେସ ସେ କେତେ କଲେଣି । କେତେ କୃତଜ୍ଞତା ପାଇଲେଣି । ସବୁ ଦିହଘଷା ହୋଇ ଗଲାଣି । ସବୁ କେବଳ ମନର ଭୁଲ ।

ମହୀମୋହନ ବାବୁ ଲୁଗାପଟା ଛାଡ଼ିଲେ । ବାଥରୁମ ଗଲେ । ଧୂଆଧୋଇ ହୋଇ ଲୁଙ୍ଗିଟିଏ ପିନ୍ଧି ନାତି ସାଙ୍ଗରେ ଖେଳି ବସିଲେ ।

ଆଉ କେତେ ଘଣ୍ଟା ପରେ ସେ ଚାଲିଯିବ । ଆସିବ ଆଉ କେତେଦିନ ପରେ କେଜାଣି ?

ନାତିଟା ଉପରେ ଏଇ ପନ୍ଦରଦିନ ଭିତରେ ଏକ ଗଭୀର ମାୟାର ଆସିଯାଇଥିଲା ମହୀମୋହନଙ୍କର । ଘରଟାକୁ ଜମେଇ ରଖୁଥିଲା ତାର ପିଲାଳିଆ ଦୁଷ୍ଟାମି, ଅଯଥା କାନ୍ଦ, ଅଯଥା ହସର କୋଳାହଳ ଭିତରେ ।

ଭୁବନେଶ୍ୱରରୁ ଫେରୁ ଫେରୁ ରାତି ଏଗାରଟା । ଝିଅଜୋଇଁଙ୍କି ଟ୍ରେନ୍‌ରେ ଉଠେଇ ଦେଇ ଆଉ ଗୋଟାଏ ଦି'ଟା ଜାଗାରେ ଥିବା କାମ ସାରି ବନ୍ଧୁ ଅରୁଣାଭ ରାୟ ସାଙ୍ଗରେ ଭୁବନେଶ୍ୱର କ୍ଳବରେ ଦି'ଟା ପେଗ ହୁଇସ୍କି ମାରି ଆସୁ ଆସୁ ଦଶଟା ବାଜିଗଲା । କୋଉ ଏବେ ସବୁଦିନ ଭୁବନେଶ୍ୱର ଯାଇହେଉଛି ! ନ ଯାଇଥିଲେ ଅରୁଣାଭ ଦୁଃଖ କରିଥାନ୍ତା । ତା'ଛଡ଼ା ଅରୁଣାଭ ସାଙ୍ଗରେ ତାଙ୍କର ବ୍ୟାବସାୟିକ

ସଂପର୍କ ବି ରହିଛି। କିଛି କିଛି କେସ ବି ଅରୁଣାଭ ତାଙ୍କୁ ହସ୍ତାନ୍ତର କରିଥାଏ।

ଖପୁରିଆ ଛକଠୁ ବାଁଆଡ଼କୁ ମୋଡ଼ି ସେ ଖାନନଗର ରାସ୍ତା ଦେଇ ଫେରୁଥିଲେ। ରାତି ଏଗାରଟା ବେଳକୁ ଏପଟ ରାସ୍ତା ପ୍ରାୟ ଜନଶୂନ୍ୟ। ଟ୍ରାଫିକ ଜମା ନାହିଁ।

ସେ ଦୂରରୁ ଦେଖିଲେ, ତାଙ୍କ ଗାଡ଼ିର ଆଲୁଅ ପଡ଼ିବାକ୍ଷଣି କେତେଜଣ ଲୋକ ଠିକ ଯୋଉଠି ବିଦ୍ୟୁତ୍ ଚୁଲା ହୋଇଛି, ସେଇ ପାଖରେ ହଠାତ୍ ତରତର ହୋଇ ତଳକୁ ଖସିଗଲେ। ଶଳେ, ଚୋର କି ଡକାୟତ ହୋଇଥିବେ ବୋଧେ! କିନ୍ତୁ ରାସ୍ତାକଡ଼ରେ ରାସ୍ତାକୁ ପଛକରି ଛିଡ଼ା ହୋଇଥିବା ଆଉ ଦି'ଜଣ ଲୋକଙ୍କୁ ଚିହ୍ନିପାରି ସେ ଆଶ୍ଚର୍ଯ୍ୟ ହେଲେ। ଏତ ରଞ୍ଜୁ ସ୍ୱାଇଁ ଓ ଗୁଲୁ ମିଆଁ।

ଏମାନେ ତାଙ୍କର ଏଜେଣ୍ଟ। ଯୋଉଠି ଅପଘାତ ମୃତ୍ୟୁ ହୁଏ ତାର ଖବର ଏମାନେ ତାଙ୍କୁ ଯୋଗାନ୍ତି। ଏମାନେ ଏତେ ରାତିରେ ଏଠି କେମିତି ? ତାଙ୍କର ସନ୍ଦେହ ହେଲା।

ସେ ଗାଡ଼ିର ଗତି କମାଇ ପଛକୁ ମୁହଁ କରି ଛିଡ଼ା ହୋଇଥିବା ଲୋକଙ୍କ ପାଖରେ ବ୍ରେକ୍ କଷି ଡାକିଲେ—''ଆରେ ରଞ୍ଜୁ!''

ଦି'ଜଣ ଯାକ ପ୍ରଥମେ ଚମକି ପଡ଼ିଲେ। ତା ପରେ ମୁହଁ ଫେରେଇ କହିଲେ—'ସାର୍, ଆପଣ ଏତେ ରାତିରେ ?'

—ମୁଁ ଭୁବନେଶ୍ୱରରୁ ଫେରୁଛି। ଆଉ ତମେ ଦି'ଜଣ ଏଇଠି ଏତେ ରାତିରେ କଣ କରୁଛ ?

—ସାର୍, ଆପଣ ଟିକିଏ ଆଗକୁ ଯାଇ ଗାଡ଼ି ଛିଡ଼ା କରନ୍ତୁ। ଆମେ ଯାଉଛୁ।

ମହୀମୋହନ ଗାଡ଼ିକୁ ପ୍ରାୟ ଗୋଟାଏ ଫର୍ଲଙ୍ଗ ଆଗୁ ନେଇ ଛିଡ଼ା କରେଇ ଅପେକ୍ଷା କଲେ।

—ପ୍ରାୟ ପାଞ୍ଚମିନିଟ୍ ଅପେକ୍ଷା କଲାପରେ ଦି'ଜଣ ଯାକ ଧଇଁସଇଁ ହୋଇ ପହଞ୍ଚିଲେ।

—ସାର, ଆପଣ ଆଜି ଯାଆନ୍ତୁ। କାଲି ସକାଳୁ ଆପଣଙ୍କୁ ସବୁ କଥା କହିବୁ।

—ମଲା, ଏତେ ଡ଼ରୁଛ କାହିଁକି ? କଥା କଣ ? ତମେ ଏଇନେ ନ କହିଲେ ମୁଁ ଆଉ ରାତିରେ ଶୋଇପାରିବି ନାହିଁ।

—ସାର, କଥା କଣ କି ଆଜି ସନ୍ଧ୍ୟାବେଳେ ଖବର ପାଇଲୁ ଆକ୍‌ସିଡେ଼ଣ୍ଟରେ ଗୋଟାଏ ଲୋକ ମରିଚି ଠିକ ମହାନଦୀ ବ୍ରିଜ ପାଖରେ। ଟ୍ରକ କି କାର କିଛି ଜଣାନାହିଁ। ତେବେ ଆମେ ଯାଇ ଖବର ନେଲୁ। ହେଲେ ଲୋକଟା ପାଗଲଟାଏ। ତେଣୁ ଆଉ କିଛି ହେବାର ନ ଦେଖି ଫେରୁଛୁ, ଦେଖିଲୁ, ବେହେରା ପଂଝାଏ ଯାଉଛନ୍ତି ଲାସ ଉଠାଇବାକୁ।

—ତା ସାଙ୍ଗରେ ତମର ସଂପର୍କ କଣ ?

—ସାର, କଥା କଣ କି—[ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ରଞ୍ଜୁ କହିଲା ]—ଆଜିକାଲି

ସରକାର ରପ୍ତାନି ବନ୍ଦ କରିଦେଇଛନ୍ତି କିନ୍ତୁ ଚୋରାଲୁଚାରେ ସବୁ ଚାଲିଛି। ବେଓ୍ୱାରିସ ଲାସରେ ସନ୍ଧାନ ପାଇ ଏ ବେହେରାମାନେ ତାକୁ ନେଇ ଡାକ୍ତରଖାନା ନେବା ବାହାନାରେ ଏଇଠିକୁ ନେଇ ଆସିଥିଲେ। ଆମେ ଦେଖିଲୁ, ଯଦି କିଛି ଉପୁରି ଆୟ ହୋଇଯାଏ।

—ଉପରି ଆୟ ? କିରେ କଥା କଣ ?

—ଆପଣ କଣ ଜାଣି ନାହାନ୍ତି ସାର, ଆମ ଦେଶରୁ ବିଦେଶକୁ ମଣିଷ କଂକାଳ ରପ୍ତାନି ହୁଏ। ପାଞ୍ଚବର୍ଷ ଆଗରୁ ବେଶ ଯାଉଥିଲା ଏସବୁ। ତେବେ ଆଜିକାଲି ସରକାର ଆଇନ କରିଦେଇଛନ୍ତି ଆଉ ହୋଇପାରିବ ନାହିଁ। ତେବେ ଲୁଚାଚୋରାରେ ସବୁ ଚାଲିଛି ସାର !

—ଆଚ୍ଛା। କଂକାଳ ପିଛା କେତେ ମିଳେ ?

—ଠିକ ଜାଣିନୁ ସାର, ତେବେ କଂକାଳ ପିଛା ପାଞ୍ଚରୁ ଦଶ ହଜାର ଯାଏ।—

—କେତେ ? ଦଶ ହଜାର ? ମିଛୁଆ କାହାଁକା ! ହେଲେ ତମର ଏଥିରେ ଆୟ କଣ ?

—'ସାର୍, କମିଶନି, ବେବସା ତ ସାର ଏକା। କମିଶନି ଆପଣଙ୍କ ପାଖରୁ—ନ ହେଲେ ଯାଙ୍କ ପାଖରୁ।' ଭକ ଭକ ତାଡ଼ିଗନ୍ଧ ନିଆଁଚେଙ୍କ ଲାଗିଲା ପରି ବାହାରୁଥାଏ ରଞ୍ଜୁ ମୁହଁରୁ। ଚମକି ପଡ଼ିଲେ ମହୀମୋହନ। ସେ ଆଉ କିଛି ନ କହି ଗାଡ଼ିରେ ଷ୍ଟାର୍ଟ୍ ଦେଲେ।

ଦାନ୍ତ ଚିପି ନିଜକୁ ନିଜେ ଫିସ୍ ଫିସ୍ ସ୍ୱରରେ କହିଲେ—'ଶଳା, ବଦମାସ ! ମଦୁଆ ଛୋଟଲୋକ, କୋଉଁଠିକାର !'

ତେବେ କଥାଟା କଣ ଠିକ ନୁହେଁ ?

ଏଇ ପବିତ୍ର ଭାରତ ଭୂମିରେ ଗୋଟାଏ ଜୀଅନ୍ତା ଗରିବ ମଣିଷର ମୂଲ୍ୟ ଅପେକ୍ଷା ଗୋଟାଏ ମଲା ଗରିବ ମଣିଷର ଦାମ ଯଥେଷ୍ଟ ବେଶି।

-୦-

# ସ୍ୱର୍ଗ ରାଇଜର ଝର୍କା

ନାତି ଖେଳଉଛନ୍ତି ତପନବାବୁ ଓ ତାଙ୍କ ସ୍ତ୍ରୀ। ପଛପାଖ ବାରଣ୍ଡାରେ ମଶିଣାଟିଏ ପକାଇ ଖରାପିଠିଆ ହୋଇ ବସିଛନ୍ତି ତପନବାବୁଙ୍କ ସ୍ତ୍ରୀ। ଡିସେମ୍ବର ସକାଳର ଅଳସ ନରମ ଖରା ବାରଣ୍ଡାରେ ତେରଛେଇ ପଡ଼ିଛି। ନାତି ଟୋକାଟା କେତେବେଳେ ବଲଟିଏ ଧରି ଏ ପାଖ ସେପାଖକୁ ବୁଲୁଛି, ପୁଣି କେତେବେଳେ ରୋଷେଇ ଘରୁ ତାଟିଆଟିଏ, ଡ଼େକ୍‌ଚିଟିଏ ଧରି ଆଣି ତଳେ ରଖୁଛି। କେତେବେଳେ ଅବା କୋଳରେ ବସି ପଡ଼ି ଟିକିଏ ଗେଲ ହୋଇଯାଉଛି। କଲର କଲର କଥା କହୁଛି। ପାଖ ଚେୟାରରେ ବସି ଚା' ପିଉ ପିଉ ନୀରବରେ ଉପଭୋଗ କରୁଛନ୍ତି। ତପନବାବୁ ପୁଣି ମଝିରେ ମଝିରେ ତା ସାଙ୍ଗରେ ଟିକିଏ କଥା ହୋଇ ଯାଉଛନ୍ତି ତେବେବେଳେ ଅବା ଟିକିଏ ପାଟିକରି ସାବଧାନ କରି ଦେଉଛନ୍ତି।

ପଚିଶ ବର୍ଷ ତଳେ ଏମିତି ଝିଅକୁ ଖେଳାଉଥିଲେ ସ୍ୱାମୀ ସ୍ତ୍ରୀ ଦି'ଜଣ। କିନ୍ତୁ ସେତେବେଳେକାର ସେଇ ଆନନ୍ଦ ଆଜିକାର ଆନନ୍ଦ ଭିତରେ କେମିତି ଟିକିଏ ଫରକ ରହି ଯାଉଛି। ସେବଟା ଥିଲା ପିତୃତ୍ୱରେ ଅହଙ୍କାର ପୌରୁଷର ଅହମିକାର ତଥା ଭବିଷ୍ୟତର ଆଶାର ଆନନ୍ଦ। କିନ୍ତୁ 'ଅଜା' ହେବାର ଆନନ୍ଦ ଏକ ଅନାବିଳ ଆନନ୍ଦ। ହୁଏତ ବାହାରକୁ ଦେଖିବାକୁ ଗଲେ ସେ ଆନନ୍ଦର ପାର୍ଥକ୍ୟ ବୁଝା ପଡ଼େ ନାହିଁ। କିନ୍ତୁ ତଥାପି ମନେହୁଏ ଏ ଆନନ୍ଦ ଭିତରେ ଯେମିତି ଆହୁରି ଟିକିଏ ଗାଢ଼ତର ଆନନ୍ଦ ମିଶି ଯାଉଛି। ଯୋଉ ଆନନ୍ଦରେ ପ୍ରାପ୍ତିର ଆଶାନାହିଁ ଅହଙ୍କାର ନାହିଁ— ଏକ ଅହେତୁକ ଆନନ୍ଦ।

ସ୍ନେହ ତ ଜଳ ପରି ସବୁବେଳେ ନିମ୍ନଗାମୀ। ଆଜିକାଲି ପୁଅ ଝିଅଙ୍କୁ ଦେଖିଲେ ଯେତେ ଆନନ୍ଦ ଲାଗୁନାହିଁ ନାତି ନାତୁଣୀଙ୍କୁ ଦେଖିଲେ ତାଠାରୁ ବେଶୀ ଖୁସୀ ଲାଗୁଛି। କେମିତି ଗୋଟାଏ ପରିପୂର୍ଣ୍ଣତାର ଭାବ ଆସି ଯାଉଛି। ତୃପ୍ତିର ଏକ ମହାନ ଶାନ୍ତତା ତାଙ୍କର ମାନସିକତାକୁ ଆଚ୍ଛନ୍ନ କରି ଦେଉଛି। ସବୁ ପ୍ରାପ୍ତିର ଶେଷ ହୋଇ ଯାଇଛି ଯେପରି।

ଏଇ ଗୁଡ଼ୁଡୁ ସେ ପଟେ ଯାଆନା ପଡ଼ିଯିବୁ। ଅଢ଼େଇବର୍ଷ ପୂରିଗଲାଣି ନାତିକୁ। ଗୁଲୁଗୁଲିଆ ଖନେଇ ଖନେଇ କଥା କହୁଛି। ସବୁ ଜାଣିଲାଣି ସବୁ ଶିଖିଲାଣି।

ଅଜା କ'ଣ ପିଉଛ? ନାତି ପଚାରିଲା।

ଅଜା ଚା ପିଉଛନ୍ତି।

—ଗୁଡ଼ୁଡୁ ଚା ପିଇବ?

ନାଇଁ, ଗୁଡ଼ୁଡୁ, ଚା ପିଇବନି। ଗୁଡ଼ୁଡୁ ଦୁଦୁ ଖାଇବ।

—ଗୁଡ଼ୁଡୁ ଦୁ ଦୁ ପିଇବ?

—ହଁ।

—ଗୁଡ୍‌ଡୁ, ଭାତ ଖାଇବ। ଅଣ୍ଡା ଖାଇବ।

—ନା, ଗୁଡ୍‌ଡୁ ଭାତ ଖାଇବନି, ଏତକ କହୁ କହୁ ସେ ଦୌଡ଼ି ଦୌଡ଼ି ଚାଲିଗଲାଣି ଘର ଭିତରକୁ।

ତପନ ବାବୁ ପାଟିକଲେ 'ଏୟ ଗୁଡ୍‌ଡୁ, ବହି ଘାଣ୍ଟନା, ତପୁ ମାମୁଁ ବାଡ଼େଇବ।' ଗୁଡ୍‌ଡୁ ସେଇଠି ପୁଣି ଚରକିବାଟି ଆସି ତାଙ୍କ ପାଖରେ ପହଞ୍ଚି କହିଲା 'ଥାଉ। ଗୁଡ୍‌ଡୁ ବହି କାହିଁ?'

—ଗୁଡ୍‌ଡୁ ପାଇଁ ନୂଆ ବହି ଆସିବ। ଏତେ ବହି। କେତେ ବହିରେ?

—ଏତେ ବହି।

ଏତିକିବେଳେ ସାନପୁଅ ତପୁ ପେଣ୍ଟସାର୍ଟ ପିନ୍ଧି କଲେଜ ଯିବାକୁ ବାହାରିଲା। ତାକୁ ଦେଖି କହିଲା ଏୟ ଗୁଡ୍‌ଡୁ, ଆ ବୁଲିଯିବା।' ବୁଲିଯିବା ନାଁ ଶୁଣି ଗୁଡ୍‌ଡୁ ଦୁଇହାତ ଟେକି ତା ପାଖକୁ ଧାଇଁଲା। ତପୁ ତାକୁ କାଖ କରି କହିଲା ରହ, ମୁଁ କଲେଜରୁ ଆସେ ତୋତେ ବୁଲେଇ ନେବି'।

ଗୁଡ୍‌ଡୁ କଲେଜ ଯିବନି?

—ନାଇଁ ମାମୁଁ କଲେଜ ଯିବ।

—ଗୁଡ୍‌ଡୁ କୁଆଡ଼େ ଯିବ?

ଗୁଡ୍‌ଡୁ ବଡ଼ ହେଲେ କଲେଜ ଯିବ।, ଗୁଡ୍‌ଡୁ ଜିଦଧରି, ପାଟି କଲା।

—ଏଇ ତ ତାକୁ କନ୍ଦେଇଲୁ। ଯା ତାକୁ ଆଗେ ଟିକେ ବୁଲେଇ ଆଣ। କାହିଁକି କହିଲୁ ତାକୁ, କଲେଜ ବାହାରିଲୁ କହିଲୁ ଚାଲ ବୁଲିଯିବା। ନହେଲେ ଏଇନେ ପାଟିକରି କମ୍ପେଇବ। ସମ୍ଭାଳି ହେବନି।

ଏଇଟା କାହା ସାଇକେଲ।

ମାମୁଁର, ଆଉ ଗୁଡ୍‌ଡୁର?

ଗୁଡ୍‌ଡୁର ରେଡ଼ ସାଇକେଲ୍ ଅଛି। ଏଇଟା ବଡ଼ ସାଇକେଲ। ଗୁଡ୍‌ଡୁ ଚଲେଇ ପାରିବନି?

ଆଉ ଗୁଡ୍‌ଡୁ କୋଉଟା ଚଲାଇବ।

—ଗୁଡ୍‌ଡୁ ରେଡ୍ ସାଇକେଲ ଚଲେଇବ।

ପ୍ରାୟ ପାଞ୍ଚଦିନ ହେଲା ନାତି ଆସିଲାଣି। ସେହି ଦିନଠାରୁ ତାଙ୍କ ଘରେ କାହାରି ଆଉ ବିଶ୍ରାମ ନାହିଁ। ସେ ଶୋଇବା ପର୍ଯ୍ୟନ୍ତ। ସମସ୍ତେ ତା ପଛରେ।

ଗୁଡ୍‌ଡୁ ବାହାରକୁ ଚାଲିଗଲା ପେର ହଠାତ୍ ସାରା ଘରଟା ଯେମିତି ହଠାତ୍ ନିସ୍ତବ୍ଧ ହୋଇଗଲା। କେମିତି ଖାଁ ଖାଁ ଲାଗିଲା ଚାରି ଆଡ଼।

ଗୋଟାଏ ଆନନ୍ଦର ଝଡ଼ ଯେପରି ହଠାତ୍ ଘୂର୍ଣ୍ଣି ଖାଇ ପୁଣି ଚାଲିଗଲା ଅନ୍ୟ ଆଡ଼କୁ ମୁହୂର୍ତ୍ତକ ମଧ୍ୟରେ।

ସେଇ ମୁହୂର୍ତ୍ତରେ ସ୍ତବଧତା ଭିତରେ ହଠାତ୍ 'ଯେମିତି ଗୋଟାଏ ଚେତନାର ଝଲକ ବିଜୁଳି ପରି ହଠାତ୍ ଉଦ୍ଭାସିତ ହୋଇ ଉଠିଲା ତପନବାବୁଙ୍କ ମନରେ।

ଆଜି ପର୍ଯ୍ୟନ୍ତ ନାତି ଟୋକାଟି 'ମୁଁ' ବୋଲି ଶବ୍ଦଟିଏ ଉଚ୍ଚାରଣ କରିନାହିଁ। 'ଗୁଡ୍‌ଡୁ, ଖାଇବ' ଗୁଡ୍‌ଡୁ ଭୋକ କରୁଛି' ଗୁଡ୍‌ଡୁ ନିଦ ମାଡୁଛି' ଗୁଡ୍‌ଡୁ ବୁଲେଇ ନେ।'' ସବୁକଥା ସେ କହୁଛି-ଅଥଚ 'ମୁଁ ଖାଇବି' ମୋତେ ଭୋକ କରୁଛି' ଏକଥା ଏପର୍ଯ୍ୟନ୍ତ ତାର କଥାରେ ଫୁଟିନାହିଁ। ତା'ର ଶୈଶବ ଚେତନାରେ 'ମୁଁ'ତ୍ୱର ଅହଙ୍କାର ଆଜିଯାଏଁ ବି ପ୍ରବେଶ କରି ପାରିନାହିଁ। ସେ ଯେପରି ଅନ୍ୟ ଜଣେ ଅନ୍ୟ ଜଣଙ୍କର କଥା କହୁଛି। ଏକ ନିର୍ଲିପ୍ତ ଆତ୍ମା, ଯେପରି 'ଦେହ'ଟିକୁ ବିଚ୍ଛିନ୍ନ କରି ଦେଖୁଛି।

ହଠାତ୍ କିଛି ତାଙ୍କର ମନେ ପଡ଼ିଗଲା ଦୀର୍ଘ ପଚିଶ ବର୍ଷ ତଳର ଗୋଟିଏ କଥା। ବୋଉକୁ ସାଙ୍ଗରେ ନେଇ ସେ ଯାଇଥିଲେ ଜଣେ ମହାପୁରୁଷଙ୍କର ଆଶ୍ରମକୁ ଦର୍ଶନ ପାଇଁ।

ଆଶ୍ରମ ଘର ବାରଣ୍ଡା ଉପରେ ଗୋଟାଏ ତକ୍ତପୋଷ ପଡ଼ିଥାଏ। ଗୋଟାଏ ଶପ ଉପରେ ଦୁଇଟି ବଡ଼ ମାଣ୍ଡିକୁ ଆଉଜି ସେ ବସଥାନ୍ତି। ଦୀର୍ଘାଙ୍ଗ, ଗୌରବର୍ଣ୍ଣ, ପୃଥୁଳକାୟ ପୁରୁଷ। ସେଇଠି ସେ ଆଉଜି ବସିଥିଲା ବେଳେ ବି ଠିଆ ହୋଇଥିବା ଲୋକଠାରୁ ସେ ଉଚ୍ଚ ଦିଶୁଥାନ୍ତି। ମୁଣ୍ଡବାଳ ଦାଢ଼ି ସବୁ ଝୋଟ ପରି ଧଳା। ଦାଢ଼ି ସବୁ ଲମ୍ବି ଆସିଥାଏ ଛାତି ପର୍ଯ୍ୟନ୍ତ। ମୁଣ୍ଡବାଳକୁ କିଏ କୁଣ୍ଡାଇ ଗୋଟାଏ ଜୁଡ଼ା ପରି ବାନ୍ଧି ଦେଇଥାଏ ମୁଣ୍ଡ ଉପରେ। ଖାଲି ଦେହ। ସେ ଚାହିଁ ରହିଥାନ୍ତି ଗୋଟାଏ ଆଡ଼େ। ଅଥଚ ଅଦ୍ଭୁତ ଯେ ପଚାଶ ଜଣଯାଏ ଲୋକ ସବୁ ଭାବୁଥାନ୍ତି ମୋଆଡ଼େ ଆଡ଼େ ଚାହିଁଛନ୍ତି।

କେତେ କେତେ ଲୋକ ନିଜ ନିଜର ଦୁଃଖ ବିପତ୍ତି ହାରି ଗୁହାରି ଜଣାଇବା ପାଇଁ ଯାଇଥାନ୍ତି। ଜଣକ ପରେ ଜଣେ ତାଙ୍କ ପାଦଛୁଇଁ ମୁଣ୍ଡିଆ ମାରି ଦୁଃଖ ଜଣାଉଥାନ୍ତି।

ସେମିତି ଅର୍ଦ୍ଧନିର୍ମଳିତ ଆଖିରେ ସ୍ମିତ ହସି ଉତ୍ତର ଦେଉଥାନ୍ତି।

—ବାବା, ଆପଣ ଉଦ୍ଧାର ନ କଲେ କିଏ କରିବ! ଆମେ ତ ଆପଣଙ୍କ ଆଶ୍ରିତ। ବାବା, ମୋତେ ଏ ବିପତ୍ତିରୁ ଉଦ୍ଧାର କର ବାବା !!!

—ବାୟା' କଣ କରିପାରିବ? ଏ ପାଗଳଟା କ'ଣ ଜାଣେ? ବାୟା କଣ ଡାକ୍ତର ନା କବିରାଜ? ଭଗବାନଙ୍କୁ ଡାକ। ଭଗବାନଙ୍କ ନାମ ନେ। ସେ ତୋତେ ଉଦ୍ଧାର କରିବେ। ବାୟା କିଏ?

ବାବା, ଭାସିଗଲି ବାବା, ମୋତେ ଏ ଦାରୁଣ ବିପତ୍ତିରୁ ଉଦ୍ଧାର କର ବାବା।

କହିଲି ପରା ବାୟା କ'ଣ କୁବେର? ତୋତେ ଧନସମ୍ପତ୍ତି ଦେଇ ଦେବ। ଭଗବାନଙ୍କୁ ଡାକ। ଇଚ୍ଛାହେଲେ ସେ ତୋତେ ଦେବେ। ସେତେବେଳକାର ଆଉ ଗୋଟିଏ ଦୃଶ୍ୟ ଆଉଥରେ ଜୀବନ୍ତ ହୋଇ ଉଠିଲା ତାଙ୍କ ଆଖିରେ।

ଦମ୍ପତିଟିଏ ଗୋଟିଏ ଚାରିବର୍ଷର ଶିଶୁକୁ ନେଇ ତାଙ୍କ ପାଦତଳେ ଗଡ଼େଇ ଦେଇ ଲମ୍ବ ଲମ୍ବ ହୋଇ ପଡ଼ିଗଲେ ବାବାଙ୍କ ଗୋଡ଼ତଳେ। ଭେଁ ଭେଁ ହୋଇ କାନ୍ଦୁଥାନ୍ତି ଦି'ଜଣ ଯାକ ପାଦ ଦୁଇଟାକୁ ଜାବୁଡ଼ି ଧରିଥାନ୍ତି।

ବାବା ଉଦ୍ଧାର କର ବାବା। ଉଦ୍ଧାର କର। ପୁଅଟିକୁ। ଭଲକରି ଦିଅ।
ନହେଲେ ପାଦ ଛାଡ଼ିବୁନାହିଁ। ଏଇଠି ଓପାସରେ ପ୍ରାଣହାରି ଦେବୁ।'

ଚାରିବର୍ଷରା ଶିଶୁଟିଏ। ଅଷ୍ଟବକ୍ର ପରି ଚାଲୁଥାଏ। ନା ଗୋଡ଼ ଠିକ୍ ପଡୁଥାଏ। ନାଁ ହାତ ଠିକ ଥାଏ। ନଡ଼ବଡ଼ହୋଇ ପାଦେ ଚାଲି ଗଡ଼ିପଡୁଥାଏ ତଳେ। ତା ଆଖି ଯୋଡ଼ିକ କିନ୍ତୁ ସେମିତି ନିଷ୍ପାପ। ଏକ ଗଭୀର ବିସ୍ମୟରେ ସେ ଚାହିଁ ରହିଥାଏ ଚାରିଆଡ଼। ହଠାତ ବାପାମା'ଙ୍କୁ କାନ୍ଦିବାର ଦେଖି ସେ ବି ରାହାଧରି କାନ୍ଦି ଉଠିଲା।

ହଠାତ୍ ଯେମିତି ଆଦ୍ର ହୋଇ ଉଠିଲା ନିଷ୍କମ୍ପ ଆଖି ଯୋଡ଼ିକ। କ୍ଷଣକ ପାଇଁ ଥରି ଉଠିଲା ଆଖିର ପତା ଯୋଡ଼ିକ। ତଥାପି ମୃଦୁ ହସଟିଏ ଲାଖି ରହିଥାଏ ଓଠରେ।

ଧୀରେ ଧୀରେ କହିଲେ 'ବାୟା କଣ କରିବରେ? ପୂର୍ବଜନ୍ମର ପ୍ରାରବ୍ଧର ଫଳ ତ ଅବଶ୍ୟ ଭୋଗିବାକୁ ପଡ଼ିବ। ତା'ପରେ ଧୀରେ ଧୀରେ ପିଲାଟିର ଚିବୁକରେ ହାତ ମାରିଦେଲେ ସେ ପିଲାଟି ହଠାତ୍ ଶାନ୍ତ ହୋଇଗଲା। ତାପରେ ସ୍ୱଗତୋକ୍ତି କଲାପରି ବାବା କହିଲେ ବାବୁରେ ଆର ଜନ୍ମରେ କେତେ ଲୋକର ହାତଗୋଡ଼ ଭାଙ୍ଗିଥିଲୁ ଏବେ ସିନା ତୋର ମନେ ପଡୁନାଇଁ। ହେଲେ ସେ କର୍ମଫଳ କୁଆଡ଼ ଯିବ? କଷ୍ଟ ପାଇବୁ। ତେବେ ସିନା ଉଦ୍ଧାର ହେବୁ। ହରିନାମ କର। କହ, ରାମ ରାମ, ହରି ହରି।''

ଏତିକିବେଳେ ଆଶ୍ରମର ଦିଜଣ ଶିଷ୍ୟ ଆସି ସ୍ୱାମୀ ସ୍ତ୍ରୀ ଦିଜଣଙ୍କୁ ଜୋର ଜବରଦସ୍ତ ଉଠେଇ ଆଣିଲେ। 'ଆରେ, ଏ କଣ ହେଉଛି? ବାବାଙ୍କ ପାଦ ଛାଡ଼? ବାବାଙ୍କୁ କଷ୍ଟ ହେଉଛି। ଚାଲ୍ ଚାଲ୍ ଏଠୁ।''

ବୋଧହୁଏ ତପନ ବାବୁଙ୍କର ଆଖିର ଭୁଲ୍। କାରଣ ପର ମୁହୂର୍ତ୍ତରେ ସେ ଦେଖିଲେ ବାବାଙ୍କ ଆଖି ଯୋଡ଼ିକ ସେମିତି ଶାନ୍ତ, ସମାହିତ, ଅର୍ଦ୍ଧନିମିଳିତ। ସେଥିରେ ଯେମିତି ଜାଗତିକ ଦୁନିଆର, ଦୁଃଖ ଶୋକ କିଛି ବୋଲି କିଛି ସ୍ପର୍ଶ କରୁନାହିଁ।

ପୁଣି ସେମିତି ସେ ସ୍ୱଗତୋକ୍ତି କଲା ପରି ସ୍ୱାମୀ ସ୍ତ୍ରୀ ଦିଜଣଙ୍କ ଉଦ୍ଦେଶ୍ୟରେ କହିଲେ ସେ ତ ହାତ ଭାଙ୍ଗୁଥିଲା, ତମେ ତାକୁ ସାହାଯ୍ୟ କରୁଥିଲ କାହିଁକି? ସେଇ ହତ୍ୟା ଲୁଣ୍ଠନର ଅନ୍ୟାୟ ଧନରେ ଭାଗ ବସଉଥିଲ କାହିଁକି? ବାୟା ଏବେ କଣ କରି ପାରିବ? ବାୟା କଥା ମାନ। ଠାକୁରଙ୍କୁ ଡାକ। ପ୍ରାୟଶ୍ଚିତ୍ତଠାରୁ ବଡ଼ ପ୍ରାର୍ଥନା କିଛ ନାହିଁ। ଅନୁତାପର ଲୁହଠାରୁ ବଡ଼ ନୈବେଦ୍ୟ ଆଉ କିଛି ନାହିଁ। ଠାକୁରଙ୍କୁ ଡାକ।''

ଜାଗତିକ ରୋଗ ବୈରାଗ୍ୟ ଏମିତି ସୁନ୍ଦର ବ୍ୟାଖ୍ୟା ସେ ଜୀବନରେ କେବେ ଶୁଣି ନାହାନ୍ତି। ହୁଏତ କାହାର ପୂର୍ବଜନ୍ମ ବା ପୁନର୍ଜନ୍ମ ଉପରେ ବିଶ୍ୱାସ ଥାଇପାରେ ନ ଥାଇପାରେ। କିନ୍ତୁ ଅନ୍ୟାୟ ବିରୁଦ୍ଧରେ ଏ ପ୍ରକାର ସରଳ ସୁନ୍ଦର ନୈତିକ ଶିକ୍ଷାର କଥା ସେ କେବେ ଶୁଣି ନଥିଲେ।

ପ୍ରାୟ ପୂରା ଗୋଟାଏ ଦିନ ସେ ଆଶ୍ରମରେ ବିତାଇ ଥିଲେ। ଶହ ଶହ ଲୋକ ଆସୁଥାନ୍ତି, ଯାଉଥାନ୍ତି। କିନ୍ତୁ ତାଙ୍କୁ ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଥିଲା ଗୋଟାଏ କଥା। ସେଇ ପୁରା ଦିନଟି ଭିତରେ କେତେଶହ ଜଣ ଆର୍ତ୍ତଙ୍କର ଦୁଃଖ ଦୁର୍ଦ୍ଦଶା ଶୁଣିବା ଭିତରେ ଥରକ ପାଇଁ ମଧ୍ୟ ସେ ମହାପୁରୁଷଙ୍କ ମୁହଁରୁ ମୁଁ ଶବ୍ଦଟି ଉଚ୍ଚାରଣ ହୋଇ ନଥିଲା।

ସେଇ ମହାପୁରୁଷ ଓ ତାଙ୍କର ଅବୋଧଶିଶୁ ନାତିଟୋକାର ବ୍ୟବହାର କଥାବାର୍ତ୍ତାରେ ଏକ ଆଶ୍ଚର୍ଯ୍ୟ ପ୍ରକାର ସାମଞ୍ଜସ୍ୟ ଲକ୍ଷ୍ୟ କରି ସେ ଏଗ ଗଭୀର ବିସ୍ମୟରେ ପୁଲକିତ ହୋଇ ଉଠିଲେ।

ଯୋଉଠି ମୁଁ ନାହିଁ ସେଇଠି ଆସକ୍ତି ନାହିଁ, ଅହଂକାର ନାହିଁ, ଲୋଭ ନାହିଁ ଭୟ ନାହିଁ, କାମନା ନାହିଁ।

ସେ ହଠାତ୍ କରି ଲକ୍ଷ୍ୟ କଲେ ମାତ୍ର ପଅରିଦିନ ତଳେ ଦୁଇଶହଟଙ୍କା ଦେଇ କିଣି ଆଣିଥିବା ପରିତ୍ୟକ୍ତ ଖେଳନାଟି ଆଡ଼େ। ଗୁଡ୍‌ଡୁକୁ କେତେ ନିର୍ବିବାଦରେ କାଗଜର ଜରିଟି ବଦଳରେ ଏହାକୁ ତଳେ ପକେଇ ଦେଇ ପଳେଇଛି। ବିନ୍ଦୁ ମାତ୍ର ଆସକ୍ତି ନାହିଁ ତାର।

ବୋଧହୁଏ ଏଇଥି ପାଇଁ କହନ୍ତି ମହାପୁରୁଷମାନେ ଏମିତି ଗୋଟାଏ ଗୋଟାଏ ତିନି ବର୍ଷର ଶିଶୁ। ସରଳ ନିଷ୍କପଟ, ନିର୍ମୋହ ନିରହଙ୍କାର ଆସକ୍ତି ରହିତ ନିର୍ମଳ ଉଲ୍ଲଙ୍ଗ ଆତ୍ମା।

ତାଙ୍କର ମନେ ପଡ଼ିଥିଲା ବାଇବେଲ୍‌ର ଥିବା ସେଇ ଉକ୍ତିଟି—

The kingdom of heaven is revealed unto the babes, but hidden from the wise and the prudent".

ବୋଧହୁଏ ପରିଣତ ବୟସରେ ନାତିମାନେ ଏଇ ସତ୍ୟର ଉପଲବ୍ଧି କରାଇଥାନ୍ତି ଏବଂ ସେଥିପାଇଁ ବୋଧହୁଏ ବାପ ହେବାର ଆନନ୍ଦ ଅପେକ୍ଷା ଅଜା ବା ଜେଜେ ହେବାର ଆନନ୍ଦ ଏତେ ମଧୁର, ଏତେ ରସାଣିତ।

-୦-

# ଅଶରୀରୀ ଉନ୍ତ୍ରୀ

ବେଳେବେଳେ ମୋର ମନେହୁଏ ମୋର ପୂର୍ବପୁରୁଷମାନେ ବୋଧହୁଏ ବେଦୁଇନ୍ ଥିଲେ; ନହେଲେ ମୋ' ରକ୍ତରେ କାହିଁକି ଏମିତି ଗୋଟାଏ ସର୍ବନାଶୀ ଯାଯାବରୀ ନିଶା ? କିଛିଦିନ ଗୋଟାଏ ଜାଗାରେ ରହିଯିବା ପରେ ହଠାତ୍ ଯେମିତି ସବୁକିଛି ପୁରୁଣା ମନେହୁଏ । ସବୁକିଛି ଯେମିତି ଘସରା ହୋଇଯାଏ । ଭଲ ଲାଗେନାହିଁ କିଛି । ଉଚ୍ଚାଟ ଲାଗେ ମନ । ମନେହୁଏ ସତେଯେମିତି ମୋତେ କିଏ ଡାକୁଛି କାହିଁ କେଉଁ ଦୂରଦୂରାନ୍ତରର ଦେଶରୁ । ସେଇଠି କିଏ ଯେମିତି ମୋତେ ଅପେକ୍ଷା କରୁଛି । ପ୍ରତୀକ୍ଷା କରି ରହିଛି । ତା'ର ହୃଦୟର ଆହ୍ୱାନ ନିଃଶବ୍ଦରେ ଆସି ମୋ' ହୃଦୟରେ ପ୍ରତିଧ୍ୱନି ତୋଳୁଛି । ମୋତେ ଉନ୍ମନା କରିପାରିଛି ତା'ର ନିଃଶବ୍ଦ ଆହ୍ୱାନ ।

ଛଟପଟ ଲାଗେ । କାହାର ଦୁରନ୍ତ ଆକର୍ଷଣ ମୋତେ ତା'ର ଅଦୃଶ୍ୟ ଶକ୍ତିରେ ଟାଣି ନେବାପରି ଲାଗେ । ମୁଁ ଆଉ ରହିପାରେନା । ସୁଟ୍‌କେଶ୍ ସଜାଡ଼େ । ବାହାରି ପଡ଼େ ଆଉ ଗୋଟାଏ ନୂଆ ଜାଗାକୁ ।

ସେଇଥିପାଇଁ ବୋଧହୁଏ ଏଇ ସେଲ୍‌ସମ୍ୟାନ ଚାକିରୀଟା ମୋତେ ଏତେ ବେଶୀ ଭଲ ଲାଗେ । ମୋ' ମନମୁତାବକ ଚାକିରୀ । ଗୋଟାଏ ସର୍ବଭାରତୀୟ କଂପାନୀର ସେଲ୍‌ସ ରିପ୍ରେଜେଣ୍ଟେଟିଭ୍ । ପୂର୍ବଭାରତ ପାଇଁ । ପୁଣି ସେଇଠୁ ପାଟନା, ମୁଜାଫରପୁର, ରାଞ୍ଚି, ଟାଟା, କଲିକତା, ଗୌହାଟୀ ଇମ୍ଫାଲ, ଦିମାପୁର, ଶିଲଂ ପୁଣି ଆଉଥରେ ଭୁବନେଶ୍ୱର । ମାସକୁ ପଚିଶଦିନ ଟୁର୍‌ରେ କଟେ । କୋଉଠି ତିନିଦିନ ଚାରିଦିନରୁ ବେଶୀ ନୁହେଁ । କେବଳ ଭୁବନେଶ୍ୱରରେ ହିଁ କଟାଇଥାଏ ଏକାଦିକ୍ରମେ ପନ୍ଦରଦିନ ।

ବୋଉ ବ୍ୟସ୍ତ ହୁଏ । "କି ବାରବୁଲା ଚାକିରି କଲା ଯେ ଘରେ ଘଡ଼ିଏ ରହିପାରୁ ନାହିଁ । ଖିଆପିଆରେ ଠିକଣା ନାହିଁ । ଦିହଟା ଶୁଖିଗଲାଣି । କ'ଣ ମିଳିବ ଆମର ଏ ଚାକିରିରୁ ? ଅନ୍ୟ ଗୋଟାଏ ଚାକିରି ଦେଖ । ଏମିତି ଚାକିରିରେ ପଛକୁ ଘରସଂସାର ଦେଖିବୁ କେତେବେଳେ ?"

ସାଙ୍ଗସାଥି କହନ୍ତି "ବାଃ ତୋର କେଡ଼େ ଭାଗ୍ୟ । କେତେ ଦେଶ ବୁଲୁଛୁ । କେତେ ବଡ଼ ବଡ଼ ହୋଟେଲରେ ରହୁଛୁ । କେତେ ପ୍ରକାର ଖାଦ୍ୟ ଖାଉଛୁ ? ମଜାରେ ଅଛୁ, ଶଳା । କାବାରେ ବି ଦେଖୁଥିବୁ ମନଇଚ୍ଛା, ନୁହେଁ ? କେତେ ଲୋକଙ୍କ ସହିତ ପରିଚୟ ହେଉଥିବ ?" ଆଉ ଆଖିମିଟିକା ମାରି ପଚାରନ୍ତି— "ଆଉ, ନିଶ୍ଚେ ତୁ ସବୁଦେଶର ମାଲ୍ ଚାଖି ସାରିଥିବୁ ନୁହେଁ।" ମୁଁ ବୁଝେ ସେମାନଙ୍କର ଈର୍ଷାକୁ ।

ସେମାନଙ୍କର ଆଶାକୁ ଲୋଭକୁ। ନପାଇବାର ହାଇଁପାଇଁ ପଣିଆକୁ। ଅପେକ୍ଷାକୃତ ଗମ୍ଭୀର ବନ୍ଧୁମାନେ କହନ୍ତି ''ଏଇନେ ସିନା ମଜା ଲାଗୁଛି ବୁଲିବାକୁ। ପରେ ମଜା ବୁଝିବ ଯେ। ସବୁବେଳେ ହୋଟେଲରେ ଗରିଷ୍ଠ ଖାଦ୍ୟ ଖାଉଛି। ସେ କ'ଣ ସହଜରେ ହଜମ ହେବ। ମଦଫଦ ନିଶ୍ଚେ ପିଉଥିବ। ପଛକୁ ଦେଖିବ ତା' ଅବସ୍ଥା। ମୁଁ ଯେତେଜଣ ଏମିତି ବୟସ୍କ ରିପ୍ରେଜେଣ୍ଟେଟିଭ୍‌କୁ ଦେଖିଛି ସମସ୍ତଙ୍କର ଗେଷ୍ଟ୍ରିକ୍ ଅଲସାର ନହେଲେ ପେପ୍‌ଟିକ୍ ଅଲ୍‌ସାର। ଏଥର ସମସ୍ତେ ଖାଲି ସିଝା ଖାଉଛନ୍ତି। ତା'ଛଡ଼ା ଏମିତି ଯୋଉ ଉଶୃଙ୍ଖଳ ଜୀବନ। ବୟସ ହେଲେ ତା'ର ଏଫେକ୍ଟ ପଡ଼ିବନି। ଯେ ସବୁ ଚାକିରିଗୁଡ଼ା ସବୁଠାରୁ ବାଜେ ଚାକିରି। ନା ସ୍ଥାୟୀତ୍ୱ ଅଛି — ନା ଘରେ ବସିବାର ଆନନ୍ଦ ଅଛି।

ମୁଁ ସବୁ ଶୁଣେ। କିଛି କହେ ନାହିଁ। ହସିଦିଏ। ମୁଁ କ'ଣ ଆଉ କରିପାରନ୍ତି ଯେ? ମୁଁ ତ ଇଚ୍ଛାକରି କିଛି କରୁନାହିଁ। ମୋ ଭାଇର ଅଶାନ୍ତି ପୁରୁଷଟି ମୋତେ ଗଳାଧକ୍‌କା ଦେଇ ସବୁ ଯେମିତି କରେଇ ନେଉଛି।

କେତେ ଅପଣିଚିତ ମୁହଁ ପରିଚିତ ହୋଇଯାଏ। କେତେ ପରିଚିତ ମୁହଁ ଭୁଲି ହୋଇଯାଏ। ଅଜଣା ଅଶୁଣା ଜାଗାରେ ସଂପର୍କ ଗଢ଼ିଉଠେ। ପୁଣି ପୁରୁଣା ସଂପର୍କର ଖିଅ ମଧ ଲାଗିଥାଏ। ବ୍ୟବସାୟିକ ସଂପର୍କ ଭିତରେ ବି କୋଉଠି କେମିତି ହଠାତ୍ ବନ୍ଧୁତ୍ୱର ସଂପର୍କର ସୂତା ଗୁଡ଼େଇ ହୋଇଯାଏ। ଅପରିଚିତି ବ୍ୟକ୍ତିପ୍ରତି ଅଚାନକ ଭାବରେ ମାୟାମମତା ପ୍ରେମ ପ୍ରୀତିର ସଂପର୍କର ସୂତା ଯୋଡ଼ି ହୋଇଯାଏ।

ଦଶବର୍ଷର ଚାକିରି ମାତ୍ର। ଏଇ ଭିତରେ ମୁଁ ତନ୍ତୀ ଘରର କେଣ୍ଡାପରି ଏପାଖ ସେପାଖ ବୁଲୁଛି। କିନ୍ତୁ ମୁଁ ଜାଣିପାରି ନାହିଁ ସେ ଭିତରେ ଚମତ୍କାର ଡିଜାଇନ୍‌ର ଅପୂର୍ବ ରଙ୍ଗର ଏକ ମହାର୍ଘ ସଂପର୍କର ଚାଦରଟିଏ ବୁଣାହୋଇ ଯାଇଛି। ଅନୁଭବର ପ୍ରେମର ପ୍ରୀତିର ବନ୍ଧୁତ୍ୱରେ ଭିନ୍ନ ଭିନ୍ନ ରଙ୍ଗବେରଙ୍ଗ ସୂତାରେ ଗଢ଼ି ହୋଇଯାଇଛି ଏ ଚାଦରଟିକକ କୋଉ ଏକ ଅଜଣା ତନ୍ତୀର ନିର୍ଦ୍ଦେଶରେ।

କେତେ ବିଚିତ୍ର ସତେ।

ଆଜି ସେଇ ଚାଦରଟିକୁ ମୁଁ ଯେତିକି ଯେତିକି ନିରୀକ୍ଷଣ କରୁଛି ସେତିକି ସେତିକି ବିସ୍ମୟରେ ଅଭିଭୂତ ହୋଇଯାଉଛି।

ସଜ୍ଞାନରେ ବୁଲିଛି ମାତ୍ର। କାହାରିଠାରୁ ଅଟକି ଯାଇନାହିଁ। କୋଉଁଠାରେ ସଂପର୍କକୁ ଗଭୀର କରିନାହିଁ। ନିଜ ଇଚ୍ଛାରେ ବୁଲିଛି। ନିଜ ଇଚ୍ଛାରେ ସପଂର୍କର ସେତୁ ଗଢ଼ିଛି। ପୁଣି ତାକୁ ମଜବୁତ ନ କରି ଅଧାରେ ଅଧାରେ ଛାଡ଼ି ଚାଲିଆସିଛି। ଭାବିଥିଲି ଏ ବୁଲିବା କ୍ଷଣିକର ଏ ସ୍ଥିତି ସବୁ ମୂଲ୍ୟହୀନ। ଅକାରଣ। ମୋର

ଯାଯାବର ଜୀବନ ଏକ ଛିନ୍ନମେଘର ଛାୟାପରି ଅଳୀକ। ଏ ଜୀବନରେ କିଛି ସ୍ଥାୟୀତ୍ୱ ନାହିଁ ଅସ୍ତିତ୍ୱ ନାହିଁ। ନଈର ସୁଅରେ ଗଡ଼ିଯାଉଥିବା ଗଡ଼ାଳିଆ ପରି। ସେଥିରେ ସଂପର୍କର ଶିଉଳି ଜମେନା। ଖାଲି ଧୀରେ ଧୀରେ କ୍ଷୟ ହୋଇ ଶେଷ ହୋଇ ଯିବାର କାରୁଣ୍ୟ ମାତ୍ର।

ଅଥଚ ଉଦ୍ଦେଶ୍ୟହୀନ ଜୀବନଯାତ୍ରା ଏକ ସୁନ୍ଦର ବର୍ଣ୍ଣିଳ ଜୀବନର ଚାଦର ଗଢ଼ି ହୋଇଯାଇଛି କିଏ ଜାଣିଥିଲା ? କିଏ ଅନୁଭବ କରିପାରିଥିଲା, ସେଇ ଶୁଭ୍ରବର୍ଣ୍ଣହୀନ ଚାଦର ଉପରେ ଏତେ ରଙ୍ଗୀନ ସୂତାର ମନୋମୁଗ୍ଧକର ପେଟାର୍ଣ୍ଣ।

କିଏ ଅବା ଜାଣିଥିଲା କଲିକତା ଶ୍ୟାମବଜାରର ରୁମା ଚକ୍ରବର୍ତ୍ତୀ, ନିଖିଳେଶ ମିତ୍ର, ଗୌହାଟୀ ଉଜାନ ବଜାରର ଉଷା ହଜାରିକା, କୁଶ ଦତ୍ତ, ଦିବ୍ରୁଗଡ଼ର ମୁକୁଟ ରାଜଖୋଆ, ଶିଲଂର ମିସ୍ ନଙ୍ଗଧର, ଏଡ଼ୱାର୍ଡ଼ ଫିଲିପ୍‌ସ, ପାଟନାର ପାଟଳୀପୁତ୍ର କଲୋନୀର ଅତୀତା ଝା, ରାମେଶ୍ୱର ଝା, ରଘୁନନ୍ଦନ ପ୍ରସାଦ, ମୁଜାଫରପୁରର ଅବିଦ୍ ହୁସେନ୍ ହଜାରିବାଗର ରହିମ୍ ଇମାମ୍ ଇତ୍ୟାଦି ଇତ୍ୟାଦି ମୋ ଜୀବନର ଚାଦର ଉପରେ ନିଜ ନିଜର ପେଟାର୍ଣ୍ଣ ବୁଣି ଚାଲିଥିଲେ ମୋ ନିଜ ଅଜାଣତରେ।

ମଣିଷର ଜୀବନ କେତେ ବିଚିତ୍ର ସତେ! କିଏ ଭାବେ ଜୀବନ ତାର ବ୍ୟର୍ଥ ହୋଇଗଲା। କିଏ ଭାବେ ଜୀବନ ତା'ର ସାର୍ଥକ ହୋଇଗଲା; କିଏ କିଛି ଭାବେ ନାହିଁ। ଅଥଚ ସମସ୍ତେ ନିଜ ଅଜାଣତରେ ବି ଗୋଟାଏ ସୁନ୍ଦର ପୋଟାର୍ଣ୍ଣ ଗଢ଼ି ଚାଲିଥାନ୍ତି ସାରାଜୀବନ ଧରି— କାହାର ଖିଆଲ ନଥାଏ।

ଅଦ୍ଭୁତ ଏଇ ଅଶରୀରୀ ତନ୍ତୀ।

(ସ୍ରଷ୍ଟାଙ୍କର ଶେଷ ସୃଷ୍ଟି)

-୦-